# ଅଚ୍ୟୁତାନନ୍ଦ ଦାସ

କୁଞ୍ଜବିହାରୀ ମହାନ୍ତି



ଓଡ଼ିଶା ସାହିତ୍ୟ ଏକାଡ଼େମୀ

# ଅଚ୍ୟୁତାନନ୍ଦ ଦାସ

*ଲେଖକ :*
**ଡକ୍ଟର କୁଞ୍ଜବିହାରୀ ମହାନ୍ତି**

*ପ୍ରକାଶକ :*
**ଓଡ଼ିଶା ସାହିତ୍ୟ ଏକାଡେମୀ**
ସଂସ୍କୃତି ଭବନ
ଭୁବନେଶ୍ୱର-୭୫୧୦୧୪

*ପ୍ରଥମ ପ୍ରକାଶ : ୨୦୦୪*

*ମୁଦ୍ରଣ :*
**ଶ୍ରୀଅରବିନ୍ଦ ପ୍ରିଣ୍ଟିଂ ପ୍ରେସ**
ରାଜାବଗିଚା, କଟକ-୯
ମୂଲ୍ୟ - ୪୦ ଟଙ୍କା ମାତ୍ର

# ACHYUTANANDA DAS

*Written by:*
**Dr. Kunja Bihari Mohanty**

*Published by :*
**Orissa Sahitya Akademi**
Sanskruti Bhawan
Bhubaneswar-751014

***First Edition : 2004***

*Printed at :*
**SriAurobindo Printing Press**
Rajabagicha, Cuttack-9

**Price : Rs. 40.00 only**

**I.S.B.N. 81/7586-095-2**

# ସୂଚୀପତ୍ର





# ପ୍ରାଗ୍‌ଭାଷ

ମହାନ୍ ସାଧକ ଓ କବି ଅଚ୍ୟୁତାନନ୍ଦ ଓଡ଼ିଆ ଭାଷା, ସାହିତ୍ୟ ଓ ଓଡ଼ିଶାର ଧର୍ମ ଧାରଣାର ଇତିହାସରେ ଏକ ବିସ୍ମୟ । ଷୋଡ଼ଶ ଶତାବ୍ଦୀରେ ତାଙ୍କର ସାଧନାପୂତ ଲେଖନୀରୁ ଅଜସ୍ର ସଂହିତା, ପୁରାଣ, ଗୀତା, ବଂଶାନୁଚରିତ, ମାଳିକା, ରାସ ଓ ରାହାସ, କୋଇଲି, ଗୁଜ୍ଜରୀ, ଟୀକା, କଳ୍ପ, ଓଗାଳ, ଯନ୍ତ୍ର ଓ ବସାଣ ପ୍ରଭୃତି ଝରି ଆସିଥିଲା ଅବାରିତ ଛନ୍ଦରେ । ତଦାନୀନ୍ତନ କୃଷିଭିତ୍ତିକ ଓଡ଼ିଆ ସମାଜର ଆଧାତ୍ମିକ ଚିନ୍ତନ, ସାମାଜିକ ସଂହତି ଓ ଆଦର୍ଶ ଗୃହସ୍ଥାଶ୍ରମ ଉପରେ ମହାପୁରୁଷ ଅଚ୍ୟୁତାନନ୍ଦ ତାଙ୍କର ଲେଖନୀ ଚାଳନା କରିଥିଲେ । ତାଙ୍କର ସାରସ୍ୱତ ମାନସକୁ ଶୂଦ୍ରମୁନି ସାରଳା ଦାସଙ୍କର କାବ୍ୟିକ ବୈଭବ, ନାଥ ଓ ବୌଦ୍ଧ ତନ୍ତ୍ର ଏବଂ ଦର୍ଶନ, ହଠଯୋଗ, ବ୍ରହ୍ମବୈବର୍ତ୍ତ, ବିଷ୍ଣୁ, କୂର୍ମ, ଗରୁଡ଼ ପୁରାଣମାନ, ହରିବଂଶ ଓ ଶ୍ରୀମଦ୍ ଭାଗବତ ପ୍ରଭୃତି ଗ୍ରନ୍ଥ ସମଧିକ ପ୍ରଭାବିତ କରିଥିବା ଜଣାଯାଏ । ଏହିସବୁ ଚିନ୍ତନ ସେ ସମୟରେ ପୁରୀର ବିଭିନ୍ନ ମଠ ବାଡ଼ିରେ ଓ ବିଶେଷତଃ ଶ୍ରୀଜଗନ୍ନାଥ ମନ୍ଦିର ପ୍ରାଙ୍ଗଣରେ ସାଧୁ, ସନ୍ଥ, ପୁରାଣ ପଣ୍ଡାଙ୍କ ଦ୍ୱାରା ବିକାଶ ଲାଭ କରିଥିଲା । ଶ୍ରୀନୀଳାଚଳଧାମକୁ ଭାରତର ବିଭିନ୍ନ ପ୍ରାନ୍ତରୁ ଯୋଗୀ, ସାଧକ ଓ ବିଦ୍ୱାନ୍‌ମାନେ ଅହରହ ଯାତାୟତ କରୁଥିଲେ ଓ ଶିଷ୍ୟବର୍ଗଙ୍କ ସହିତ ଏଠାରେ ତୀର୍ଥବାସ କରି ଓଡ଼ିଶାର ଧାର୍ମିକ ଜନତାଙ୍କ ସମ୍ପର୍କରେ ଆସୁଥିଲେ । ମୁକ୍ତିମଣ୍ଡପ ମଧ୍ୟ ଏ ଦିଗରେ ଯଥେଷ୍ଟ ପ୍ରଚୋଦନା ପ୍ରଦାନ କରିଥିବା ଜଣାଯାଏ ।

ପୁରୀ ରାଜା ପ୍ରତାପରୁଦ୍ରଙ୍କ ସମୟରେ ନବଦ୍ୱୀପରୁ ଶ୍ରୀଚୈତନ୍ୟ ପାର୍ଷଦଗଣଙ୍କ ସହିତ ପୁରୀକୁ ଆଗମନ କରି ଓଡ଼ିଶାରେ ବିଶୁଦ୍ଧ ରାଗାନୁଗାଭକ୍ତିର

ପ୍ଲାବନ୍ ସୃଷ୍ଟି କରିଥିଲେ । ଏହି ଭବ୍ୟ ପାରମାର୍ଥିକ ଆନ୍ଦୋଳନ ରାଜପୃଷ୍ଠପୋଷକତା ଲାଭ କରି ଓଡ଼ିଶାରେ ଅଧିକ ପଲ୍ଲବିତ ଓ ପ୍ରସାରିତ ହୋଇଥିଲା । ଅଷ୍ଟପ୍ରହର ନାମ ସଂକୀର୍ତ୍ତନ, ଶ୍ରୀରାଧାକୃଷ୍ଣ ଯୁଗଳ ମୂର୍ତ୍ତି ଉପାସନା, ଗୁରୁ ନିରାଜନା, ଅର୍ଚ୍ଚନା ଓ ବନ୍ଦନା ଓଡ଼ିଆ ଧର୍ମଧାରଣାର ଏକ ମୁଖ୍ୟସ୍ରୋତ ହେବାକୁ ଆରମ୍ଭ କଲା । ଜାତି ବର୍ଣ୍ଣ ଧର୍ମ ନିର୍ବିଶେଷରେ ଏହା ସମସ୍ତଙ୍କୁ ପ୍ରଭାବିତ କଲା । ଏହି ସନ୍ଧିକ୍ଷଣରେ ଶ୍ରୀ ଅଚ୍ୟୁତାନନ୍ଦ, ବଳରାମ, ଯଶୋବନ୍ତ, ଜଗନ୍ନାଥ ଓ ଅନନ୍ତ ପ୍ରଭୃତି ସନ୍ଥ ସାଧକଗଣ ଓଡ଼ିଶାବାସୀଙ୍କର ଆଧ୍ୟାତ୍ମିକ ଅନୁଭବରେ ବଳିଷ୍ଠ ରେଖାପାତ କରିବା ପାଇଁ ଆନ୍ତରିକ ପ୍ରୟାସ କରିଥିବା ଜଣାଯାଏ । ସେମାନେ ଶ୍ରୀକ୍ଷେତ୍ରବରସ୍ଥିତ ଶ୍ରୀଜଗନ୍ନାଥଙ୍କ ପ୍ରତି ଅତୁଟ ଅନୁରକ୍ତି ପ୍ରକାଶ କରି ଶ୍ରୀଜଗନ୍ନାଥଙ୍କୁ ଲୀଳାୟିତ ଜ୍ୟୋତିଃପୁଞ୍ଜ ଭାବରେ, ଅକ୍ଷରବ୍ରହ୍ମଭାବରେ, ପ୍ରଚ୍ଛନ୍ନ ବୌଦ୍ଧ ଭାବରେ ଏବଂ ଶୂନ୍ୟ-ଦେହୀ ନିରାକାର ପରଂବ୍ରହ୍ମ ଭାବରେ ଆରାଧନା କରିବା ପାଇଁ ମାନସିକତା ପ୍ରସ୍ତୁତ କରିଥିଲେ । ସାଧାରଣ ଭକ୍ତମାନଙ୍କ ପାଇଁ ଶ୍ରୀଜଗନ୍ନାଥଙ୍କୁ ଲୀଳାବତାରୀ ନନ୍ଦବାଳ ଗୋପକୃଷ୍ଣ ବା ପୁରୁଷୋତ୍ତମ ଶ୍ରୀରାମଚନ୍ଦ୍ର ଭାବରେ ସଂଖୋଳି ଥିଲେ । ଏଭଳି ଆବେଗମୟ ଓ ଜ୍ଞାନଲୀଢ଼ ଭାବସାନ୍ନିଧ୍ୟର ଉଦ୍‌ଗାତା ଥିଲେ ଅଚ୍ୟୁତାନନ୍ଦ । ଜଣେ ଦିବ୍ୟଦ୍ରଷ୍ଟା ଦାର୍ଶନିକ, ରହସ୍ୟବାଦୀ କବି, ଶବ୍ଦ ବିନ୍ଧାଣୀ, ସମାଜ ସଂସ୍କାରକ, ଆଧ୍ୟାତ୍ମିକ ଗୁରୁ ଓ ସାରସ୍ୱତ ଭାଷ୍ୟକାର ଭାବରେ ଅଚ୍ୟୁତାନନ୍ଦ ଥିଲେ ଜଣେ ଅନନ୍ୟ ସନ୍ଥ । ତାଙ୍କର ଆବିର୍ଭାବର ସମୟ ବିବାଦୀୟ ହୋଇଥିଲେ ମଧ୍ୟ ତିଳକଣାରେ କରଣ ଦୀନବନ୍ଧୁ ଖୁଣ୍ଟିଆଙ୍କର ଔରସରେ ଜନ୍ମ ଲଭିଥିବା ଏହି ଓଡ଼ିଆ ମହାପୁରୁଷ ସ୍ୱକୀୟ ଅଲୌକିକ ସାଧନା ବଳରେ ଜନମାନସକୁ ସବୁବେଳେ ଆଚ୍ଛନ୍ନ କରି ରଖିଛନ୍ତି ।

ଡଃ କୁଞ୍ଜବିହାରୀ ମହାନ୍ତି ଅଚ୍ୟୁତାନନ୍ଦ ଦାସ ଶୀର୍ଷକ ପୁସ୍ତକଟି ରଚନା କରି ମହାପୁରୁଷ ଅଚ୍ୟୁତାନନ୍ଦଙ୍କର ଯଥାସମ୍ଭବ ଜୀବନଲିପି, ତାଙ୍କର ସାହିତ୍ୟକୃତି ଓ ସାଧନାପୂତ ଜୀବନର ଆଲୋକିତ ଆଲେଖ୍ୟ ପ୍ରଦାନ କରିଥିବାରୁ ଓଡ଼ିଶା ସାହିତ୍ୟ ଏକାଡେମୀ ତାଙ୍କୁ ସାଧୁବାଦ ଜଣାଉଛି । ଆଶା, ସହୃଦୟ ପାଠକଗଣ ଏହା ପାଠକରି ସନ୍ତୋଷ ଲାଭ କରିବେ ।

୨ ଫେବୃୟାରୀ ୨୦୦୪

ରାଜକିଶୋର ମିଶ୍ର
ସମ୍ପାଦକ

# ସମୀକ୍ଷାୟନ

ପଞ୍ଚସଖା ଯୁଗରୁ ସିଦ୍ଧସାଧକ ସନ୍ଥକବି ଅଚ୍ୟୁତାନନ୍ଦ ଦାସଙ୍କ ଜୀବନ-କୃତି ଓ କୀର୍ତ୍ତି ସଂପର୍କରେ ଡକ୍ଟର କୁଞ୍ଜବିହାରୀ ମହାନ୍ତିଙ୍କ ଲିଖିତ ପୁସ୍ତକ 'ଅଚ୍ୟୁତାନନ୍ଦ ଦାସ' ଆମୂଳଚୂଳ ପାଠ କରିବାର ସୁଯୋଗ ପାଇଲି । ଷୋଡ଼ଶ ଶତାବ୍ଦୀର ଏହି ସ୍ମରଣୀୟ ପ୍ରତିଭାଧାରୀ କବିଙ୍କ ପରିଚୟଭିତ୍ତିକ କ୍ଷୁଦ୍ର ପୁସ୍ତକଟିଏ ପ୍ରକାଶ କରିବା ଓଡ଼ିଶା ସାହିତ୍ୟ ଏକାଡେମୀର ନିଶ୍ଚିତ ଭାବେ ଏକ ସ୍ୱାଗତଯୋଗ୍ୟ ପଦକ୍ଷେପ ।

ସାହିତ୍ୟିକ, ସାଂସ୍କୃତିକ ଓ ସମାଜ ସଂସ୍କାର ଆଭିମୁଖ୍ୟ ଦୃଷ୍ଟିରୁ ସନ୍ଥକବି ଅଚ୍ୟୁତାନନ୍ଦ ଦାସଙ୍କ ଜୀବନାଦର୍ଶ ସାଂପ୍ରତିକ କାଳରେ ବେଶ୍ ଉପାଦେୟ । ବିଧିବଦ୍ଧ ଭାବରେ ଅଚ୍ୟୁତାନନ୍ଦଙ୍କ ସୃଜନବଳୟ ଉଦ୍‌ଘାଟିତ ନ ହେଲେ ଭବିଷ୍ୟତରେ ତହିଁରେ ଅଧିକ ପ୍ରକ୍ଷିପ୍ତାଂଶ ଧସେଇ ପଶିବାର ସମ୍ଭାବନାକୁ ଏଡ଼େଇ ଦେଇହେବ ନାହିଁ । ଓଡ଼ିଶା ସାହିତ୍ୟ ଏକାଡେମୀ ଏଭଳି ପଦକ୍ଷେପ ବହୁ ଆଗରୁ ନେବା ଆବଶ୍ୟକ ଥିଲା । କାରଣ ସମଗ୍ର ଭାରତୀୟ ସାହିତ୍ୟରେ ସ୍ରଷ୍ଟାମାନେ ନିଜ ସୃଷ୍ଟି ବ୍ୟତୀତ ନିଜ ସମୟ ବା ନିଜ ବିଷୟରେ କିଛି ଲେଖିଯିବା କର୍ମକୁ ଏକ ଅପରାଧ ବା ଦ୍ରୋହ ବୋଲି ବିଚାରୁଥିବା କାଳରେ କବି ଅଚ୍ୟୁତାନନ୍ଦ ବିଦ୍ରୋହ ଘୋଷଣା କରି ନିଜ କାଳ ଓ ନିଜ ବିଷୟରେ ଅନେକ କିଛି ଲେଖିଯାଇଛନ୍ତି । ନିଜ ସମୟର ଲିପିକାର ଏହି ସାର୍ଥକ କାବ୍ୟ ପୁରୁଷଙ୍କୁ ଏକାଡେମୀ ଯଥାର୍ଥ ସମ୍ମାନ ଦେଉଥିବାରୁ ଧନ୍ୟବାଦାର୍ହ ।

ଶ୍ରୀନିକେତନ, କଟକ — ରତ୍ନାକର ଚଇନି

# ପୃଷ୍ଠଭୂମି

ଓଡ଼ିଶାର ଭାଷା, ସାହିତ୍ୟ, ସଂସ୍କୃତି, ଶିକ୍ଷା ଓ ସାମାଜିକତା କ୍ଷେତ୍ରରେ ଷୋଡ଼ଶ ଶତାବ୍ଦୀର ଭୂମିକା ବେଶ୍ ଗୁରୁତ୍ୱପୂର୍ଣ୍ଣ । ଏହି ସମୟରେ ନାନାପ୍ରକାର ସମସ୍ୟା ତଥା ସଂକଟ ଦେଖାଦେଇଥିଲା ଓ ସେସବୁ ସଂକଟର ସମାଧାନ ପାଇଁ କେତେଜଣ ମହାପୁରୁଷଙ୍କ ଆବିର୍ଭାବ ଘଟିଥିଲା । ସମାଜର ସର୍ବାଙ୍ଗୀନ ଉନ୍ନତି ପାଇଁ ସେମାନେ ସଂକଳ୍ପବଦ୍ଧ ଭାବରେ କାର୍ଯ୍ୟ କରିଥିଲେ । ଏକାଦଶ ଶତାବ୍ଦୀରୁ ଓଡ଼ିଆ ଭାଷାର ସ୍ୱତନ୍ତ୍ରତା ସ୍ୱୀକୃତି ଲାଭ କରିଥିଲେ ହେଁ ଭାଷା କ୍ଷେତ୍ରରେ ସେପରି କିଛି ଉଲ୍ଲେଖନୀୟ ସଫଳତା ମିଳି ନଥିଲା । ବହୁ ପୂର୍ବରୁ ରଚିତ ଚର୍ଯ୍ୟାପଦ ଓ ଏହିକାଳର ଶିଳାଲେଖରେ ଓଡ଼ିଆ ଭାଷାର ଆଦି ସ୍ୱରୂପ ଦେଖିବାକୁ ମିଳେ । ମହାକବି ସାରଳା ଦାସ ମହାଭାରତ, ବିଲଙ୍କା ରାମାୟଣ ଓ ଚଣ୍ଡୀପୁରାଣ ପରି ଉଲ୍ଲେଖନୀୟ ଗ୍ରନ୍ଥମାନ ରଚନା କରି ଓଡ଼ିଆ ଭାଷାର ଭିତ୍ତିପ୍ରସ୍ତର ସ୍ଥାପନ କରିଯାଇଛନ୍ତି । ତାଙ୍କ ଗ୍ରନ୍ଥରେ ସମସାମୟିକ ସମାଜର ବାସ୍ତବ ଚିତ୍ର ବିଶଦ ଭାବରେ ବର୍ଣ୍ଣିତ ହୋଇଛି ଓ ସେସବୁ ଗ୍ରନ୍ଥ ଗୋଟିଏ ଗୋଟିଏ ମାଇଲ ଖୁଣ୍ଟ ସଦୃଶ ।

ଷୋଡ଼ଶ ଶତାବ୍ଦୀ ପୂର୍ବରୁ ନାନା ପ୍ରକାର ସମସ୍ୟା ସମାଜରେ ଉତ୍କଟ ଆକାର ଧାରଣ କରିଥିଲା । ସମ୍ରାଟ ଖାରବେଳ ଓ କପିଳେନ୍ଦ୍ରଦେବଙ୍କ ଦ୍ୱାରା ଗଙ୍ଗାଠାରୁ ଗୋଦାବରୀ ପର୍ଯ୍ୟନ୍ତ ଯେଉଁ ସାମ୍ରାଜ୍ୟ ବିସ୍ତାର ଲାଭ କରିଥିଲା, ତା'ର ସୁରକ୍ଷା କରିବା ଥିଲା ବହୁ କଷ୍ଟସାଧ୍ୟ ବ୍ୟାପାର । କାରଣ ମୋଗଲମାନଙ୍କର ବାରମ୍ବାର ଆକ୍ରମଣ ଫଳରେ ଓଡ଼ିଶାର ରାଜନୈତିକ ସ୍ଥିତି ଷୋଡ଼ଶ ଶତାବ୍ଦୀବେଳକୁ ଦୋହଲି ଯାଇଥିଲା । ସେମାନେ ପୁଣି ହିନ୍ଦୁ ଝିଅ ବୋହୂଙ୍କ ପ୍ରତି ନାନା ପ୍ରକାର ଅକଥନୀୟ ଅତ୍ୟାଚାର କରିବା ସହିତ

ଧନ ରତ୍ନ ମଧ୍ୟ ଲୁଣ୍ଠନ କରୁଥିଲେ । ଏ ଦୃଷ୍ଟିରୁ ଓଡ଼ିଶାର ସାମାଜିକ ଜୀବନରେ ଅନ୍ୟାୟ, ଅନୀତି, ଶୋଷଣ-କଷଣ ବଢ଼ି ଯାଇଥିଲା ଓ ଲୋକେ ଭୟ ଶଙ୍କା ଜର୍ଜରିତ ଅବସ୍ଥାରେ କାଳାତିପାତ କରୁଥିଲେ । ନିରାପଦରେ ଜୀବନଯାପନ କରିବା ସମ୍ଭବ ନଥିଲା । ମଣିଷର ଜୀବନ ଆକାଶରେ ଅବିଶ୍ୱାସ, ହତାଶା, ବ୍ୟର୍ଥତା ରୂପକ କଳାମେଘ ଛାଇ ହୋଇ ଯାଇଥିଲା । ସମାଜରେ ବ୍ରାହ୍ମଣ-ପଣ୍ଡିତମାନଙ୍କର ପ୍ରାଧାନ୍ୟ ଯଥେଷ୍ଟ ବୃଦ୍ଧି ପାଇଥିଲା । ସାରଳା ଦାସଙ୍କ କୃତ ମହାନ ଗ୍ରନ୍ଥରାଜି ଓଡ଼ିଶାରେ ଥିଲେ ମଧ୍ୟ ସଂସ୍କୃତ ପଣ୍ଡିତମାନେ ସେସବୁକୁ ଆଦର କରୁ ନଥିଲେ । କାରଣ ସେମାନଙ୍କର ଆଦର୍ଶ ଥିଲା ସଂସ୍କୃତ ଭାଷା ଓ ସଂସ୍କୃତ ସାହିତ୍ୟ । ଶୂଦ୍ର ଓ ନାରୀମାନେ ଏପରି ଅବହେଳିତ ଅବସ୍ଥାରେ ଥିଲେ ଯେ ପୁରାଣ ପାଠ କରିବା ଦୂରେ ଥାଉ ଶ୍ରବଣ କରିବା ମଧ୍ୟ ସେମାନଙ୍କ ପାଇଁ ନିଷିଦ୍ଧ ହୋଇଥିଲା । ସଂସ୍କୃତ ପଣ୍ଡିତମାନେ ଜଗନ୍ନାଥ ଦାସଙ୍କ ଓଡ଼ିଆ ଭାଗବତକୁ 'ତେଲି ଭାଗବତ' ବୋଲି କହି ଘୃଣା ଚକ୍ଷୁରେ ଦେଖୁଥିଲେ । ସେ ସମୟରେ ଜାତିଭେଦ ପ୍ରଥା ତୀବ୍ର ଆକାର ଧାରଣ କରିଥିଲା ଓ ସମାଜରେ ଉଚ୍ଚନୀଚ ଭେଦଭାବ ପ୍ରବଳ ଭାବରେ ମୁଣ୍ଡ ଟେକି ଉଠିଥିଲା । ସମାଜରେ ପ୍ରତ୍ୟେକ ପ୍ରକାର କାର୍ଯ୍ୟକୁ ଶୃଙ୍ଖଳିତ ଭାବରେ ସମାହିତ କରିବା ପାଇଁ ସୃଷ୍ଟି ହୋଇଥିବା ଜାତିଭେଦ କ୍ଷେତ୍ରରେ ଚରମ ବିଶୃଙ୍ଖଳା ଦେଖା ଦେଇଥିଲା । ପ୍ରତ୍ୟେକ ଜାତିର ଲୋକେ ନିଜ ନିଜର କୌଳିକ ବୃତ୍ତିକୁ ଛାଡ଼ି ଅନ୍ୟ କର୍ମ ଧନ୍ଦା ଧରିବାରେ ଆଗ୍ରହୀ ଥିଲେ । ତେଣୁ ଘୋର ବିଶୃଙ୍ଖଳା ଦେଖା ଦେଇଥିଲା ସାମାଜିକ ଜୀବନଧାରାରେ । ଅନ୍ୟ ପକ୍ଷରେ ଶାସନ କ୍ଷେତ୍ରରେ ରାଜ କର୍ମଚାରୀ ତଥା ପାତ୍ରମନ୍ତ୍ରୀମାନେ ନିଜର ହୁକୁମ ଜାହିର କରି ଆଧିପତ୍ୟ ବିସ୍ତାର କରିବା ଯୋଗୁଁ ସାଧାରଣ ପ୍ରଜା ଚରମ ଦୁର୍ଦ୍ଦଶାର ସମ୍ମୁଖୀନ ହେଉଥିଲେ ।

ଏହିପରି ଘୋର ସଂକଟ ସମୟରେ ପତନମୁଖୀ ଓଡ଼ିଶାକୁ ରକ୍ଷା କରିବା ପାଇଁ ଆବିର୍ଭୂତ ହୋଇଥିଲେ ସମାଜ ସଂସ୍କାରକାମୀ ପଞ୍ଚସଖା । ସେଇ ପଞ୍ଚସଖାଙ୍କ ମଧ୍ୟରୁ ମହାପୁରୁଷ ଅଚ୍ୟୁତାନନ୍ଦ ନିଜର ନିଷ୍ଠାପର କର୍ମ ବଳରେ ଧର୍ମ, ସାହିତ୍ୟ-ସଂସ୍କୃତି ତଥା ସାମାଜିକ ଜୀବନରେ ବୈପ୍ଳବିକ ପରିବର୍ତ୍ତନ ଆଣି ପାରିଥିଲେ । ଓଡ଼ିଆ ଭାଷା ଓ ସାହିତ୍ୟ କ୍ଷେତ୍ରରେ ସାରଳା ଦାସ ମୂଳଦୁଆ ପକାଇଥିଲେ ହେଁ ବାସ୍ତବରେ ଭାଷା ଓ ସାହିତ୍ୟ ସମୃଦ୍ଧିଶାଳୀ ହୋଇଥିଲା ପଞ୍ଚସଖାଙ୍କ ସମୟରେ । ଅଚ୍ୟୁତାନନ୍ଦ ଆଧ୍ୟାତ୍ମିକ ଜଗତରେ 'ହରିବଂଶ' ପରି ପୁରାଣ ରଚନା କରିବା ସଙ୍ଗେ ସଙ୍ଗେ ବହୁ ସଂହିତା, ଗୀତା, କଚ୍ଛ, ଟୀକା, ରାହାସ, ଚଉତିଶା, କୋଇଲି, ବୋଲି ଏବଂ ଅସଂଖ୍ୟ ଭଜନ

ଜଣାଣ ସୃଷ୍ଟି କରିଥିଲେ । ସଂସ୍କୃତ ପଣ୍ଡିତ ତଥା ସଂସ୍କୃତପ୍ରେମୀ ବ୍ରାହ୍ମଣମାନଙ୍କ ଗର୍ବ ଖର୍ବ କରିବା ପାଇଁ ସେ ସଂସ୍କୃତ ଭାଷାରେ କିଛି ଗ୍ରନ୍ଥ ଲେଖିଥିଲେ ଓ ଓଡ଼ିଆ ଭାଷା ସାହିତ୍ୟକୁ ସଂସ୍କୃତର ସମକକ୍ଷ କରିବା ପାଇଁ ଆପ୍ରାଣ ଉଦ୍ୟମ କରିଥିଲେ । ନାରୀ ଜାତିର ଉତ୍ଥାନ ପାଇଁ ସେ ସେମାନଙ୍କୁ ପୁରାଣ ପଢ଼ିବା ଓ ଶୁଣିବାର ଅଧିକାର ଦେଇଥିଲେ । ତେଣୁ ସେ ନାରୀମାନଙ୍କୁ ନିଜର ଶିଷ୍ୟା ଭାବରେ ଗ୍ରହଣ କରିଥିଲେ । ଜାତିଭେଦ ପ୍ରଥାର ସେ ଥିଲେ ଘୋର ବିରୋଧୀ । ନିଜେ ଶୂଦ୍ର କୁଳରେ ଜାତ ହୋଇଥିବା କଥା ସ୍ୱୀକାର କରିବା ସଙ୍ଗେ ସଙ୍ଗେ ପଞ୍ଚସଖା ଶୂଦ୍ର କୁଳରେ ଜାତ ବୋଲି ପ୍ରକାଶ କରିଛନ୍ତି । ପୁଣି ହାଡ଼ି ଓ ଶ୍ରୀକୃଷ୍ଣଙ୍କ ମଧ୍ୟରେ କୌଣସି ପାର୍ଥକ୍ୟ ନ ଦେଖି କହିଛନ୍ତି-

*''ହାଡ଼ି ବୋଲି କରି ଯାହା ପୁଚ୍ଛିଲୁ ଅର୍ଜୁନ*
*ମୋର ବ୍ୟକ୍ତିକେ ସେହୁ ନୋହଇଟି ଆନ ।''*

*- କୈବର୍ତ୍ତ ଗୀତା*

ତାଙ୍କର ଶିଷ୍ୟମାନଙ୍କ ମଧ୍ୟରେ ଥିଲେ କମାର, କୁମ୍ଭାର, ଗୋପାଳ, ବଣିକ ଓ ବିପ୍ର ଜାତିର ଭକ୍ତମାନେ । ସମାଜରୁ ଜାତିଭେଦ ପ୍ରଥା ଲୋପ କରିବାକୁ ସେ ଆନ୍ତରିକତାର ସହିତ ଚାହୁଁଥିଲେ ।

ସନାତନ ହିନ୍ଦୁ ଧର୍ମର ମୂଳ ନୀତି ହେଲା ସତ୍ୟ, ଅହିଂସା, ପରୋପକାର, ଦୟା, କ୍ଷମା, ସାମ୍ୟ ଇତ୍ୟାଦି । ଅଚ୍ୟୁତାନନ୍ଦ ସ୍ୱରଚିତ ବିଭିନ୍ନ ଗ୍ରନ୍ଥରେ ଏସବୁ ସଦ୍‌ଗୁଣ ମଣିଷ ନିକଟରେ ରହିବା ଉଚିତ୍ ବୋଲି କହିଛନ୍ତି ଏବଂ ତଦ୍ ସଙ୍ଗେସଙ୍ଗେ ନିଜର କର୍ମମୟ ଜୀବନରେ କାର୍ଯ୍ୟ କ୍ଷେତ୍ରରେ ସେସବୁ କରି ଦେଖାଇ ଦେଇଛନ୍ତି । ଧର୍ମ ତଥା ଆଧ୍ୟାତ୍ମିକ ଜଗତରେ ଶ୍ରୀଜଗନ୍ନାଥ ଓ ଶ୍ରୀକୃଷ୍ଣଙ୍କୁ ନିଜର ଇଷ୍ଟଦେବ ରୂପେ ଗ୍ରହଣ କରିଥିଲେ ମଧ୍ୟ ଅନ୍ୟ କୌଣସି ଧର୍ମ ସଂପ୍ରଦାୟ ପ୍ରତି ସେ ଅସମ୍ମାନ ପ୍ରଦର୍ଶନ କରି ନାହାନ୍ତି । ସମସ୍ତଙ୍କୁ ସମାନ ଦୃଷ୍ଟିରେ ଦେଖିବା ଥିଲା ତାଙ୍କର ପ୍ରଧାନ ଲକ୍ଷ୍ୟ ।

ଓଡ଼ିଶାରେ ସେ ଥିଲେ ରାସଲୀଳାର ଆଦ୍ୟ ପ୍ରବର୍ତ୍ତକ । ଲୋକମାନଙ୍କୁ ଆଧ୍ୟାତ୍ମିକ ମାର୍ଗରେ ପରିଚାଳିତ କରି ଏ ପାପତାପ ସଂସାରରୁ ଉଦ୍ଧାର କରିବା ପାଇଁ ସେ ବ୍ୟାକୁଳ ହେଉଥିଲେ । ସେଥିପାଇଁ ନିଜର ଶିଷ୍ୟ ମଣ୍ଡଳୀ ଦ୍ୱାରା ଚାରିଆଡ଼େ ରାସଲୀଳା ପ୍ରଦର୍ଶନ କରି ସମସ୍ତଙ୍କ ହୃଦୟରେ ଆଧ୍ୟାତ୍ମିକତାର ବୀଜ ବପନ କରୁଥିଲେ । ଏଥି ସହିତ ଧର୍ମ ମାଧ୍ୟମରେ ନାନା ପ୍ରକାର ନୀତି ଉପଦେଶ ପ୍ରଦାନ କରୁଥିଲେ ମଣିଷକୁ ଉତ୍ତମ ମାର୍ଗରେ ପରିଚାଳିତ କରିବା ପାଇଁ ।

ଅଚ୍ୟୁତାନନ୍ଦ ଥିଲେ ତ୍ରିକାଳଦର୍ଶୀ ଓ ଆଗତ ଭବିଷ୍ୟଦ୍ ପ୍ରବକ୍ତା । ଅନେକ ଆଗତ ଭବିଷ୍ୟ ମାଳିକାରେ ଯବନମାନଙ୍କ ଅକଥନୀୟ ଅତ୍ୟାଚାର ବିରୁଦ୍ଧରେ ସେ ଦୃଢ଼ ଭାବରେ ସ୍ୱର ଉତ୍ତୋଳନ କରିଛନ୍ତି । ଏ କଳି ଯୁଗରେ କଳ୍କୀ ଅବତାର ହୋଇ ପ୍ରଭୁ ମ୍ଳେଚ୍ଛମାନଙ୍କୁ ସଂହାର କରିବେ ଓ ଦେବୀ ବାରହାତ ଖଣ୍ଡା ଧରି ପାପୀମାନଙ୍କୁ ହାଣି ପକାଇବେ । ଏପରି କହି ସେ ଭୀତତ୍ରସ୍ତ ମଣିଷକୁ ସାନ୍ତ୍ୱନା ପ୍ରଦାନ କରିଛନ୍ତି । ସମାଜରେ ଚାଲିଥିବା ଅନ୍ୟାୟ, ଅତ୍ୟାଚାର, ଶୋଷଣ-କଷଣ, ବ୍ୟଭିଚାର ଆଦିର ନିଶ୍ଚୟ ପରିସମାପ୍ତି ହେବ ବୋଲି କହିବା ଦ୍ୱାରା ଲୋକଙ୍କ ମନରେ ନୂତନ ଆଶା ସଂଚାର ହୋଇଛି । ସେମାନେ ନିର୍ଭୟ ଚିତ୍ତରେ ଅନ୍ୟାୟ ବିରୁଦ୍ଧରେ ସଂଗ୍ରାମ କରିବା ପାଇଁ ମନରେ ବଳ ଓ ସାହସ ସଂଚୟ କରିଛନ୍ତି । ଏକଥା କେବଳ ସନ୍ଥ ମହାତ୍ମା ଅଚ୍ୟୁତାନନ୍ଦଙ୍କ ଯୋଗୁଁ ସମ୍ଭବ ହୋଇ ପାରିଛି ।

ସମାଜରେ ଧର୍ମ ନାମରେ ଚାଲିଥିବା ଭ୍ରଷ୍ଟାଚାରକୁ ସେ ତୀବ୍ର ଭାବରେ ସମାଲୋଚନା କରୁଥିଲେ । ସେ ସମୟରେ କେତେକ ଭଣ୍ଡ ସାଧୁବେଶ ଧାରଣ କରି ଅଧର୍ମ କାର୍ଯ୍ୟରେ ଲିପ୍ତ ଥିଲେ ଓ ଲୋକଙ୍କୁ ନାନା ଭାବରେ ଠକୁଥିଲେ । ଏପରି କପଟୀ ସାଧୁସନ୍ଥମାନଙ୍କ ବିରୁଦ୍ଧରେ ଦୃଢ଼ ସ୍ୱର ଉତ୍ତୋଳନ କରିଥିଲେ ଅଚ୍ୟୁତାନନ୍ଦ । କିନ୍ତୁ ସେ ପ୍ରକୃତ ସାଧୁ-ସନ୍ଥ-ମହାତ୍ମା ଓ ଭଗବାନଙ୍କର ଭକ୍ତମାନଙ୍କୁ ସମାଜରେ ସର୍ବାପେକ୍ଷା ଶ୍ରେଷ୍ଠ ଆସନ ଦେଇଥିଲେ ।

ଏସବୁ ଦୃଷ୍ଟିରୁ ବିଚାର କଲେ ଷୋଡ଼ଶ ଶତାବ୍ଦୀରେ ଓଡ଼ିଶାରେ ବିଭିନ୍ନ କ୍ଷେତ୍ରରେ ଯେଉଁ ସଂକଟ ସୃଷ୍ଟି ହୋଇଥିଲା ତାର ତ୍ରାଣକର୍ତ୍ତା ଥିଲେ ଅଚ୍ୟୁତାନନ୍ଦ । ସମାଜକୁ ଧ୍ୱଂସ ମୁଖରୁ ରକ୍ଷା କରି ନୂତନ ଦିଗ୍‌ଦର୍ଶନ ପ୍ରଦାନ କରିଥିଲେ ସେ । ସେଥିପାଇଁ ସେ ମହାପ୍ରଭୁ ଶ୍ରୀ ଜଗନ୍ନାଥଙ୍କ ଶ୍ରୀଚରଣରେ ନିଜକୁ ଆତ୍ମ ସମର୍ପଣ କରି ଗାଇ ଉଠିଥିଲେ-

*''ଜୟ ଜୟ ଜଗନ୍ନାଥ ଚତୁର୍ଦ୍ଧା ମୂରତି*
*ଅଚ୍ୟୁତାନନ୍ଦ ଦାସ ତୋ ଦାସ ଦିନରାତି ।''*

*- ହରିବଂଶ / ୧ମ ଖଣ୍ଡ*



# ଜୀବନୀ

ଓଡ଼ିଶାରେ ମହାପୁରୁଷ ଭାବରେ ପ୍ରସିଦ୍ଧି ଲାଭ କରିଥିବା ଅଚ୍ୟୁତାନନ୍ଦ ଦାସ ଥିଲେ ଏକାଧାରରେ ଭକ୍ତକବି, ସନ୍ଥ ଓ ସାଧକ । ଷୋଡ଼ଶ ଶତାବ୍ଦୀରେ ସଂଘଟିତ ହୋଇଥିବା ଧାର୍ମିକ ତଥା ସାଂସ୍କୃତିକ ଅଭ୍ୟୁଦୟର ସେ ଥିଲେ ପ୍ରମୁଖ ସୂତ୍ରଧର । ତାଙ୍କରି ଯୋଗୁଁ ଓଡ଼ିଶାର ସାମାଜିକ ଜୀବନରେ ଉଲ୍ଲେଖନୀୟ ପରିବର୍ତ୍ତନ ସମ୍ଭବ ହୋଇଥିଲା । ସେ ଜନସାଧାରଣଙ୍କ ହୃଦୟରେ ସ୍ୱତନ୍ତ୍ର ଆସନ ଲାଭ କରି ପାରିଥିଲେ । ଏପରିକି ସେ ଏତେ ଲୋକପ୍ରିୟ ଥିଲେ ଯେ ପରବର୍ତ୍ତୀ ସମୟରେ ଅଚ୍ୟୁତାନନ୍ଦ ନାମଧାରୀ ଅନେକ କବିଙ୍କ ରଚନାକୁ ଲୋକେ ତାଙ୍କର ସୃଷ୍ଟ ସମ୍ଭାର ଭାବେ ଗ୍ରହଣ କରି ନେଇଥିଲେ । ସେ ସମୟରେ କବି-ସାଧକମାନେ ନିଜର ନାମ ପ୍ରଚାର ଓ ପ୍ରସାର ଉପରେ ଆଦୌ ଗୁରୁତ୍ୱ ଦେଉ ନଥିଲେ । ସେଥିପାଇଁ ଗ୍ରନ୍ଥରେ କବିଙ୍କ ସ୍ୱପରିଚୟ ସଂପର୍କିତ ବିଶେଷ ବିବରଣୀ ସ୍ଥାନ ପାଉ ନଥିଲା । ପୁଣି ଗ୍ରନ୍ଥ ରଚନା କରି ଗୁରୁଙ୍କ ନାମରେ ଭଣିତା କରିବାର ଏକ ପରମ୍ପରା ସେତେବେଳେ ପ୍ରଚଳିତ ଥିଲା । ଗୁରୁଙ୍କ ନାମରେ ଗ୍ରନ୍ଥ ଭଣିତା କଲେ ଗୁରୁଙ୍କର ଆଶୀର୍ବାଦ ଲାଭ ହୁଏ ଓ ମୁକ୍ତି ମିଳେ ବୋଲି ଦୃଢ଼ ବିଶ୍ୱାସ ଥିଲା । ସେ ଦୃଷ୍ଟିରୁ ଶିଷ୍ୟ ପରମ୍ପରାର ଅନେକ ସ୍ରଷ୍ଟା ଗୁରୁ ଅଚ୍ୟୁତାନନ୍ଦଙ୍କ ନାମରେ ଗ୍ରନ୍ଥ ଭଣିତା କରିଛନ୍ତି । ଦୀନ ଅଚ୍ୟୁତ, ପାମର ଅଚ୍ୟୁତ, ଅଚ୍ୟୁତାନନ୍ଦ ଆଦି ନାମରେ ଭଣିତା ଥିବା ଶତାଧିକ ଗ୍ରନ୍ଥରାଜି କବି ଅଚ୍ୟୁତାନନ୍ଦଙ୍କ ନାମରେ ପ୍ରଚଳିତ ହୋଇ ଆସୁଛି । ପ୍ରତ୍ୟେକ ଗ୍ରନ୍ଥରେ ବ୍ୟବହୃତ ଭାଷା, ଐତିହାସିକ ତଥ୍ୟ ଓ କବି ପରିଚିତି ଦୃଷ୍ଟିରୁ ତାହାର ପ୍ରାମାଣିକତା ସ୍ଥିର କରିବା ସ୍ୱତନ୍ତ୍ର ଗବେଷଣା ସାପେକ୍ଷ । ତାହା ସତ୍ୟ ହେଲେବି ଏଠାରେ ଲୋକପ୍ରିୟ ଭକ୍ତକବି ସିଦ୍ଧ ସାଧକ ଅଚ୍ୟୁତାନନ୍ଦ ଦାସଙ୍କ ଜୀବନୀ ବିଭିନ୍ନ ଦୃଷ୍ଟିକୋଣରୁ ଆଲୋଚନା କରାଯିବା ଆବଶ୍ୟକ ପଡ଼େ ।

**ଜନ୍ମସ୍ଥାନ :** କଟକ ଜିଲ୍ଲାର ତିଳକଣା ଗ୍ରାମରେ ଅଚ୍ୟୁତାନନ୍ଦ ମାଘ ଶୁକ୍ଳ ଏକାଦଶୀ ତିଥିରେ ଜନ୍ମ ଗ୍ରହଣ କରିଥିଲେ । ଏହି ତିଳକଣା ନେମାଳ ଠାରୁ ଉତ୍ତରକୁ ପ୍ରାୟ ଦୁଇ କିଲୋମିଟର ଦୂରରେ ଅବସ୍ଥିତ । 'ଶୂନ୍ୟ ସଂହିତା'ରେ ଉଲ୍ଲେଖ ଅଛି-

*''ତିଳକଣାରେ ମୁଁ ଜନମ ଲଭିଛି*
*କେହି ନ ଚିହ୍ନିଲେ ମୋରେ*
*ଅଗଣିତ ବୋଲି ମାତା ଡାକୁଥାଟି*
*ଅନ୍ନ ନ ମିଳଇ ଘରେ ।''*

ପୁଣି 'ବର୍ଣ୍ଣଟୀକା ପୁରାଣ' ଅନୁଯାୟୀ ତାଙ୍କର ଜନ୍ମସ୍ଥାନ ହେଉଛି ତ୍ରିପୁର । ଯଥା- *''ଶୁଣ ବାବୁ ତୁମ୍ଭେ ବିପ୍ରବର । ମୋର ଜନ୍ମସ୍ଥାନ ଅଟେ ତ୍ରିପୁର ।''* ଏହି ତ୍ରିପୁର ହେଉଛି ଏକ ଧର୍ମଗତ ପ୍ରତୀକାତ୍ମକ ନାମ । ଶ୍ରୀକ୍ଷେତ୍ରରେ ଶ୍ରୀଜଗନ୍ନାଥ ମନ୍ଦିରରେ ଥିବା ବାଇଶି ପାହାଚ ମଧ୍ୟରୁ ଏକବିଂଶ ପାହାଚର ନାମ ତ୍ରିପୁର । ଦୀକ୍ଷା ଗ୍ରହଣ କରିବା ପରେ ସାଧକର ଜନ୍ମସ୍ଥାନ ପରିବର୍ତ୍ତନ କରାଯାଇଥାଏ । ତେଣୁ ଅଚ୍ୟୁତାନନ୍ଦ ଶ୍ରୀକ୍ଷେତ୍ରରେ ଦୀକ୍ଷା ଗ୍ରହଣ କରିବା ପରେ ବାଇଶି ପାହାଚର ଏକବିଂଶ ପାହାଚ (ତ୍ରିପୁର)କୁ ନିଜର ଜନ୍ମସ୍ଥାନ ରୂପେ ଗ୍ରହଣ କରିଛନ୍ତି । ଆଲୋଚକ ସୁରେନ୍ଦ୍ର ମହାନ୍ତି ଇଆଁଳା ପିଆଁଳା ଓ ସୁଷୁମ୍ନାର ମିଳନ ତ୍ରିବେଣୀକୁ ଯୌଗିକ ପରିଭାଷାରେ 'ତ୍ରିପୁରା' ବୋଲି ଗ୍ରହଣ କରିଛନ୍ତି । ତାଙ୍କ ମତରେ ଅଚ୍ୟୁତାନନ୍ଦ ଚୈତନ୍ୟ ପ୍ରଚାରିତ ଶୁଦ୍ଧାଭକ୍ତି ଧର୍ମ ପ୍ରତି ଆକୃଷ୍ଟ ନହୋଇ ଯୌଗିକ ସାଧନା ମାର୍ଗକୁ ଫେରି ଆସିଥିବା ଏଥିରୁ ସୂଚିତ ହୁଏ । ତାଙ୍କ ଜନ୍ମ ସଂପର୍କରେ ଏକ ଚମତ୍କାର କିମ୍ବଦନ୍ତୀ ଲୋକମୁଖରେ ପ୍ରଚଳିତ ଅଛି ଓ ତାହା ମଧ୍ୟ ତ୍ରିପୁର ସହିତ ଯୋଡ଼ି ହୋଇ ଯାଇଛି । ସେହି ପ୍ରବାଦ ଅନୁଯାୟୀ ତାଙ୍କ ପିତାମାତାଙ୍କର ସନ୍ତାନ ନ ହେବାରୁ ସେମାନେ ଶ୍ରୀକ୍ଷେତ୍ର ଯାଇ ଶ୍ରୀମନ୍ଦିରର ଗରୁଡ଼ ସ୍ତମ୍ଭ ପଛପଟରେ ଥାଇ ପ୍ରଭୁଙ୍କ ଆଗରେ ଗୋଟିଏ ପୁତ୍ର ଖେଳୁଥିବାର ଦେଖିବାକୁ ପାଇଲେ । ସେମାନେ ଭାବିଲେ ଜଗନ୍ନାଥ ସନ୍ତୁଷ୍ଟ ହୋଇ ତାଙ୍କୁ ଏହି ପୁତ୍ର ସନ୍ତାନ ଦାନ କରିଛନ୍ତି । ତା'ପରେ ସତକୁ ସତ ସେମାନେ ଘରକୁ ଫେରିବାର କିଛି ମାସ ପରେ ତାଙ୍କର ସନ୍ତାନ ଲାଭ ହେଲା । ସେଦିନ ଥିଲା, ମାଘ ଶୁକ୍ଳ ଏକାଦଶୀ ତିଥି । 'ଶୂନ୍ୟ ସଂହିତା'ରେ ଅଛି-

*''ଦଶମାସ ଦଶ ଦିବସ ମଧ୍ୟରେ ଶୁକ୍ଳ ମାଘ ଯେକାଦଶୀ*
*ଜନମ ଲଭନ୍ତେ ପିତା ମୋ ଦେଖନ୍ତେ ଅପୁତ୍ରିକ ଦୋଷ ଧ୍ୱଂସୀ ।''*

ପିତାମାତା ଖୁସିରେ ପୁଅର ନାମ ଦେଇଥିଲେ ଅଗଣି ଓ ଅଚ୍ୟୁତ । ସାଧାରଣତଃ ତାଙ୍କର ମାତା ତାଙ୍କୁ ଶ୍ରଦ୍ଧାର ସହିତ ଅଚ୍ୟୁତ ବୋଲି ଡ଼ାକୁ ଥିବାରୁ ସେହି ନାମଟି ତାଙ୍କର ପ୍ରିୟ ନାମ ହୋଇ ରହିଲା ।

*"କାଳେ କାଳେ ଯେ ମୋ ନାମ ଅଚ୍ୟୁତ*
*ମାତାପିତା ଏହି ନାମେ ଭକ୍ଷତ*
*ପ୍ରଘଟ କରି ଡାକିଲେ ଅଚ୍ୟୁତ"*

*- ଗୁରୁଭକ୍ତି ଗୀତା*

ତିଳକଣା ଗ୍ରାମକୁ କବିଙ୍କର ଜନ୍ମସ୍ଥାନ ରୂପେ ଗ୍ରହଣ କରାଯାଇ ଏଠାରେ ପ୍ରତିଦିନ ପୂଜାପାଠାଦି କର୍ମ ସଂପାଦନ କରାଯାଉଛି ।

**ପିତାମାତା :** ଅଚ୍ୟୁତାନନ୍ଦଙ୍କ ପିତାଙ୍କ ନାମ ଦୀନବନ୍ଧୁ ମହାନ୍ତି ଓ ଦୀନବନ୍ଧୁ ଖୁଣ୍ଟିଆ ଥିବା ସ୍ଥଳେ ମାତାଙ୍କ ନାମ ପଦ୍ମାବତୀ ବୋଲି ଉଲ୍ଲେଖ ଅଛି । ତାଙ୍କର ପିତାମହ ଗୋପୀନାଥ ମହାନ୍ତି ରାଜା ପ୍ରତାପରୁଦ୍ରଙ୍କର ଜଣେ ସେବା ନାୟକ ଥିଲେ । ତେଣୁ ଦୀନବନ୍ଧୁ ମହାନ୍ତିଙ୍କୁ ଯେତେବେଳେ ଏହି କାର୍ଯ୍ୟରେ ନିଯୁକ୍ତ ହେବା ପାଇଁ କୁହାଗଲା, ସେତେବେଳେ ସେ ଯୁଦ୍ଧ କର୍ମ କରିବା ପାଇଁ ମନା କରିଦେଲେ । ସେଥିପାଇଁ ରାଜା ତାଙ୍କୁ ଟହଲିଆ କର୍ମରେ ନିଯୁକ୍ତି ଦେଇ 'ମହାନ୍ତି' ପରିବର୍ତ୍ତେ 'ଖୁଣ୍ଟିଆ' ସଂଜ୍ଞା ପ୍ରଦାନ କରିଥିଲେ । ସେହିଦିନଠାରୁ ସେ ହେଲେ ଦୀନବନ୍ଧୁ ଖୁଣ୍ଟିଆ ।

**'ଅନ୍ନ ନ ମିଳଇ ଘରେ'** ଉକ୍ତିରୁ ତାଙ୍କର ପିତା ରାଜରୋଷରେ ପଡ଼ି କର୍ମ ହରାଇଥିଲେ । ତେଣୁ ସେ ଦୁଃଖ କଷ୍ଟରେ କାଳାତିପାତ କରିଥିବା ସ୍ପଷ୍ଟ ସୂଚିତ ହୁଏ । ମାତ୍ର ଦୀନବନ୍ଧୁ ଧର୍ମପରାୟଣ ଓ ଦୃଢ଼ ଈଶ୍ୱରବିଶ୍ୱାସୀ । ଶ୍ରୀଜଗନ୍ନାଥଙ୍କ ଠାରେ ତାଙ୍କର ଅଟଳ ଭକ୍ତି ଥିଲା । ପ୍ରଭୁଙ୍କ ଅପାର କରୁଣାରୁ ସେ ଅଚ୍ୟୁତାନନ୍ଦଙ୍କ ପରି ପୁତ୍ର ସନ୍ତାନ ଲାଭ କରିଥିଲେ । ଅଚ୍ୟୁତାନନ୍ଦଙ୍କର ଦୁଇଭାଇ ଓ ଗୋଟିଏ ଭଉଣୀ ଥିଲେ ଓ ସେମାନେ ତ୍ରିପୁର ଗ୍ରାମରେ ବାସ କରୁଥିଲେ ।

*"ବେନି ଭ୍ରାତ ମୋର ଏକ ଯେ ଭଗିନୀ ତ୍ରିପୁର ଗ୍ରାମରେ ବାସ*
*ଏମନ୍ତେ ମୋ ମାତା ପିଅର ବଅଛି ଗ୍ରାମରେ କରି ନିବାସ ।"*

*- ଜନ୍ମ ଶରଣ*

ଜାତି : ଅଚ୍ୟୁତାନନ୍ଦ ଅହୋ କରଣ କୁଳରେ ଜନ୍ମ ଗ୍ରହଣ କରିଥିଲେ ଓ ନିଜକୁ ଶୂଦ୍ର ବୋଲି ପରିଚିତ କରାଇଥିଲେ । ତାଙ୍କ ଭାଷାରେ-

*"ଅଚ୍ୟୁତାନନ୍ଦ ଦାସ ନାମ ମୋହର ନେମାଳ ଗ୍ରାମରେ ଘର*
*ଶୂଦ୍ରକୁଳେ ମୁହିଁ ଜନମ ଲଭିଛି ଆଜ୍ଞା ଘେନି ପ୍ରଭୁଙ୍କର ।"*

ଈଶ୍ୱର ଦାସଙ୍କ ଚୈତନ୍ୟ ଭାଗବତରେ ଅଚ୍ୟୁତାନନ୍ଦ ଜାତିରେ କରଣ ଥିବା କଥା ଲେଖାଅଛି ଓ ଅଧ୍ୟାପକ ଆର୍ତ୍ତବଲ୍ଲଭ ମହାନ୍ତି ଏହାକୁ ହିଁ ଗ୍ରହଣ କରିଛନ୍ତି । କିନ୍ତୁ ଅନ୍ୟ ଏକ କିମ୍ବଦନ୍ତୀ ଅନୁଯାୟୀ ସେ ଜାତିରେ ଗୋପାଳ ଥିଲେ ଓ ତାଙ୍କର ଶିଷ୍ୟମାନଙ୍କ ମଧ୍ୟରୁ ଅଧିକାଂଶ ଥିଲେ ଗୋପାଳ ଜାତିର । ସେଥିପାଇଁ ସେ ଗୋପାଳ ଜାତିର 'ତ୍ରାଣକର୍ତ୍ତା' ରୂପେ ଗୃହୀତ ହୋଇଛନ୍ତି । ପୁଣି 'ଭାବନାବର' ଗ୍ରନ୍ଥରେ ସେ କମାର ଥିଲେ ଓ ତାଙ୍କର ଜନ୍ମତିଥି ମାଘ ମାସ ଶୁକ୍ଳ ପକ୍ଷ ଏକାଦଶୀ ବୋଲି ଉଲ୍ଲେଖ ଅଛି । ଏଥିପାଇଁ ତାଙ୍କୁ ଅହୋ କରଣ, ଗୋପାଳ ଓ କମାର ଜାତି ସହିତ ସଂପୃକ୍ତ କରାଯାଇଛି ।

ସାଧାରଣତଃ ଯତି, ଯୋଗୀ ଓ ସନ୍ନ୍ୟାସୀ ପ୍ରଭୃତିଙ୍କର କୌଣସି ଜାତି ନଥାଏ । ସେମାନେ ଯେଉଁ ଜାତିରେ ଜନ୍ମ ଗ୍ରହଣ କଲେ ମଧ୍ୟ ସାଧନା ବଳରେ ସବୁ ଜାତିକୁ ସମାନ ଦୃଷ୍ଟିରେ ଦେଖନ୍ତି ଓ ଜାତିଭେଦର ସଂକୀର୍ଣ୍ଣ ଗଣ୍ଡି ମଧ୍ୟରୁ ଊର୍ଦ୍ଧ୍ୱକୁ ଉଠି ଶେଷରେ ଜାତିହୀନ ହୋଇଯାନ୍ତି । ସେଥିପାଇଁ ଦୀକ୍ଷା ଗ୍ରହଣ କରିବା ପରେ ସାଧକର ନାମ ଓ ସାଙ୍ଗିଆ ମଧ୍ୟ ବଦଳିଯାଏ । ଗୃହୀ ତଥା ସଂସାରୀ ଭାବରେ ସମସ୍ତ ପ୍ରକାର ବିଷୟାସକ୍ତ ମାୟାମୋହକୁ ପରିତ୍ୟାଗ କରିବାର ଏହା ହେଉଛି ଏକ ପ୍ରକାର ସୂଚନା । ସେହିପରି ତାଙ୍କର ପୂର୍ବନାମ ସିନ୍ଦୂରାନନ୍ଦ ପରିବର୍ତ୍ତିତ ହୋଇ ଦୀକ୍ଷା ନାମ ହୋଇଥିଲା ଅଚ୍ୟୁତାନନ୍ଦ । ବଳରାମ ଦାସଙ୍କ ପିତାଙ୍କ ନାମ ସୋମନାଥ ମହାପାତ୍ର ହୋଇଥିଲେ ହେଁ ସେ ମହାପାତ୍ର ପରିବର୍ତ୍ତେ 'ଦାସ' ସଂଜ୍ଞା ଗ୍ରହଣ କରିଥିଲେ । ଜଗନ୍ନାଥ ଦାସ ବ୍ରାହ୍ମଣ ଓ ଶିଶୁ ଅନନ୍ତ 'ମହାନ୍ତି' ଥିଲେ ମଧ୍ୟ ଉଭୟଙ୍କ ନାମ ସହିତ 'ଦାସ'କୁ ଯୋଗ କରାଯାଇଛି । ଏପରିକି ଯଶୋବନ୍ତ ମଧ୍ୟ ଏହିପରି 'ଦାସ' ସଂଜ୍ଞା ଗ୍ରହଣ କରିଛନ୍ତି । କର୍ମକୁ ନେଇ ଜାତି ସୃଷ୍ଟି ହୋଇଥିବା କଥା ଅଚ୍ୟୁତାନନ୍ଦ କହିଛନ୍ତି ।

*"ମୋର ପିତାମହ ସେ ଗୋପୀନାଥ । ଦାସ ତାହାଙ୍କର ଅଟେ ପାଧିତ ।*
*ଶ୍ରୀକ୍ଷେତ୍ରେ ଛାମୁକରଣ ସେ ଥିଲେ । ଛାମୁ ଆଜ୍ଞାରେ ଦିନ ଯେ କାଟିଲେ ।*
*ତାଙ୍କ ପୁତ୍ର ମୋର ପିତା ଅଟନ୍ତି । ଶ୍ରୀକ୍ଷେତ୍ରେ ଖୁଣ୍ଟିଆ କର୍ମ କରନ୍ତି ।*
*ପ୍ରତାପ ନୃପତି ସନ୍ତୋଷ ହୃଦେ । ଖୁଣ୍ଟିଆ ପଦ ଦେଲେ ମୋର ତାତେ ।"*

*- ବର୍ଣ୍ଣଟୀକା*

ନିଜ ପିତାଙ୍କର ସଂଜ୍ଞା ଖୁଣ୍ଟିଆ ଥିଲେ ମଧ୍ୟ ଅଚ୍ୟୁତାନନ୍ଦ ନିଜ ନାମ ସହିତ ଯୋଗ କଲେ 'ଦାସ' ପଦବୀ । ସେ 'ଅହୋକରଣ' କୁଳରେ ଜନ୍ମ ହୋଇଥିବା କଥା ସ୍ୱୀକାର କରିଛନ୍ତି । ସାଧାରଣତଃ କୋଠକରଣ, ଶିଷ୍ଟକରଣ, ଛାମୁକରଣ ଓ ଅହୋକରଣ ହେଉଛି କରଣ ଜାତିର କେତୋଟି ଭାଗ । ଏବେ ମଧ୍ୟ ଖୋର୍ଦ୍ଧା ଅଞ୍ଚଳରେ ଅହୋକରଣ ଜାତିର ଲୋକେ ବାସ କରୁଛନ୍ତି । ନିଜର ପୂର୍ବଜନ୍ମ ବୃତ୍ତାନ୍ତ ବର୍ଣ୍ଣନା କରି ଅଚ୍ୟୁତାନନ୍ଦ କହିଛନ୍ତି ଯେ, ସେ ସତ୍ୟଯୁଗରେ କୃପାଜଳ ବ୍ରାହ୍ମଣ, ତ୍ରେତୟା ଯୁଗରେ ନଳ, ଦ୍ୱାପରରେ ସୁଦାମ ଭାବରେ ଜନ୍ମ ନେଇ ଭଗବାନଙ୍କୁ ଭକ୍ତି କରି ଆସିଥିଲେ । ଭକ୍ତିଧର୍ମର ବର୍ଣ୍ଣ ହେଉଛି ଶୂଦ୍ର ବର୍ଣ୍ଣ । ଉକ୍ତ ସେବା ଦ୍ୱାରା ହିଁ ଭଗବାନଙ୍କୁ ପାଇପାରେ । ଏହି ସେବା ହେଉଛି ଶୂଦ୍ରର ସ୍ୱଭାବ । ତେଣୁ ବ୍ରାହ୍ମଣ, କ୍ଷତ୍ରିୟ ଓ ବୈଶ୍ୟମାନେ ଗର୍ବ, ଅହଂକାର ଏବଂ ତର୍କ ବିତର୍କରେ ପ୍ରମତ୍ତ ହୋଇ ଭକ୍ତିତତ୍ତ୍ୱ କ'ଣ ତାହା ଜାଣି ପାରନ୍ତି ନାହିଁ । କେବଳ ଶୂଦ୍ର ହିଁ ସେବା ଦ୍ୱାରା ଭକ୍ତିବଳରେ ଚତୁର୍ବର୍ଗ ଲାଭ କରିଥାଏ ।

*''ଶୂଦ୍ର ବର୍ଣ୍ଣରେ ସେବା ପ୍ରାପ୍ତ ହୁଏ । ଅହଂକାର ନାହିଁ ଶୂଦ୍ରର ଦେହେ ।''*

*- ବର୍ଣ୍ଣଟୀକା*

ଏ ଦୃଷ୍ଟିରୁ ପଞ୍ଚସଖା ବିଭିନ୍ନ ଜାତିର ଅନ୍ତର୍ଭୁକ୍ତ ହୋଇଥିଲେ ମଧ୍ୟ ସେମାନେ ନିଜକୁ ଶୂଦ୍ର ବୋଲି ପରିଚିତ କରାଇଛନ୍ତି । ଅଚ୍ୟୁତାନନ୍ଦଙ୍କ ଭାଷାରେ-

*''ନାହିଁ ମୋହର ବିପ୍ରବର୍ଣ୍ଣେ ଆଶା । କ୍ଷତ୍ରିୟ ବୈଶ୍ୟରେ ନାହିଁ ଭରସା ।*
*ସାନ ହେଲେ ମନ ସରୁଆ ହୋଇ । ତହୁଁ ଅଚ୍ୟୁତ ଯେ ଶୂଦ୍ର ବୋଲାଇ ।''*

*- ବର୍ଣ୍ଣଟୀକା*

'ଉଦୟ କାହାଣୀ' ଗ୍ରନ୍ଥରେ ସେ ପଞ୍ଚସଖାଙ୍କର ଜାତି ନିର୍ଣ୍ଣୟ କରି ଦେଇଛନ୍ତି । ସେମାନେ ସତ୍ୟ ଯୁଗରେ ବ୍ରାହ୍ମଣ, ତ୍ରେତୟା ଯୁଗରେ କ୍ଷତ୍ରିୟ, ଦ୍ୱାପର ଯୁଗରେ ବୈଶ୍ୟ ଓ କଳି ଯୁଗରେ ଶୂଦ୍ର ଭାବରେ ଜନ୍ମ ଗ୍ରହଣ କରିଛନ୍ତି ।

ଅଚ୍ୟୁତାନନ୍ଦ ଜାତିଭେଦ ପ୍ରଥାର ଘୋର ବିରୋଧୀ ଥିଲେ । ତେଣୁ ସେ ଅନ୍ୟ ଜାତିରେ ବିବାହ କରି ସମାଜରେ ନୂଆ ପ୍ରକାର ଆଦର୍ଶ ପ୍ରତିଷ୍ଠା କରିଥିଲେ । ଅଢ଼ଙ୍ଗ ରାଜା ରଘୁରାମଙ୍କ କନ୍ୟା ଚମ୍ପାବତୀଙ୍କ ମତରେ-

*''ମୁହିଁ ଗୋପିକା ସେ ଅଟେ ଗୋପାଳ । ସେ କୃଷ୍ଣ ସଖା ମୁଁ ରାଧାଙ୍କ ମେଳ ।*
*କଳି ଜନ୍ମ ତାଙ୍କ ଅହୋକୁଳରେ । ମୋର ଜନମଟି ସୋମ ଅଂଶରେ ।*
*କ୍ଷତ୍ରିୟ କରଣ ବାରଣ ନାହିଁ । ସତୀ ଯତି ଠାରେ ଭେଦ ନ ଥାଇ ।''*

ଯିଏ ଯେଉଁ ଜାତିରେ ଜନ୍ମ ହୋଇଥାଉ ପଛକେ ସାଧନା ଅଙ୍ଗରେ ସେ ଜାତି ତାର ରହେ ନାହିଁ । ଭକ୍ତିଭାବରେ ସେବା କରି ଯିଏ ଭଗବାନଙ୍କର ସଙ୍ଗ ଲାଭ କରେ ସିଏ ହୁଏ ବାସ୍ତବରେ କୃଷ୍ଣଙ୍କର ସଖା । ତାକୁ ହିଁ କୁହାଯାଏ ଗୋପାଳ । ଗୋପାଳ ପ୍ରକୃତରେ ଏଠାରେ କୌଣସି ନିର୍ଦ୍ଦିଷ୍ଟ ଜାତିକୁ ନ ବୁଝାଇ ଶ୍ରୀକୃଷ୍ଣଙ୍କ ସଖାମାନଙ୍କୁ ହିଁ ବୁଝାଏ । ସେଥିପାଇଁ ଚମ୍ପାବତୀ ନିଜକୁ ଗୋପିକା ଓ ଅଚ୍ୟୁତାନନ୍ଦଙ୍କୁ ଗୋପାଳ ବୋଲି ପ୍ରକାଶ କରିଛନ୍ତି । ଅଚ୍ୟୁତାନନ୍ଦ ମଧ୍ୟ ବହୁ ଗ୍ରନ୍ଥରେ ନିଜକୁ ଓ ନିଜର ଶିଷ୍ୟମାନଙ୍କୁ ଗୋପାଳ ଭାବରେ ପରିଚିତ କରାଇଛନ୍ତି ଏବଂ ସେ ନିଜେ ଗୋପାଳ କୁଳକୁ ଉଦ୍ଧାର କରିବା ପାଇଁ ଭଗବାନଙ୍କ ଦ୍ୱାରା ଆଦିଷ୍ଟ ହୋଇ ଜନ୍ମଗ୍ରହଣ କରିଛନ୍ତି ବୋଲି ପ୍ରକାଶ କରିଛନ୍ତି ।

ବ୍ରାହ୍ମଣମାନେ ପଞ୍ଚସଖାଙ୍କୁ ଈର୍ଷା କରୁଥିବା କଥା 'ଉଦୟ କାହାଣୀ' ଓ 'ଶୂନ୍ୟ ସଂହିତା' ଗ୍ରନ୍ଥରେ ଉଲ୍ଲେଖ ଅଛି । ସେମାନେ ଭାବୁଥିଲେ ଯେ ପଞ୍ଚସଖାଙ୍କର ବେଦ ପଠନ ସଂକ୍ରାନ୍ତୀୟ ଶାସ୍ତ୍ରୀୟ ଜ୍ଞାନ ନଥିବାରୁ ସେମାନେ ପ୍ରତ୍ୟେକ ନିଜକୁ ଶୂଦ୍ର ବୋଲି ପ୍ରକାଶ କରୁଛନ୍ତି । କିନ୍ତୁ ଅଚ୍ୟୁତାନନ୍ଦ ବ୍ରାହ୍ମଣମାନଙ୍କୁ ଉଚିତ ଜବାବ ଦେଇ କହିଛନ୍ତି ଯେ ସେମାନଙ୍କର ଶାସ୍ତ୍ର, ମନ୍ତ୍ର, ଯନ୍ତ୍ର, ଯୋଗ ପ୍ରଭୃତିରେ ଗଭୀର ଜ୍ଞାନ ରହିଛି । ହେଲେ ସେମାନେ ଭକ୍ତିଭାବରେ ଉଦ୍‌ବୁଦ୍ଧ ହୋଇ ସେବା ମନୋଭାବ ଯୋଗୁଁ ନିଜକୁ ଶୂଦ୍ର ବୋଲି ପରିଚିତ କରାଉଛନ୍ତି । ତାଙ୍କ ମତରେ-

*''ଶୁଣ ରାମଚନ୍ଦ୍ର ଗୋପ କୁମର । ସେବା ଆମ୍ଭର ଶ୍ରୀକୃଷ୍ଣ ପୟର ।*
*ଚହୁଁ ପଞ୍ଚସଖା ଶୂଦ୍ର ହୋଇଲୁ । ଜ୍ୟେଷ୍ଠ କନିଷ୍ଠ ବାରି ନ ପାରିଲୁ ।''*

*- ଉଦୟ କାହାଣୀ*

ପୁଣି ଅଚ୍ୟୁତାନନ୍ଦ କୌଣସି ସଂକୀର୍ଣ୍ଣ ଜାତିର ଗଣ୍ଡିଭିତରେ ଆବଦ୍ଧ ନ ହୋଇ ନିଜକୁ ବୈଷ୍ଣବ ଜାତି ବୋଲି ପ୍ରକାଶ କରିଛନ୍ତି । 'ଚଉରାଶି ମନ୍ତ୍ର'ରେ ଅଛି-

*''ଅଚ୍ୟୁତି ଦାସ ମୁଁ ବୈଷ୍ଣବ ଜାତି*
*ବୈଷ୍ଣବ ସେବାରେ ଥାଉ ମୋ ମତି ।''*

**ଜନ୍ମକାଳ :** ଅଚ୍ୟୁତାନନ୍ଦଙ୍କ କେତେକ ଗ୍ରନ୍ଥରେ ସନ୍ନିବେଶିତ ତଥ୍ୟକୁ ଭିତ୍ତି କରି ଆଲୋଚକମାନେ ଯେଉଁ ସିଦ୍ଧାନ୍ତରେ ଉପନୀତ ହୋଇଛନ୍ତି, ତାହା ସଂପୂର୍ଣ୍ଣ ଭାବରେ ସନ୍ଦେହ ମୁକ୍ତ ନୁହେଁ । ସେଥିପାଇଁ ତାଙ୍କର ଜନ୍ମକାଳ ସଂପର୍କରେ ନାନା ପ୍ରକାର ମତ ଦେଖିବାକୁ ମିଳେ । 'ଉଦୟ କାହାଣୀ'ରେ ବର୍ଣ୍ଣିତ ତଥ୍ୟକୁ ଆଧାର କରି ପଣ୍ଡିତ ସୂର୍ଯ୍ୟ

ନାରାୟଣ ଦାସ କୁହନ୍ତି ଯେ ଅଚ୍ୟୁତାନନ୍ଦ ୧୪୮୨ ସାଲରେ ଜନ୍ମ ଗ୍ରହଣ କରିଥିଲେ । ସମାଲୋଚକ ଚିତ୍ତ ରଞ୍ଜନ ଦାସ ମଧ୍ୟ ତାଙ୍କର ଏହି ମତକୁ ସ୍ୱୀକାର କରିଛନ୍ତି । ପଣ୍ଡିତ ବିନାୟକ ମିଶ୍ର ୧୪୯୦ ଖ୍ରୀଷ୍ଟାବ୍ଦ ପରବର୍ତ୍ତୀ, ପଣ୍ଡିତ ମୃତ୍ୟୁଞ୍ଜୟ ରଥ ୧୪୬୦ ପୂର୍ବବର୍ତ୍ତୀ, ଅଧ୍ୟାପକ ଆର୍ତ୍ତବଲ୍ଲଭ ମହାନ୍ତି ୧୫୧୧-୧୨ ଖ୍ରୀଷ୍ଟାବ୍ଦକୁ ତାଙ୍କର ଜନ୍ମକାଳ ଭାବରେ ଗ୍ରହଣ କରିଛନ୍ତି । ଏହିପରି ମତାନ୍ତର ରହିଛି ତାଙ୍କର ଜନ୍ମକୁ କେନ୍ଦ୍ର କରି । ତେବେ ମିଳୁଥିବା କେତେକ ତଥ୍ୟକୁ ଆଧାର କରି ତାଙ୍କର ଜନ୍ମ ସମୟ ନିରୂପଣ କରାଯାଇପାରେ ।

୧) ଅଚ୍ୟୁତାନନ୍ଦ ରଣପୁରରେ ପଦ୍ମନାଭ ନରେନ୍ଦ୍ରଙ୍କ ଆଶ୍ରିତରେ ଥିଲେ ଓ ତାଙ୍କ ପୃଷ୍ଠପୋଷକତା ଲାଭ କରି କେତେକ ଗ୍ରନ୍ଥ ରଚନା କରିଥିଲେ । ସେସବୁ ଗ୍ରନ୍ଥ ମଧ୍ୟରେ 'ହରିବଂଶ' ଓ 'ଅନନ୍ତ ଗୋଇ' ଅନ୍ୟତମ । ସେଥିରେ ଅଛି-

*''ରଣପୁର ମଝି ଆଖଣ୍ଡାଚଳେ ବସି କରି ଥାଇ*
*ପଦ୍ମନାଭ ନରେନ୍ଦ୍ର ମୋତେ ଅନ୍ନ ଦେଇ ପୋଷଇ ।*

**- ହରିବଂଶ**

*''ମୁଁ ଥିବି ମଣିନାଗଙ୍କୁ ଯୋଜନେ ଅନ୍ତର ।''*

**- ଅନନ୍ତ ଗୋଇ**

ରଣପୁର ରାଜା ପଦ୍ମନାଭ ନରେନ୍ଦ୍ରଙ୍କର ସେ ସମସାମୟିକ ଥିବା ଏଥିରୁ ସୂଚିତ ହୁଏ ଓ ପଦ୍ମନାଭ ନରେନ୍ଦ୍ର ୧୪୭୬ରୁ ୧୫୨୫ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ ।

୨) ଶ୍ରୀଚୈତନ୍ୟଙ୍କ ଆଦେଶ କ୍ରମେ ଶ୍ରୀ ସନାତନ ଗୋସ୍ୱାମୀ ଅଚ୍ୟୁତାନନ୍ଦଙ୍କୁ ଦୀକ୍ଷା ଦେବା ପ୍ରସଙ୍ଗ 'ଶୂନ୍ୟ ସଂହିତା' ରେ ଉଲ୍ଲେଖ ଅଛି ।

*''ଶିରୀ ସନାତନ ସ୍ୱାମୀଙ୍କୁ ଚାହିଁଣ*
*ଆଜ୍ଞା ଦେଲେ ଶଚୀ-ସୁତ*
*ଅଚ୍ୟୁତାନନ୍ଦଙ୍କୁ ତୁମ୍ଭେ ଉପଦେଶ*
*କର ହେ ଯାଇ ତୁରିତ ।''*

ଶ୍ରୀଚୈତନ୍ୟ ପ୍ରଥମ ଥର ଶ୍ରୀକ୍ଷେତ୍ରରେ ଆସି ପହଞ୍ଚିଥିଲେ ୧୫୦୯ ମସିହା ଫେବୃୟାରୀ ମାସରେ । କିନ୍ତୁ ସେ ଛ'ବର୍ଷ କାଳ ଭାରତର ବିଭିନ୍ନ ସ୍ଥାନ ଭ୍ରମଣ କରିବା ପରେ ପୁଣି ଶ୍ରୀକ୍ଷେତ୍ର ଆସି ଏଠାରେ ସ୍ଥାୟୀ ଭାବରେ ବାସ କରି ଶେଷ ଜୀବନ କଟାଇଥିଲେ । ତେଣୁ ସେ ୧୫୧୫ ମସିହାଠାରୁ ଶ୍ରୀକ୍ଷେତ୍ରରେ ଅବସ୍ଥାନ କରିବା ପରେ ତାଙ୍କ ନିର୍ଦ୍ଦେଶରେ ସନାତନ ଗୋସ୍ୱାମୀ ଅଚ୍ୟୁତାନନ୍ଦଙ୍କୁ ଦୀକ୍ଷା ପ୍ରଦାନ କରିଥିବେ ।

୩) ଅଚ୍ୟୁତାନନ୍ଦ 'ଚାରିଖାନି' ବା 'ଶବ୍ଦ ବ୍ରହ୍ମ ସଂହିତା' ଗ୍ରନ୍ଥରେ ଏହାର ରଚନାକାଳ ସଂପର୍କରେ ନିର୍ଦ୍ଦିଷ୍ଟ ଭାବରେ ଲେଖିଛନ୍ତି-

*''ସେ ମହାରାଜାଙ୍କ ପଚିଶ ଅଙ୍କେ*
*ଶବଦ ବ୍ରହ୍ମ ମୁଁ କଲି ନିଶଙ୍କେ ।''*

*- ପ୍ରଥମ ଖାନି-୧୨୪ ପଦ*

ସେ ମହାରାଜା ଏଠାରେ ପ୍ରତାପରୁଦ୍ର ଦେବଙ୍କୁ ବୁଝାଯାଏ ଓ ତାଙ୍କର ପଚିଶ ଅଙ୍କ ହେଉଛି ୧୫୧୬ ଖ୍ରୀଷ୍ଟାବ୍ଦ । ଉକ୍ତ ଗ୍ରନ୍ଥରେ କବି ଗ୍ରନ୍ଥର ରଚନା କାଳ ଉଲ୍ଲେଖ କରିବା ସଙ୍ଗେ ସଙ୍ଗେ ନିଜର ବୟସର ମଧ୍ୟ ସୂଚନା ପ୍ରଦାନ କରିଛନ୍ତି । କବିଙ୍କ ମତରେ-

*''କୁମାର ଯୁବା ଯେ ଜରା ଅବସ୍ଥା*
*ଏହି ଦେହ ମୋର ତିନି ଅବସ୍ଥା ।''*

*- ପ୍ରଥମ ଖାନି-୬୧ ପଦ*

କବି ନିଜ ଦେହର ଯେଉଁ ତିନି ଅବସ୍ଥା କଥା ଉଲ୍ଲେଖ କରିଛନ୍ତି, ସେଥିରୁ ସ୍ପଷ୍ଟ ଜଣାପଡ଼େ ଯେ ସେ ଜରାବସ୍ଥା ସମୟରେ 'ଚାରିଖାନି' ବା 'ଶବ୍ଦ ବ୍ରହ୍ମ ସଂହିତା' ଗ୍ରନ୍ଥ ରଚନା କରିଥିଲେ । ତାଙ୍କ ଆଖି ଆଗରେ ଜ୍ଞାତି, କୁଟୁମ୍ବ, ପ୍ରିୟ ପରିଜନମାନେ ଜଣକ ପରେ ଜଣେ ଏ ସଂସାରରୁ ବିଦାୟ ନେଇ ଯାଉଥିବା ଘଟଣା ତାଙ୍କୁ ମର୍ମାହତ କରିଥିଲା । ମାୟାମୋହ ସଂସାରର ଏ ପ୍ରକାର ଦୁଃଖଦ ଘଟଣା ଦେଖି ସେ ବିବ୍ରତ ହୋଇ ପଡ଼ିଲେ । ସେ ଲେଖିଛନ୍ତି-

*''ଆବର ପ୍ରତ୍ୟକ୍ଷେ ଦେଖିଲି ଯାହା*
*ଚିତ୍ତ ଚମତ୍କାର କହିଲେ ତାହା,*
*ମୋହର ଦେଖୁ ଦେଖୁ ଯେତେ ଗଲେ*
*ଜଣେ ହେଁ କେହି ବାହୁଡ଼ି ନଇଲେ ।*
*ଏତେ ମାୟାମୋହ କ୍ଷଣକେ ଛାଡ଼ି*
*ଯେତେକ ମଲେ ନଇଲେ ବାହୁଡ଼ି ।''*

'ଚାରିଖାନି' ବା 'ଶବ୍ଦବ୍ରହ୍ମ ସଂହିତା' ଗ୍ରନ୍ଥର ମୁଖବନ୍ଧରେ ସମାଲୋଚକ ଡକ୍ଟର କୃଷ୍ଣଚରଣ ସାହୁ ବିଭିନ୍ନ ଦୃଷ୍ଟିକୋଣରୁ ଆଲୋଚନା କରି ଷାଠିଏ ବର୍ଷରୁ ଊର୍ଦ୍ଧ୍ୱକୁ ଜରା ଅବସ୍ଥା ବୋଲି ଗ୍ରହଣ କରିଛନ୍ତି । ସାରଳା ଦାସ ଓ ଜଗନ୍ନାଥ ଦାସଙ୍କ ମତକୁ ଉଦ୍ଧାର କରି

'ଚାରିଖାନି' ରଚନା ହେବା ବେଳକୁ କବିଙ୍କୁ ଷାଠିଏ ବର୍ଷରୁ ଅଧିକ ହୋଇଥିବ ବୋଲି ସେ ପ୍ରକାଶ କରିଛନ୍ତି । ତାଙ୍କ ମତରେ ଅଚ୍ୟୁତାନନ୍ଦଙ୍କ ଜନ୍ମକାଳ ହେଲା ୧୪୬୫ ଖ୍ରୀଷ୍ଟାବ୍ଦ ।

କିନ୍ତୁ 'ଉଦୟ କାହାଣୀ'ରେ ଅଚୁତାନନ୍ଦ ସାଂକେତିକ ବା ପ୍ରତୀକ ମାଧ୍ୟମରେ ତାଙ୍କ ଜନ୍ମ ସମୟର ସୂଚନା ଦେଇଛନ୍ତି । ସେଥିରେ ଅଛି-

*''ପଚାରିଲୁ ରାମ ଜନମ ଅଙ୍କ । ଅଟି ହିଁ ଶୁପଚ ବଡ଼ ବିବେକ ।*
*ଡାହାଣ ଅଙ୍କକୁ ଗୁଣିବୁ ଯେବେ । ବାମ ଅଙ୍କ ଗୋଟି ମିଶାଅ ତେବେ ।*
*ଏମନ୍ତ ସାଲ ହୋଇବ ନିକର । ଶୁଣ ରାମଚନ୍ଦ୍ର ଏଥି ବିଚର ।*
*ସାତ ଭୁଜ ଅରି ମଣି ମିତ୍ରରେ । ତାରି ସନ ଯେନ ଓଡ୍ର ରାଷ୍ଟ୍ରରେ ।*
*ଏ ଅଙ୍କେ ମୁହିଁ ଜନମ ହେଲି । ଅଚ୍ୟୁତ ପାମର ନାମ ପାଇଲି ।''*

ଆଲୋଚକ ପଣ୍ଡିତ ସୂର୍ଯ୍ୟନାରାୟଣ ଦାସ 'ଓଡ଼ିଆ ସାହିତ୍ୟର ଇତିହାସ' ଗ୍ରନ୍ଥରେ ଉପରୋକ୍ତ ସାଂକେତିକ ସୂଚନାକୁ ଏପରି ଭାବରେ ଗ୍ରହଣ କରିଛନ୍ତି । (ସାତ)୭ +(ବେନିଭୁଜ)୨+(ଷଡ଼ ଅରି ବା ରିପୁ)୬+(ନବରତ୍ନ ବା ମଣି)୯+(ଦ୍ୱାଦଶ ଆଦିତ୍ୟ ବା ମିତ୍ର)୧୨= ୩୬ । ଏହି ୩୬ର ଡ଼ାହାଣ ଅଙ୍କକୁ ବାମ ଅଙ୍କରେ ଗୁଣି ପୁଣି ସେଥିରେ ବାମ ଅଙ୍କ ଯୋଗ କଲେ ସଂଖ୍ୟାଟି ହେଲା = ୨୧ । ଅର୍ଥାତ୍ ପୁରୁଷୋତ୍ତମ ଦେବଙ୍କ ୨୧ ଅଙ୍କ ଅର୍ଥାତ ୧୪୮୨ ଖ୍ରୀଷ୍ଟାବ୍ଦରେ ଅଚ୍ୟୁତାନନ୍ଦ ଜନ୍ମଗ୍ରହଣ କରିଥିଲେ । ଅଧିକାଂଶ ଆଲୋଚକ ଏହି ମତକୁ ଗ୍ରହଣ କରିଛନ୍ତି । ପ୍ରତିବର୍ଷ ମାଘ ମାସ ଏକାଦଶୀ ଦିନ ନେମାଳ ଗାଦିରେ ତାଙ୍କର ଆବିର୍ଭାବ ଉତ୍ସବ ପାଳିତ ହୁଏ ।

**ପୂର୍ବଜନ୍ମ ବୃତ୍ତାନ୍ତ :** ଓଡ଼ିଶାର ପଞ୍ଚସଖା କେବଳ ଯେ ଅବତାରବାଦ ଉପରେ ବିଶ୍ୱାସ କରୁଥିଲେ, ତାହା ନୁହେଁ । ସେମାନେ ବିଭିନ୍ନ ଯୁଗରେ ଶ୍ରୀକୃଷ୍ଣଙ୍କ ପ୍ରିୟସଖା ଭାବରେ ଜନ୍ମଗ୍ରହଣ କରିଥିଲେ । ଅଚ୍ୟୁତାନନ୍ଦ ପାଞ୍ଚଯୁଗରେ ପଞ୍ଚସଖାଙ୍କର ପରିଚୟ ନିମ୍ନ ଲିଖିତ ପ୍ରକାରେ ''ଗୋପାଳଙ୍କ ଓଗାଳ'' ଗ୍ରନ୍ଥରେ ପ୍ରଦାନ କରିଛନ୍ତି ।

ଅନନ୍ତ ଯୁଗ - ଶ୍ରୀଦାମ, ସୁଦାମ, ବସୁଦାମ, ନନ୍ଦ, ସୁନନ୍ଦ
ସତ୍ୟଯୁଗ - ମାର୍କଣ୍ଡ, କୃପାଜଳ, ଗାର୍ଗବ, ସ୍ୱୟମ୍ଭୁ, ନାରଦ
ତ୍ରେତୟାଯୁଗ - ନଳ,ନୀଳ, ସୁଷେଣ, ଜାମ୍ବେବ, ହନୁମାନ
ଦ୍ୱାପରଯୁଗ - ସୁବଳ, ସୁବାହୁ, ଦାମ, ସୁଦାମ, ଶ୍ରୀବତ୍ସ
କଳିଯୁଗ - ଅନନ୍ତ, ଅଚ୍ୟୁତ, ଜଗନ୍ନାଥ, ଯଶୋବନ୍ତ, ବଳରାମ

ଏହା ବ୍ୟତୀତ ତାଙ୍କର ଦଶପଟଳ, ଗୁରୁଭକ୍ତି ଗୀତା, ମଣିବରଣ ଗୀତା, ଶୂନ୍ୟ ସଂହିତା, ମଣିବନ୍ଧ ଗୀତା, ପଦ୍ମକଳ୍ପ, କଳିକଳ୍ପ, ଟୀକା, ଜନ୍ମଗୀତା, ଜନ୍ମଲୀଳା, ବଳରାମ ଦାସଙ୍କ 'ଗୁପ୍ତଗୀତା', ଈଶ୍ୱର ଦାସଙ୍କ 'ଶ୍ରୀଚୈତନ୍ୟ ଭାଗବତ' ଆଦି ଗ୍ରନ୍ଥରେ ପଞ୍ଚସଖାଙ୍କ ପୂର୍ବଜନ୍ମ ବୃତ୍ତାନ୍ତ ଏବଂ ଅଚ୍ୟୁତାନନ୍ଦଙ୍କର ଦ୍ୱାଦଶ ଓ ପଞ୍ଚଦଶ ଜନ୍ମଲୀଳାର ବିବରଣୀ ମଧ୍ୟ ବର୍ଣ୍ଣିତ ହୋଇଛି । ଯୁଗେ ଯୁଗେ ମାୟା ସଂସାରରେ ପତିତ ମାନବ ସମାଜର ଦୁଃଖ ଦୁର୍ଦ୍ଦଶା ଦୂର କରିବା ପାଇଁ ମହାପୁରୁଷ ଅଚ୍ୟୁତାନନ୍ଦ ଜନ୍ମ ଗ୍ରହଣ କରିଥିଲେ ।

**ବାଲ୍ୟଶିକ୍ଷା :** ଅଚ୍ୟୁତାନନ୍ଦ ପାଞ୍ଚବର୍ଷ ବୟସରେ ବିଦ୍ୟାରମ୍ଭ କରିଥିଲେ ମଧ୍ୟ ତାଙ୍କର ଶିକ୍ଷାଲାଭ ପ୍ରତି ଆଦୌ ଆଗ୍ରହ ନଥିଲା । ପାଠ ପଢ଼ାବେଳେ ସେ ଅଧିକାଂଶ ସମୟରେ ଅନ୍ୟମନସ୍କ ରହୁଥିଲେ । ପୁଣି ପାଠପଢ଼ା ଛାଡ଼ି ଏଣେତେଣେ ବୁଲୁଥିବାରୁ ଗୁରୁଜନଙ୍କ ଠାରୁ ସେ ନିର୍ଯ୍ୟାତନା ମଧ୍ୟ ପାଉଥିଲେ । 'ଶୂନ୍ୟ ସଂହିତା'ରେ ଅଛି-

*''ପାଞ୍ଚ ବରଷକୁ ବିଦ୍ୟାରମ୍ଭ କରି ବିଦ୍ୟା ପଠନକୁ ମତେ*
*ତର୍ଜନା କରିଣ ବିଦ୍ୟା ପଢ଼ିବାକୁ ପିତା ବୋଲୁଥାନ୍ତି କେତେ ।''*

ବାସ୍ତବରେ ସମଗ୍ର ସଂସାରରେ ଗୁରୁ ହେବା ପାଇଁ ଯିଏ ଯୋଗ୍ୟ ସିଏବା କେଉଁ ଗୁରୁଙ୍କ ଠାରୁ ଶିକ୍ଷାଲାଭ କରି ସନ୍ତୁଷ୍ଟ ହୋଇ ପାରିଥାନ୍ତେ । ସେ ସର୍ବଦା କାହାକୁ ସତେ ଯେପରି ଖୋଜି ବୁଲୁଥିଲେ । ଧୀରେ ଧୀରେ ତାଙ୍କର ମନ ଭଗବତ ସତ୍ତା ପ୍ରତି ଆକୃଷ୍ଟ ହୋଇ ପଡ଼ିଲା । ଧ୍ୟାନ, ଜପ, ଜ୍ଞାନାଦି ବିଷୟରେ ମନୋନିବେଶ କରିବା ସହିତ ଗୀତା, ଭାଗବତ, ମନ୍ତ୍ର, ଯନ୍ତ୍ର ଅଧ୍ୟୟନ କରି ସେ ସଂପର୍କୀୟ ବିଶେଷ ଜ୍ଞାନ ଲାଭ କରିବାରେ ସେ ଆଗ୍ରହୀ ଥିଲେ ।

ଭଗବତ ପ୍ରାପ୍ତି ଓ ଧର୍ମଚର୍ଚ୍ଚା ପ୍ରତି ପୁତ୍ରର ଏକାନ୍ତ ଆଗ୍ରହ ଦେଖି ପିତା ଦୀନବନ୍ଧୁ ଚିନ୍ତିତ ହୋଇପଡ଼ିଲେ । ତପ୍ରରେ ସେ ପୁତ୍ରକୁ ସଂଗରେ ନେଇ ଯାତ୍ରା କଲେ ଶ୍ରୀକ୍ଷେତ୍ର ଅଭିମୁଖେ । ସେତେବେଳେ ଶ୍ରୀଚୈତନ୍ୟ ଭକ୍ତମାନଙ୍କ ଦ୍ୱାରା ପରିବେଷ୍ଟିତ ହୋଇ ଶ୍ରୀକ୍ଷେତ୍ରରେ ନାମ ସଂକୀର୍ତ୍ତନ କରୁଥାନ୍ତି । ଅଚ୍ୟୁତାନନ୍ଦ ଶ୍ରୀଚୈତନ୍ୟ ମଣ୍ଡଳୀରେ ପ୍ରବେଶ କରିବା ମାତ୍ରେ ମନରେ ତାଙ୍କର ଭକ୍ତିଭାବ କଥା ଜାଣିପାରି ସନାତନ ଗୋସ୍ୱାମୀଙ୍କୁ ଦୀକ୍ଷା ଦେବା ପାଇଁ ନିର୍ଦ୍ଦେଶ ଦେଲେ । ଦୀକ୍ଷା ଗ୍ରହଣ କରିବା ପରେ ଅଚ୍ୟୁତାନନ୍ଦ ମାଳା ତିଳକ ଧାରଣ କରି ହରି ନାମରେ ମଜ୍ଜି ଗଲେ । ଖୋଳ କରତାଳ ଧରି ନୃତ୍ୟ କରିବାକୁ ଲାଗିଲେ । ସେ ମଧୁର କଣ୍ଠରେ ସୁନ୍ଦରଭାବରେ ଗୀତ ଗାଇବା ସହିତ ସଂକୀର୍ତ୍ତନର ତାଳେ ତାଳେ ଭାବ ବିହ୍ୱଳ ହୋଇ ନାଚିପାରୁଥିଲେ ।

ଅଚ୍ୟୁତାନନ୍ଦଙ୍କୁ ଦୀକ୍ଷା ପ୍ରଦାନ ବିଷୟରେ ଦୁଇଜଣ ଗୁରୁଙ୍କ ନାମ ଜଣାପଡ଼େ । ଜଣେ ହେଲେ 'ଶୂନ୍ୟ ସଂହିତା'ରେ ବର୍ଣ୍ଣିତ ଗୁରୁ ଶ୍ରୀ ସନାତନ ଗୋସ୍ୱାମୀ ଓ ଅନ୍ୟ ଜଣେ ହେଲେ 'ଗୁରୁଭକ୍ତି ଗୀତା'ରେ ବର୍ଣ୍ଣିତ ଗୁରୁ ଶ୍ରୀ ଚରଣ ଗୋସାଇଁ ।

*''ଶିରୀ ସନାତନ ସ୍ୱାମୀଙ୍କୁ ଚାହିଁଣ*
*ଆଜ୍ଞା ଦେଲେ ଶଚୀ-ସୁତ*
*ଅଚ୍ୟୁତାନନ୍ଦଙ୍କୁ ତୁମ୍ଭେ ଉପଦେଶ*
*କର ହେ ଯାଇ ତୁରିତ ।''*

*- ଶୂନ୍ୟ ସଂହିତା*

*''ନବକିଶୋରଙ୍କ ଶିଷ୍ୟ ଶିରୀ ଚରଣ ଗୋସାଇଁ*
*ଶିରୀ ଚରଣ ଗୋସାଇଁ ଶିଷ୍ୟ ଅଚ୍ୟୁତ ମୁହିଁ ।''*

*- ଗୁରୁଭକ୍ତି ଗୀତା-୧ମ/୩୦ ଛାନ୍ଦ*

ଶ୍ରୀସନାତନ ଓ ଶ୍ରୀଚରଣ ହେଉଛନ୍ତି ଜଣେ ବ୍ୟକ୍ତି । ସେ ଅଚ୍ୟୁତାନନ୍ଦଙ୍କୁ 'ରାମକୃଷ୍ଣ' ମହାମନ୍ତ୍ରରେ ଦୀକ୍ଷିତ କରାଇଥିଲେ । ଉତ୍କଳୀୟ ଜ୍ଞାନମିଶ୍ରା ଭକ୍ତିର ଭକ୍ତ ବଳରାମ ଦାସ ଓ ଜଗନ୍ନାଥ ଦାସ ମଧ୍ୟ ଦୀକ୍ଷିତ ହୋଇଥିଲେ ଏହି ମନ୍ତ୍ରରେ । ଶିଷ୍ୟ ଅଚ୍ୟୁତାନନ୍ଦଙ୍କୁ ଦୀକ୍ଷା ଦେବା ପରେ ଗୁରୁ ସନାତନ ସ୍ୱାମୀ ଉପଦେଶ ପ୍ରଦାନ କରି କହିଥିଲେ- ''ଜଗନ୍ନାଥ ହିଁ କୃଷ୍ଣ, କୃଷ୍ଣ ହିଁ ଜଗନ୍ନାଥ । ଯେ କୃଷ୍ଣ ସେ ଚୈତନ୍ୟ । ଏଣୁ ଏହାର କୌଣସି ବିଭେଦ କରିବ ନାହିଁ । ଜଗନ୍ନାଥ ନିରାକାର ଓ ଚୈତନ୍ୟ ସାକାର । ଗୋଟିଏ ମାତ୍ର କଥା । ତୁମ୍ଭେ 'ଅ' ଅର୍ଥ ଜଗନ୍ନାଥଙ୍କ ଠାରୁ ଚ୍ୟୁତ ଅର୍ଥାତ୍ ସ୍ଖଳିତ ହେତୁ ତୁମ୍ଭର ନାମ ଅଚ୍ୟୁତ ହୋଇଅଛି ।''

ଅଚ୍ୟୁତାନନ୍ଦ ସନାତନ ଗୋସ୍ୱାମୀଙ୍କ ଠାରୁ ଦୀକ୍ଷା ଗ୍ରହଣ କରି ନିତ୍ୟାନନ୍ଦ ବୈଷ୍ଣବ ସଂପ୍ରଦାୟ ଅନ୍ତର୍ଭୁକ୍ତ ହୋଇଥିଲେ । ପଞ୍ଚସଖାଙ୍କ ଧର୍ମ ସଂପ୍ରଦାୟ ସଂପର୍କରେ 'ଗୁରୁଭକ୍ତି ଗୀତା' ରେ ଅଛି-

*''ଅନନ୍ତ ଶିଶୁ ଯେ ରାମାନନ୍ଦ ବଇଷ୍ଣବ*
*ଯଶୋବନ୍ତ ଦାସ ମାଧ୍ୱାଚାର୍ଯ୍ୟ ବଇଷ୍ଣବ ।*
*ବଳରାମ ଦାସ ବିଷ୍ଣୁଶ୍ୟାମ ଦାସ ହୋଇ*
*ନିତ୍ୟାନନ୍ଦ ବଇଷ୍ଣବ ଅଚ୍ୟୁତ ଅଟଇ ।''*

*- ୧ମ ଖଣ୍ଡ / ୩୨ ଛାନ୍ଦ*

ଦୀକ୍ଷା ଗ୍ରହଣ ପରେ ଅଚ୍ୟୁତାନନ୍ଦ ପିତାଙ୍କ ସହିତ ଶ୍ରୀକ୍ଷେତ୍ରରୁ ତ୍ରିପୁରା ଗ୍ରାମକୁ ଫେରି ଆସିଥିବା କଥା 'ଶୂନ୍ୟ ସଂହିତା'ରେ ଉଲ୍ଲେଖ ଅଛି-

*"ମେଲାଣି ମାଗି ମୋ ପିତା ମୋତେ ଘେନି ତ୍ରିପୁରା ଗ୍ରାମକୁ ଗଲେ*
*ଗୃହ ବେପାରେଣ ମନ ନିବେଶିଣ ଦିବସ ନିଶି ବଞ୍ଚିଲେ ।"*

ସମ୍ଭବତଃ ଅଚ୍ୟୁତାନନ୍ଦ ଶ୍ରୀଚୈତନ୍ୟଙ୍କ ପ୍ରଚାରିତ ଶୁଦ୍ଧାଭକ୍ତି ଧର୍ମ ପ୍ରତି ଆକୃଷ୍ଟ ହୋଇ ନଥିବା କଥା ଏଥିରୁ ଅନୁମାନ କରାଯାଇପାରେ । ଏଠାରେ ତ୍ରିପୁରାକୁ ଇଡ଼ଁଳା, ପିଙ୍ଗଁଳା, ସୁଷୁମ୍ନା ଆଦି ଯୋଗ ସାଧନାର ମାର୍ଗ ରୂପେ ଗ୍ରହଣ କରାଯାଇପାରେ । ତେଣୁ ଅଚ୍ୟୁତାନନ୍ଦ ଏହି ପ୍ରକାର ଯୌଗିକ ସାଧନା ମାର୍ଗର ପଥିକ ହୋଇଥିଲେ ମଧ୍ୟ ରାଧାକୃଷ୍ଣ ରାସଲୀଳା ତତ୍ତ୍ୱକୁ ଶୂନ୍ୟବାଦୀ ଛାଞ୍ଚରେ ଏକ ନୂତନ ରୂପରେଖ ପ୍ରଦାନ କରିଥିଲେ ।

ସ୍ୱଗ୍ରାମକୁ ଫେରିବା ପରେ ଅଚ୍ୟୁତନନ୍ଦ ବୈଷ୍ଣବ ଧର୍ମ ପ୍ରଚାରରେ ମନୋନିବେଶ କଲେ । ଜ୍ଞାନମାର୍ଗୀୟ ଶୂନ୍ୟବାଦୀ ସାଧକ ଭାବରେ ସେ ଜଗନ୍ନାଥଙ୍କୁ ଆରାଧନା କଲେ ଓ ସେଥି ସହିତ ରାଧାକୃଷ୍ଣଙ୍କ ରାସଲୀଳା ପ୍ରଚାରରେ ଅଧିକ ଗୁରୁତ୍ୱ ଦେଲେ । ଏହି ରାଧାକୃଷ୍ଣ ତାଙ୍କ ପାଇଁ ଜୀବ-ପରମ ଥିଲେ ମଧ୍ୟ ରାସଲୀଳାରେ ସେ ରାଧାକୃଷ୍ଣ ପ୍ରେମଲୀଳାକୁ ଜୀବନ୍ତ ଭାବରେ ପରିବେଷଣ କରି ଲୋକଙ୍କୁ ଅଭିଭୂତ କରି ଦେଉଥିଲେ । ଗୋପାଳ ବାଳକମାନେ ବହୁସଂଖ୍ୟାରେ ତାଙ୍କ ରାସଲୀଳା ମଣ୍ଡଳୀରେ ଉତ୍ସାହର ସହିତ ଯୋଗ ଦେଇଥିଲେ । ଅଚ୍ୟୁତାନନ୍ଦ ଥିଲେ ଦିବ୍ୟ ସୁନ୍ଦର ପୁରୁଷ । ସେ ଲଳିତ କଣ୍ଠରେ ସୁମଧୁର ଗୀତ ଗାଇ ଗୋପାଳମାନଙ୍କୁ ନେଇ ରାସନୃତ୍ୟ ପରିବେଷଣ କରୁଥିଲେ । ତାଙ୍କର ଖ୍ୟାତି ଏପରି ବଢ଼ିଗଲା ଯେ, ଅଗଣିତ ଭକ୍ତ ତାଙ୍କ ଠାରୁ ଧର୍ମ ପ୍ରବଚନ ଶୁଣିବା ପାଇଁ ପ୍ରତିଦିନ ଧାଇଁଲେ । ସୁବିଧା ଦୃଷ୍ଟିରୁ ସେ ନିଜ ଗ୍ରାମ ତିଳକଣା ନିକଟବର୍ତ୍ତୀ ନେମାଳ ଠାରେ ଆଶ୍ରମ ସ୍ଥାପନ କରି ସାଧନା କଲେ ।

**ପରିବାର :** ପଞ୍ଚସଖାଙ୍କ ମଧ୍ୟରୁ ଅନ୍ୟତମ ସଖା ଯଶୋବନ୍ତଙ୍କ ସହିତ ସାକ୍ଷାତ କରିବା ପାଇଁ ଥରେ ଅଚ୍ୟୁତାନନ୍ଦ ଅନୁଗୁଳ ଜିଲ୍ଲାସ୍ଥିତ ନନ୍ଦି ଗ୍ରାମକୁ ଯାଇଥିଲେ । ସେଠାରେ ସେ ସଙ୍ଗରେ ନେଇଥିବା ଗୋପାଳମାନଙ୍କ ସହିତ ସାତଦିନ ବ୍ୟାପି ରାସଲୀଳା ପରିବେଷଣ କରିଥିଲେ । ଏକଥା ଅନୁଗୁଳ ଗଡ଼ର ରାଜା ରଘୁରାମ ଶୁଣିବା ପରେ ସେଠାରେ ପହଞ୍ଚିଲେ ଓ ରାସଲୀଳା ଦେଖି ମୁଗ୍ଧ ହେଲେ । ଅଚ୍ୟୁତାନନ୍ଦଙ୍କ ରାସ କୀର୍ତ୍ତନ ଦ୍ୱାରା ତାଙ୍କର କନ୍ୟା ଚମ୍ପାବତୀ ଏପରି ପ୍ରଭାବିତ ହେଲେ ଯେ ସେ ତାଙ୍କୁ ବିବାହ କରିବା ପାଇଁ ଇଚ୍ଛା ପ୍ରକାଶ କଲେ । ଝିଅର ଏପରି ପ୍ରସ୍ତାବକୁ ରଘୁରାମ ଗ୍ରହଣ କଲେ ନାହିଁ । ତା'ପରେ ଚମ୍ପାବତୀ ପିତାଙ୍କ ନିକଟରେ ନିଜର ପୂର୍ବଜନ୍ମ ବୃତ୍ତାନ୍ତ ପ୍ରକାଶ କଲେ । ଦ୍ୱାପର ଯୁଗରେ

ଅଚ୍ୟୁତାନନ୍ଦ ସୁଦାମ ଓ ଚମ୍ପାବତୀ ଶ୍ୟାମା ନାମକ ଗୋପୀ ରୂପରେ ଜନ୍ମ ଗ୍ରହଣ କରିଥିଲେ । ଶ୍ରୀକୃଷ୍ଣ ସେମାନଙ୍କୁ ବର ପ୍ରଦାନ କରିଥିଲେ ଯେ, କଳିଯୁଗରେ ସୁଦାମ ହେବେ ଅଚ୍ୟୁତାନନ୍ଦ ଓ ଶ୍ୟାମା ଗୋପୀ ତାଙ୍କର ସ୍ତ୍ରୀ ଚମ୍ପାବତୀ ହୋଇ ଜନ୍ମ ହେବେ ।

*''ବୋଇଲେ ଗୋପୀ ତୁ ଯେମନ୍ତ କର । ସୁଦାମ ଅଚ୍ୟୁତ କଳି ଯୁଗର ।*
*ଅଚ୍ୟୁତ ସ୍ତିରୀ ତୁ କଳିରେ ହେବୁ । ଅଚ୍ୟୁତ ସେବିଣ ମୋତେ ଭଜିବୁ ।''*

*-ବର୍ଣ୍ଣଟୀକା ପୁରାଣ*

ଚମ୍ପାବତୀ ନିଜର ମାତାଙ୍କ ସହିତ ଯେତେବେଳେ ଯଶୋବନ୍ତଙ୍କ ମଠକୁ ଯାଇଥିଲେ ସେତେବେଳେ ତାଙ୍କର ଅଚ୍ୟୁତାନନ୍ଦଙ୍କ ସହିତ ପରିଣୟ ହେବ ବୋଲି ଯଶୋବନ୍ତ ମଧ୍ୟ ଆଶୀର୍ବାଦ କରିଥିଲେ । ଏସବୁ କଥା ଶୁଣିବା ମାତ୍ରେ ରାଜା ରାଣୀଙ୍କୁ ଜଣାଇଲେ ଓ ଏ ବିବାହ ପ୍ରସ୍ତାବରେ ରାଣୀ ଖୁସି ହୋଇ ନିଜର ସମ୍ମତି ଦେଲେ । ରାଜାରାଣୀ ଦୁହେଁ ମଠରେ ଉପସ୍ଥିତ ହୋଇ ଅଚ୍ୟୁତାନନ୍ଦଙ୍କୁ କନ୍ୟା ଗ୍ରହଣ କରିବା ପାଇଁ ଅନୁରୋଧ କଲେ । ଏପରି ପ୍ରସ୍ତାବରେ ଅଚ୍ୟୁତାନନ୍ଦ ଆଶ୍ଚର୍ଯ୍ୟ ହେବା ସଙ୍ଗେ ସଙ୍ଗେ ବିଚଳିତ ହୋଇ ପଡ଼ିଲେ ଓ ଧ୍ୟାନରେ ଶ୍ରୀକୃଷ୍ଣଙ୍କୁ ସ୍ମରଣ କରି ତାଙ୍କର ପରାମର୍ଶ ଲୋଡ଼ିଲେ । ଶ୍ରୀକୃଷ୍ଣଙ୍କ ଠାରୁ ଆଦେଶ ପାଇବା ପରେ ଅଚ୍ୟୁତାନନ୍ଦ ଏହି ପ୍ରସ୍ତାବକୁ ସ୍ୱୀକାର କଲେ ଓ ପରବର୍ତ୍ତୀ ସମୟରେ ଚମ୍ପାବତୀଙ୍କୁ ବିବାହ କରି ନେମାଳରେ ବସବାସ କଲେ । 'ବର୍ଣ୍ଣଟୀକା ପୁରାଣ' ଗ୍ରନ୍ଥରେ ଅଚ୍ୟୁତାନନ୍ଦ ଏହି ପ୍ରସଙ୍ଗ ବର୍ଣ୍ଣନା କରିଛନ୍ତି । ସେ ନିଜେ ସଂସାରୀ ହୋଇଥିବା କଥା ମଧ୍ୟ ସ୍ୱୀକାର କରି କହିଛନ୍ତି-

*''ଦାରା ଆବୋରି ମୁଁ ରହିଲି । ଦୀନ ଅଚ୍ୟୁତ ଭବେ ଭୁଲି ।''*

*- ଗୁରୁଭକ୍ତି ଗୀତା-୧/୫ ଛାନ୍ଦ*

ପରବର୍ତ୍ତୀ ସମୟରେ ତାଙ୍କଠାରୁ ଯେଉଁ ପୁତ୍ର ସନ୍ତାନ ଜନ୍ମଲାଭ କରିଥିଲେ ତାଙ୍କର ନାମ ଥିଲା ବ୍ରଜ ଗଦାଧର ।

**ନିବାସ ସ୍ଥାନ :** ଦୀକ୍ଷା ଗ୍ରହଣ ପରେ ବୈଷ୍ଣବ ହୋଇ ସେ ନିଜର୍ କେତେକ ପ୍ରିୟ ଶିଷ୍ୟ ଗହଣରେ ତୀର୍ଥାଟନ କରିଥିଲେ । ଏପରି ଅବସ୍ଥାରେ ସେ ରଣପୁର ସାମନ୍ତ ପଦ୍ମନାଭ ନରେନ୍ଦ୍ରଙ୍କ ଆଶ୍ରିତ ହୋଇ ମଝିଖଣ୍ଡ ଗ୍ରାମରେ କିଛିକାଳ ଅବସ୍ଥାନ କରିଥିଲେ । ଏହି ସମୟରେ ସେ ଲେଖିଥିଲେ ଲୋକପ୍ରିୟ ପ୍ରସିଦ୍ଧ ଗ୍ରନ୍ଥ 'ହରିବଂଶ' ଓ 'ଅନନ୍ତ ଗୋଇ' । ସେ ନିଜେ 'ହରିବଂଶ' ରେ ବର୍ଣ୍ଣନା କରିଛନ୍ତି ଯେ,

*''ରଣପୁର ମଧ୍ୟଗ୍ରାମେ ବାସ କରିଥାଇ*
*ପଦ୍ମନାଭ ନରେନ୍ଦ୍ର ପୋଷନ୍ତି ଅନ୍ନବସ୍ତ୍ର ଦେଇ ।''*

ପୁଣି 'ଅନନ୍ତ ଗୋଇ'ରେ ଅଛି-

*"ମୁଁ ଥିବି ମଣିନାଗକୁ ଯୋଜନେ ଅନ୍ତର ।"*

ଏପରି ଭାବରେ ସେ ପଦ୍ମନାଭ ନରେନ୍ଦ୍ରଙ୍କ ପୃଷ୍ଠପୋଷକତା ଲାଭ କରି ନାନା ଗ୍ରନ୍ଥ ରଚନା କରିବା ସଙ୍ଗେସଙ୍ଗେ ବୈଷ୍ଣବ ଧର୍ମ ତତ୍ତ୍ୱ ପ୍ରଚାରରେ ବେଶ କିଛି ବର୍ଷ ନିଜକୁ ନିୟୋଜିତ କରିଥିଲେ । ରଣପୁର ସାମନ୍ତ ପଦ୍ମନାଭ ନରେନ୍ଦ୍ରଙ୍କର କୌଣସି ସନ୍ତାନ ସନ୍ତତି ନଥିଲା । ନିଃସନ୍ତାନ ଯୋଗୁଁ ସେ ବଡ଼ ଦୁଃଖରେ କାଳାତିପାତ କରୁଥିଲେ । ପରମ ବୈଷ୍ଣବ ଅଚ୍ୟୁତାନନ୍ଦଙ୍କୁ ପାଇ ସେ ଖୁସିରେ ତାଙ୍କ ସେବାରେ ନିଜକୁ ନିୟୋଜିତ କରିଥିଲେ ଓ ପ୍ରତ୍ୟହ ଅଚ୍ୟୁତାନନ୍ଦଙ୍କ ରଚିତ 'ହରିବଂଶ' ଶ୍ରବଣ କଲେ । ପବିତ୍ର 'ହରିବଂଶ' ଶ୍ରବଣ କରିବା ଦ୍ୱାରା ତାଙ୍କର ପୁତ୍ର ସନ୍ତାନ ଲାଭ ହୋଇଥିଲା । ପରବର୍ତ୍ତୀ କାଳରେ ନିଃସନ୍ତାନ ବ୍ୟକ୍ତିମାନେ ହରିବଂଶ ଶ୍ରବଣ କଲେ ସନ୍ତାନ ଲାଭ କରି ପାରିବେ ବୋଲି ଓଡ଼ିଶାରେ ଏକ ପରମ୍ପରା ପ୍ରଚଳିତ ହେଲା ।

ରଣପୁରରେ କିଛି ବର୍ଷ ରହିବାପରେ ସେ ଫେରିଆସିଲେ ନେମାଳ ଓ ଏହି ନେମାଳ ହିଁ ହେଲା ତାଙ୍କର ପ୍ରଧାନ ପୀଠ । ଏଠାରେ ଆଶ୍ରମରେ ରହି ସେ ହଜାର ହଜାର ଭକ୍ତଙ୍କୁ ବୈଷ୍ଣବ ଧର୍ମର ଗୂଢ଼ ତତ୍ତ୍ୱ ବୁଝାଇଲେ । ପାପତାପ ସଂସାରରୁ ମୁକ୍ତି ପାଇବା ପାଇଁ ଭକ୍ତମାନେ ପ୍ରତିଦିନ ଏଠାରେ ରୁଣ୍ଡ ହେଉଥିଲେ । ସଂକ୍ରାନ୍ତି ଓ ଅନ୍ୟାନ୍ୟ ପର୍ବଦିନ ମାନଙ୍କରେ ଆଶ୍ରମ ଭକ୍ତମାନଙ୍କ କୋଳାହଳରେ ପୂରି ଉଠୁଥିଲା । ସମସ୍ତଙ୍କ ପାଇଁ ନେମାଳ ଥିଲା ପବିତ୍ର ତଥା ମୁକ୍ତିର ପ୍ରଧାନ ପୀଠ । 'ଗୁରୁଭକ୍ତି ଗୀତା'ରେ ନେମାଳର ମାହାତ୍ମ୍ୟ ବର୍ଣ୍ଣିତ ହୋଇଛି । ତଦନୁଯାୟୀ ମହାଭାରତ ଯୁଦ୍ଧ ଶେଷରେ ଶ୍ରୀକୃଷ୍ଣ ନେମାଳ ଠାରେ ପ୍ରବେଶ କରିଥିଲେ । ତତ୍ପରେ ତାଙ୍କର ଦିବ୍ୟ ଶରୀର ଏଠାରେ ରୂପାନ୍ତରିତ ହୋଇ ନୀଳାଚଳ ଧାମରେ ଜଗନ୍ନାଥଙ୍କ ବିଗ୍ରହ ରୂପରେ ପୂଜା ପାଇଲା । ସେଥିପାଇଁ ଏହି ନେମାଳ ବା ପଦ୍ମବନ ବା କାନ୍ୟେଶ୍ୱରୀ ବନ ହେଉଛି ପ୍ରଭୁଙ୍କର ମୂଳ ସ୍ଥାନ ।

*"ପଦ୍ମବନ ନେମାଳ ଆମ୍ଭର ସେହୁ ସ୍ଥାନ*
*ଭାରତ ସାରି ଶ୍ରୀକୃଷ୍ଣ ସେ ସ୍ଥାନେ ଗମନ ।*
*ସେ ଥାନେ ଶ୍ରୀକୃଷ୍ଣ ବସି ନୀଳାଚଳ ଗଲେ*
*ଅଠାଣି ଭୁବନେ ଯାଇଁ ଅନ୍ତର ହୋଇଲେ ।*
*ଏଣୁକରି ସେ ସ୍ଥାନରେ ଆମ୍ଭର ରହଣି*
*ରାମଚନ୍ଦ୍ର ଉଚିତ ଉତ୍ତର ଦିଗେ ପୁଣି ।"*

*- ଗୁରୁଭକ୍ତି ଗୀତା- ୨/୧୬ ପଟଳ*

'ଶୂନ୍ୟ ସଂହିତା ଚଉଷଠି ଟୀକା'ରେ ନେମାଳ ଶବ୍ଦ 'ନବମାଳ' ଶବ୍ଦରୁ ଉତ୍ପତ୍ତିଲାଭ କରିଥିବା କଥା ବର୍ଣ୍ଣିତ ହୋଇଛି ।

ଏହି ପଦ୍ମବନ କ୍ଷେତ୍ର ବା ନେମାଳ ଥିଲା ତାଙ୍କର ମୁଖ୍ୟ ସାଧନା ପୀଠ । ଅଚ୍ୟୁତାନନ୍ଦଙ୍କ ରଚିତ ବଟ ସଂହିତା, କ୍ଷେତ୍ର ମାହାତ୍ମ୍ୟ, ପଦ୍ମବନ ପରିଚୟ, ବଟ ପରିକ୍ରମା, ଗୁରୁଭକ୍ତି ଗୀତା, ଶୂନ୍ୟ ସଂହିତା, ଚୌରାଶୀ ଯନ୍ତ୍ର ସମେତ ଅନ୍ୟାନ୍ୟ ବହୁ ଗ୍ରନ୍ଥରେ ନେମାଳ ପୀଠର ମାହାତ୍ମ୍ୟ ବର୍ଣ୍ଣିତ ହୋଇଛି ।

*"ସୁଆଙ୍ଗ ବିଷେ ଚିତ୍ରୋତ୍ପଳା ସ୍ଥାନ*
*ନେମାଳ ଗ୍ରାମରେ ମୋର ଆଶ୍ରମ ।*

*-ବିଚିତ୍ର ଯନ୍ତ୍ର*

*"ଚିତ୍ରୋତ୍ପଳା କୂଳେ ନେମାଳପୁର*
*ଅଚ୍ୟୁତି ଦାସର ଅଟଇ ଘର ।*

*- ବିରାଟ ଯନ୍ତ୍ର*

ନେମାଳ ପୀଠର ବକୁଳ ମୂଳେ ବସି ସେ ବହୁ ଗ୍ରନ୍ଥ ରଚନା କରିଥିବା କଥା ଜଣାଯାଏ । ଏପରିକି ପଞ୍ଚସଖାମାନେ ବିଭିନ୍ନ ସମୟରେ ଏଠାକୁ ଆସି ତାଙ୍କ ସହିତ ଧର୍ମତତ୍ତ୍ୱ ଆଲୋଚନା କରୁଥିଲେ ଏବଂ ସମୟ ସୁବିଧା ଦେଖି ଗ୍ରନ୍ଥ ମଧ ରଚନା କରୁଥିଲେ । ଏଠାରୁ ବୈଷ୍ଣବ ଧର୍ମର ପବିତ୍ର ନିର୍ଝରିଣୀ ବହି ସମଗ୍ର ଉତ୍କଳ ପ୍ରଦେଶକୁ ଭକ୍ତିଧର୍ମରେ ପ୍ଲାବିତ କରି ଦେଉଥିଲା । ସେ ସମୟରେ ନେମାଳ ଥିଲା ଧର୍ମ ଓ ସଂସ୍କୃତିର କେନ୍ଦ୍ରସ୍ଥଳ । ଏହିଠାରେ ତାଙ୍କର ଏକମାତ୍ର ପୁତ୍ର 'ବ୍ରଜ ଗଦାଧର' ଯୋଗସିଦ୍ଧ ପୁରୁଷ ଭାବରେ ସାଧନାରେ ରତ ଥିଲେ । ଦୁଇଜଣ ଯୋଗୀ ଏକତ୍ର ରହିବା ଉଚିତ ନୁହେଁ ବୋଲି ସେ ସ୍ଥାନ ଛାଡ଼ି ଅନ୍ୟତ୍ର ଚାଲିଯିବା ପାଇଁ ଅଚ୍ୟୁତାନନ୍ଦ ତାଙ୍କୁ ପରାମର୍ଶ ଦେଇଥିଲେ । ତେଣୁ 'ବ୍ରଜ ଗଦାଧର' ନିକଟସ୍ଥ 'କୁଦା ନଗରୀ' ସ୍ଥାନରେ ମଠ ସ୍ଥାପନ କରି ରହିଲେ । ଏବେ ମଧ ସେଠାରେ ଗଦାଧରଙ୍କ ଗାଦି ରହିଛି ।

ଅଚ୍ୟୁତାନନ୍ଦ ଗୋପାଳ ଜାତିର ପ୍ରଧାନ ଗୁରୁ ଓ ଉତ୍କଳରେ ରାସଲୀଳାର ସ୍ରଷ୍ଟା ଥିଲେ । ଗୋପାଳମାନେ ବହୁ ସଂଖ୍ୟାରେ ତାଙ୍କର ଶିଷ୍ୟତ୍ୱ ଗ୍ରହଣ କରି ରାସ ମଣ୍ଡଳୀରେ ଯୋଗ ଦେଉଥିଲେ । 'ଶୂନ୍ୟ ସଂହିତା' ଥିଲା ବେଦ ପରି ଗୋପାଳ ଜାତିର ମୁଖ୍ୟ ଧର୍ମଶାସ୍ତ୍ର । ଅଚ୍ୟୁତାନନ୍ଦ ନିଜେ ସ୍ୱୀକାର କରିଛନ୍ତି ଯେ,-

*"ଅଚ୍ୟୁତ ଦାସ ମୁଁ ଗୋପାଳ - ଭାଇ*
*ଗୋପାଳ କୁଳକୁ କଳି ପରଇ ।"*

*- ଚୌରାଶି ଯନ୍ତ୍ର*

ଗୋପାଳମାନଙ୍କର ମୁକ୍ତି ପାଇଁ ସେ ଜନ୍ମଗ୍ରହଣ କରିଥିଲେ ବୋଲି 'ଗୁରୁଭକ୍ତି ଗୀତା'ରେ ବର୍ଣ୍ଣନା କରିଛନ୍ତି । ବୈଷ୍ଣବ ଅଚ୍ୟୁତାନନ୍ଦ ଶିଷ୍ୟ ମଣ୍ଡଳୀ ପରିବେଷ୍ଟିତ ହୋଇ ଭାରତର ବିଭିନ୍ନ ତୀର୍ଥସ୍ଥାନ ପର୍ଯ୍ୟଟନ କରିଥିବାର ଜଣାଯାଏ । ସେ ଯେଉଁଆଡ଼େ ଯାଉଥିଲେ ସେଠାରେ ରାଧାକୃଷ୍ଣ ତତ୍ତ୍ୱ ଆଧାରିତ ରାସଲୀଳା ପରିବେଷଣ କରୁଥିଲେ । ସଂକୀର୍ତ୍ତନ ଦ୍ୱାରା ସେ ଭକ୍ତିରସରେ ଅଫୁରନ୍ତ ପ୍ରବାହ ସମସ୍ତଙ୍କ ହୃଦୟରେ ସୃଷ୍ଟି କରୁଥିଲେ । ସେ ରାମେଶ୍ୱର, ଚିତ୍ରକୂଟ, ଅଯୋଧ୍ୟା, ଦ୍ୱାରକା, କାଶୀ, ବାରାଣସୀ, ଗୋପ, ମଥୁରା ଆଦି ତୀର୍ଥ ଭ୍ରମଣ କରିଥିବା କଥା 'ବରଣ ଚରିତ ଗୀତା' ଓ 'ଶୂନ୍ୟ ସଂହିତା' ଗ୍ରନ୍ଥରେ ବର୍ଣ୍ଣିତ ହୋଇଛି । ସେ ବୃନ୍ଦାବନରେ 'ବେନି ଚତୁର୍ମାସ୍ୟା' ରହି ଗଙ୍ଗା, ଗୌତମୀ ତୀର୍ଥ ଭ୍ରମଣ କରିବା ପରେ ନୀଳଗିରି ଫେରିଆସି ରଥ ଉପରେ ଚତୁର୍ଦ୍ଧାମୂର୍ତ୍ତିଙ୍କୁ ଦର୍ଶନ କରିଥିଲେ ।

ଓଡ଼ିଶାର ବିଭିନ୍ନ ସ୍ଥାନରେ ସେ ଗୋଷ୍ଠୀଘର ଓ ଗାଦି ସ୍ଥାପନା କରିଥିଲେ । ସେଥିମଧ୍ୟରୁ ନେମାଳ, ସାଇଲୋ, ବଡ଼କୂଳ, ସାଇବିରିକୁଣ୍ଡ, ବଳଦା ଓ ହରିହରପୁର ପ୍ରଗଣାର ସାହାଜପୁର ପ୍ରଭୃତି ପ୍ରଧାନ । ଏହିସବୁ ଗାଦି ତଥା ଗୋଷ୍ଠୀଘର ପରିଚାଳନା ଦାୟିତ୍ୱରେ ଅଚ୍ୟୁତାନନ୍ଦଙ୍କର ଶିଷ୍ୟମାନେ ଥିଲେ । ନେମାଳ ଗାଦି ଦ୍ୱାରା ସ୍ୱୀକୃତ ବିଧି ଅନୁଯାୟୀ ଏସବୁ ସ୍ଥାନରେ ପୂଜାପାଠ, ଧର୍ମଚର୍ଚ୍ଚା ହେଉଥିଲା । ସମୟ ସୁବିଧା ଦେଖି ଗୁରୁ ଅଚ୍ୟୁତାନନ୍ଦ ଏସବୁ ପୀଠରେ ଧର୍ମ ପ୍ରବଚନ ପ୍ରଦାନ କରୁଥିଲେ । 'ଶୂନ୍ୟ ସଂହିତା'ରେ ଅଛି ଯେ, ଅଚ୍ୟୁତାନନ୍ଦ ପ୍ରାଚୀ ନିକଟବର୍ତ୍ତୀ ଋଷି ଆଶ୍ରମରେ ଗୋରେଖନାଥ, ବୀରସିଂହ ବାଲିଗାଁ ଦାସ ଓ ସିଦ୍ଧ ବାରଙ୍ଗଙ୍କୁ ସାକ୍ଷାତ କରିଥିଲେ । ଯେତେଦୂର ମନେହୁଏ ଏହା 'ଶୂନ୍ୟ ସଂହିତା'ର ପ୍ରକ୍ଷିପ୍ତାଂଶ । କାରଣ ଏମାନେ ଏକ କାଳର ଚରିତ୍ର ନୁହନ୍ତି ।

**ପଞ୍ଚସଖା ଓ ଅଚ୍ୟୁତାନନ୍ଦ :** ଓଡ଼ିଶାରେ ଅଚ୍ୟୁତାନନ୍ଦ ଓ ଅନ୍ୟ ଚାରିଜଣ ମହାପୁରୁଷ ଅର୍ଥାତ ବଳରାମ, ଜଗନ୍ନାଥ, ଯଶୋବନ୍ତ ଓ ଅନନ୍ତ ସଖା ଭାବରେ ପରିଚିତ । ସେମାନେ କେତେକ ସ୍ଥାନରେ ଏକତ୍ରିତ ହୋଇ ଶାସ୍ତ୍ର ଆଲୋଚନା କରିଥିବା କଥା ଲୋକ ମୁଖରେ ପ୍ରଚଳିତ । କେତେକ ଗ୍ରନ୍ଥରେ ସେମାନଙ୍କ ପରସ୍ପର ସଂପର୍କ ବିଷୟ ମଧ୍ୟ ବର୍ଣ୍ଣିତ ହୋଇଛି । ସୁଦର୍ଶନ ଦାସଙ୍କ 'ଚୌରାଶୀ ଆଜ୍ଞା'ରେ ଏକ ଚମତ୍କାର କାହାଣୀ ସ୍ଥାନ ପାଇଛି । ତଦନୁଯାୟୀ ଶ୍ରୀଚୈତନ୍ୟଙ୍କ ଆଦେଶରେ ଜଗନ୍ନାଥ ଦାସ ଗୋଟିଏ ପଣସ ମଞ୍ଜି ପୋତି

ସଙ୍ଗେ ସଙ୍ଗେ, ବାକୁଳ ବୃକ୍ଷରେ ପରିଣତ କଲେ । ତତ୍ପରେ ବଳରାମ ଦାସ ବୃକ୍ଷରେ ଡ଼ାଳପତ୍ର, ଯଶୋବନ୍ତ ବଉଳ ଓ ଫଳ, ଅଚ୍ୟୁତାନନ୍ଦ ଫଳ ପକ୍ୱ ଓ ଶିଶୁ ଅନନ୍ତ ବୃକ୍ଷରୁ ଫଳ ତୋଳିବା କାର୍ଯ୍ୟ ସମାପନ କରିଥିଲେ । ପଞ୍ଚସଖାଙ୍କ ସାଧନା ମାର୍ଗ, ମନ୍ତ୍ର, ସଂପ୍ରଦାୟ ଓ କର୍ମ ପ୍ରବଣତା ଉଲ୍ଲେଖ କଲାବେଳେ ବିଭିନ୍ନ ଗ୍ରନ୍ଥରେ ସେମାନଙ୍କୁ ପରସ୍ପର ସହିତ ସଂପୃକ୍ତ କରାଯାଇଛି । ମହାରାଜା ପ୍ରତାପରୁଦ୍ରଦେବ ଓ ଶ୍ରୀଚୈତନ୍ୟଙ୍କ ସହିତ ବିଭିନ୍ନ କାର୍ଯ୍ୟୋପଲକ୍ଷେ ସେମାନଙ୍କର ସାକ୍ଷାତ ତଥା ସେମାନଙ୍କ ମଧ୍ୟରେ ନିବିଡ଼ ସଂପର୍କ ଥିବା କଥା ଜଣାଯାଏ । 'ଶୂନ୍ୟ ସଂହିତା' ଅନୁଯାୟୀ ପଞ୍ଚସଖା ଓ ଶ୍ରୀଚୈତନ୍ୟ ହେଉଛନ୍ତି ସ୍ୱୟଂ ଜଗନ୍ନାଥଙ୍କର ଅଂଶ ବିଶେଷ । ପଞ୍ଚସଖା ଭଗବାନଙ୍କର ପଞ୍ଚପ୍ରାଣ ସଦୃଶ । 'ଗୁରୁଭକ୍ତି ଗୀତା'ରେ ପଞ୍ଚସଖା ପ୍ରସଙ୍ଗ ବହୁଳ ଭାବରେ ସ୍ଥାନ ପାଇଛି । ଶ୍ରୀଚୈତନ୍ୟଙ୍କ ନିର୍ଦ୍ଦେଶରେ ସନାତନ ଗୋସାଇଁ ଅଚ୍ୟୁତାନନ୍ଦଙ୍କୁ ଦୀକ୍ଷା ପ୍ରଦାନ କରିଥିଲେ । ପୁଣି ପ୍ରତାପରୁଦ୍ରଙ୍କ ନିର୍ଦ୍ଦେଶରେ ସେ ବାଙ୍କୀ ମୁହାଁଣଠାରେ ଶୂନ୍ୟ ଗୁମ୍ଫାରେ ଶୂନ୍ୟ ଭଜନ କରି ସମସ୍ତଙ୍କୁ ଚକିତ କରି ଦେଇଥିବା କଥା, 'ଶୂନ୍ୟ ସଂହିତା'ରେ ଉଲ୍ଲେଖ ଅଛି । ଅଚ୍ୟୁତାନନ୍ଦ ଭାଗବତକାର ଜଗନ୍ନାଥ ଦାସଙ୍କୁ ରାହାସର ଗୁରୁ ରୂପେ ସ୍ୱୀକାର କରି ଝଙ୍କଡ଼ରେ ରାସ କୀର୍ତ୍ତନ କରିବା ପାଇଁ ବରଣ କରିଥିଲେ । 'ବରଣ ଚରିତ ଗୀତା'ରେ ଅଛି -

*''ଗୋପାଳ ବାଉଟି ଶିଷ୍ୟ ଜଗନ୍ନାଥ ଦାସ*
*ଭାଗବତ କହି ଯେ୍ୟାତି ଚହୁଁ ପରକାଶ*
*ଅତୀଅ ସୁରଂଯାନୀ ଗୁରୁ ଭକତଙ୍କ ଶୀର୍ଷ*
*ଜଗନ୍ନାଥ ଦାସ ଶିଷ୍ୟ ମୁଁ ଅଚ୍ୟୁତ ଦାସ ।''*

ଅନ୍ୟ ଏକ ପ୍ରାମାଣିକ ତଥ୍ୟମୂଳକ ଗ୍ରନ୍ଥ 'ମାଦଳା ପାଞ୍ଜି'ରେ ପଞ୍ଚସଖା ପ୍ରସଙ୍ଗ ସ୍ପଷ୍ଟ ଭାବରେ ଉଲ୍ଲେଖ ହୋଇଛି । ଏଥିରେ ଅଛି- ''ସେ ସମୟେ ଅଚ୍ୟୁତାନନ୍ଦ ଗୋସାଇଁ ଅନନ୍ତ ଶିଶୁ ଗୋସାଇଁ ଥିଲେ । ଅତିବଡ଼ି ଜଗନ୍ନାଥ ଗୋସାଇଁ ଥିଲେ । xxx । ଏମନ୍ତେ ବଳରାମ ଦାସ ଭଜନେ ଗଲେ । ଗହଣେ ଲଙ୍କା ଭଉଁରୀ ଗୋସାଇଁ ଭଜନେ କ୍ଷମା କଲାକ ଲଙ୍କା ଯଶୋବନ୍ତ ଦାସ ଭଜନେ ଦେଲେ ।'' 'ମଣିବରଣ ଗୀତା'ରେ ପଞ୍ଚସଖା ତ୍ରିପୁର ସୁନ୍ଦରୀ ଜଗଦମ୍ବା କାମାକ୍ଷାଙ୍କୁ ଦର୍ଶନ କରିବା ପାଇଁ ଯାଇଥିଲେ । କଲିକତାରେ କାଳୀଙ୍କୁ ଦର୍ଶନ କରିବା ପରେ ସେମାନେ କାମାକ୍ଷା ପୀଠରେ ପହଞ୍ଚି ଥିବା କଥା ଏଥିରେ ବର୍ଣ୍ଣିତ ହୋଇଛି ।

ପଞ୍ଚସଖାଙ୍କ ପୂର୍ବଜନ୍ମ ବୃତ୍ତାନ୍ତ, ସାଧନା ମାର୍ଗ, ମନ୍ତ୍ର, ଭଗବାନଙ୍କ ନିର୍ଦ୍ଦେଶ, ଶ୍ରୀଚୈତନ୍ୟ, ପ୍ରତାପରୁଦ୍ର ଓ ଅନ୍ୟାନ୍ୟ ଭକ୍ତମାନଙ୍କ ସହିତ ସେମାନଙ୍କର ସଂପର୍କ ପ୍ରଭୃତି ପ୍ରସଙ୍ଗ ପଞ୍ଚସଖା ଏବଂ ଅନ୍ୟ କବିଙ୍କ ରଚନାରେ ବହୁଳ ଭାବରେ ବର୍ଣ୍ଣିତ ହୋଇଛି । ସେସବୁ ଗ୍ରନ୍ଥରେ ସେମାନଙ୍କ ମଧ୍ୟରେ ପରସ୍ପର ନିବିଡ଼ ସଂପର୍କ ଥିବା କଥା ସ୍ପଷ୍ଟ ହୋଇଯାଇଛି । ଏପରି ଗ୍ରନ୍ଥମାନଙ୍କ ମଧ୍ୟରେ ଉଦୟ କାହାଣୀ, ଭକ୍ତି ଚନ୍ଦ୍ରିକା, ଅନନ୍ତ ଲୀଳା, ଚଉଷଠି ଗୁପ୍ତ ଭକ୍ତ ମାଳିକା, ଆଦିଲୀଳା ଗୀତା, ଦଶପଟଳ ମାଳିକା ଓ ମଣିବନ୍ଧ ଗୀତା ପ୍ରଭୃତି ପ୍ରଧାନ । ଆଲୋଚକ ଡ଼ଃ ରତ୍ନାକର ଚଇନିଙ୍କ ମତରେ "ସେ ବହୁବାର ଝଙ୍କଡ଼ରେ ଏବଂ ତାଙ୍କ ସାଧନା ସ୍ଥଳ ନେମାଳରେ ଏହି ପଞ୍ଚସଖାଙ୍କୁ ଏକାଠି କରିଥିଲେ । xxx । ସେମାନେ କେତେଥର ନେମାଳ ଆସି ସେହିଠାରେ ଯୌଥ ସାହିତ୍ୟ ସାଧନରେ ବ୍ରତୀ ହୋଇଥିବାର ପ୍ରମାଣ ଦିଏ 'ପଦ୍ମବନ ରାସ'। (ଅଚ୍ୟୁତାନନ୍ଦ ରଚନାବଳୀ, ରାହାସ ଖଣ୍ଡ-ମୁଖବନ୍ଧ)

ନିଜର ଭକ୍ତି ସାଧନା, କବିତ୍ୱ ଏବଂ ବ୍ୟକ୍ତିତ୍ୱ ବଳରେ ଅଚ୍ୟୁତାନନ୍ଦ ଷୋଡ଼ଶ ଶତାବ୍ଦୀର ଜଣେ ଶ୍ରେଷ୍ଠ ମନୀଷୀ ଭାବରେ ସମାଜରେ ସମ୍ମାନିତ ହେଉଥିଲେ । ତେଣୁ ସେ ସମୟରେ ରାଜା ପ୍ରତାପରୁଦ୍ର ଅନ୍ୟ ଚାରିସଖାଙ୍କ ସମେତ ବହୁ ପ୍ରତିଷ୍ଠିତ ବ୍ୟକ୍ତିଙ୍କ ସହିତ ତାଙ୍କର ନିବିଡ଼ ସଂପର୍କ ଥିଲା ।

**ମହାପ୍ରୟାଣ :** ମହାପୁରୁଷ ଅଚ୍ୟୁତାନନ୍ଦ ଦୀର୍ଘଜୀବୀ ଥାଇ ଶତାଧିକ ବର୍ଷ ସାଧନା କରିଥିବା ବିଭିନ୍ନ ସୂତ୍ରରୁ ସୂଚନା ମିଳେ । ସେ ଦିବ୍ୟଦ୍ରଷ୍ଟା ତଥା ତ୍ରିକାଳଦର୍ଶୀ ଥିବାରୁ ଆଗତ ଭବିଷ୍ୟ କଥା ସହଜରେ ଜାଣି ପାରୁଥିଲେ । ତାଙ୍କର ମହାପ୍ରୟାଣ ସଂପର୍କରେ ପଣ୍ଡିତ କୃପାମଣି ପାଠୀଶର୍ମା କହିଛନ୍ତି- "ଅଚ୍ୟୁତାନନ୍ଦଙ୍କ ଶେଷ ସମୟ ଆଗତ ହେବା ପୂର୍ବରୁ ଶିଷ୍ୟ, ପ୍ରଶିଷ୍ୟ, ଅଗଣିତ ଭକ୍ତବୃନ୍ଦ, ସବୁ ମଣ୍ଡଳ-ଶାଖାର ପରିବାର ନେମାଳ ଆଶ୍ରମରେ ଉପସ୍ଥିତ ହୋଇଥିଲେ । ସେମାନଙ୍କୁ ଶେଷ ଉପଦେଶ ଶୁଣାଇ ସେ କହିଥିଲେ- କଳିଯୁଗରେ ନାମବ୍ରହ୍ମ ହିଁ ସାର, ସାକାର-ନିରାକାର, ସଗୁଣ-ନିର୍ଗୁଣ ବ୍ରହ୍ମ ଉପାସନା କଥା ପ୍ରଚାର କରି ଏ ପାପତାପ ସଂସାରରୁ ମାନବ ସମାଜକୁ ଓ ଗୋପାଳଙ୍କୁ ଉଦ୍ଧାର କର । ଏହା ହିଁ ହେଉଛି ସନାତନ ଧର୍ମ । ତାଙ୍କ ଦେହାବସାନ ସଂପର୍କରେ ସେ ଲେଖିଛନ୍ତି-

*"କେଉଁ ବରଷ କେଉଁ ମାସ କେତେବେଳେ ମୃତ୍ୟୁ*
*କାହୁଁ ଯାଇଁ କାହିଁ ରହିଲା ମୋର ନୋହିଲା ହେତୁ ।*
*ଜ୍ୟେଷ୍ଠ ଶୁକ୍ଳ ଏକାଦଶୀ ସେ ଦିନକୁ ମୋ ଆଶା*
*ଅଭୟ ଚରଣ ମାଗଇ ମୋର ଏହି ଭରସା ।"*

*- ଅଷ୍ଟ ଗୁଜ୍ଜରୀ*

ଐତିହାସିକ ଚକ୍ରଧର ମହାପାତ୍ର ଅଚ୍ୟୁତାନନ୍ଦଙ୍କ ଦେହାବସାନକୁ ଭୋଇ ବଂଶର ୨ୟ ଗଜପତି ପୁରୁଷୋତ୍ତମ ଦେବଙ୍କ ୩ୟ ଅଙ୍କ ବୋଲି ଗ୍ରହଣ କରିଛନ୍ତି । ତାଙ୍କ ମତରେ ସିଦ୍ଧଯୋଗୀ ଅଚ୍ୟୁତାନନ୍ଦ ୧୦୫ ବର୍ଷ ଜୀବିତ ଥିଲେ । (କୋଣାର୍କ-ପଞ୍ଚସଖା ବିଶେଷାଙ୍କ)

ନିଜର ସାଧନା ପୀଠ ନେମାଳ ଠାରେ ଶେଷ ନିଃଶ୍ୱାସ ତ୍ୟାଗ କରିଥିବା କଥା ଅଚ୍ୟୁତାନନ୍ଦ ବିଭିନ୍ନ ଗ୍ରନ୍ଥରେ ବର୍ଣ୍ଣନା କରିଛନ୍ତି ।

''ସନାତନ ଧର୍ମ ସ୍ଥାପି ଦେହ ହଜାଇବି
ନେମାଳ ଭୂମିରେ ଶୂନ୍ୟ ସାମଧି ପାଇବି ।''

- ପଟଳ ସଂହିତା-୫ମ ପଟଳ

''ଚିତ୍ରୋତ୍ପଳା କୂଳେ ନେମାଳପୁର
ସମାଧି ବଟ ମୋ ତହିଁ ବେହାର ।''

- ବିଚିତ୍ର ଯନ୍ତ୍ର

''ଚିତ୍ରୋତ୍ପଳା ନଦୀ ତଟରେ ଗ୍ରାମ ନେମାଳ ସ୍ଥାନ
ସେଠାରେ ଏ ଦେହ ଭଜିବ ମାଗେ ଏହି ଧିଆନ ।''

- ଅଷ୍ଟ ଗୁହ୍ୱରୀ

ନେମାଳସ୍ଥ ସାଧନାପୀଠରେ ମହାପୁରୁଷଙ୍କ ଦେହାବସାନ ହୋଇଥିଲେ ମଧ୍ୟ ସେ ସ୍ୱଦେହରେ ଶ୍ରୀଜଗନ୍ନାଥଙ୍କ ଶ୍ରୀଅଙ୍ଗରେ ବିଲୀନ ହେବା କଥା ବିଶ୍ୱାସ କରାଯାଏ । କାରଣ ଦେବସ୍ନାନ ପୂର୍ଣ୍ଣମୀରେ ଶ୍ରୀମନ୍ଦିରର ସ୍ନାନ ମଣ୍ଡପରେ ଠାକୁରମାନଙ୍କୁ ଦର୍ଶନ କରିବାକୁ ଯାଇଥିବା କେତେକ ଭକ୍ତ ଫେରିଆସି ମହାପୁରୁଷଙ୍କ ମହାପ୍ରୟାଣ କଥା ଶୁଣି ବିଶ୍ୱାସ କରିପାରିଲେ ନାହିଁ । ସେମାନେ ସ୍ନାନ ମଣ୍ଡପ ଉପରେ ଅଚ୍ୟୁତାନନ୍ଦଙ୍କୁ ଦେଖିଥିବା କଥା ପ୍ରକାଶ କଲେ । ସମସ୍ତେ ବିଶ୍ୱାସ କଲେ ଯେ ସେ ପ୍ରଭୁଙ୍କ ଶ୍ରୀଅଙ୍ଗରେ ବିଲୀନ ହୋଇ ଯାଇଛନ୍ତି ।



# ରଚନାବଳୀ

ଓଡ଼ିଶାରେ ମହାପୁରୁଷ ଅଚ୍ୟୁତାନନ୍ଦଙ୍କ ନାମରେ ପ୍ରଚଳିତ ଅଗଣିତ ଗ୍ରନ୍ଥରାଜି ମଧ୍ୟରୁ କେତେକ ପ୍ରକାଶ ପାଇଥିଲେ ମଧ୍ୟ ଆଉ କେତେକ ଅଦ୍ୟାବଧି ପ୍ରକାଶ ପାଇନାହିଁ । ଅପ୍ରକାଶିତ ଗ୍ରନ୍ଥସବୁ ଏବେ ମଧ୍ୟ ତାଳପତ୍ର ପୋଥିରେ ଲେଖା ହୋଇ ରହିଛି ଓ ସେଥିମଧ୍ୟରୁ ଅନେକ ଯତ୍ନ ଅଭାବରୁ ଅସୁରକ୍ଷିତ ଅବସ୍ଥାରେ ନଷ୍ଟଭ୍ରଷ୍ଟ ହୋଇ ପଡ଼ିରହିଛି । ଗ୍ରାମାଞ୍ଚଳରେ ଲୋକମାନଙ୍କ ଘରେ ଓ ଭାଗବତ ଗାଦିରେ ଥିବା ପୋଥିସବୁ ବନ୍ୟା-ବାତ୍ୟା ଓ ଅଗ୍ନିକାଣ୍ଡରେ କେତେକାଂଶରେ ନଷ୍ଟ ହୋଇଯାଇଛି । କେହି କେହି ସେସବୁ ପୋଥିର ଗୁରୁତ୍ୱ ନ ବୁଝି ପାଣିରେ ମଧ୍ୟ ଭସାଇ ଦେଇଛନ୍ତି ।

ଓଡ଼ିଶାର ପୁରପଲ୍ଲୀରେ ଅଚ୍ୟୁତାନନ୍ଦଙ୍କ ରଚନାବଳୀର ପାଣ୍ଡୁଲିପି କେତେ ପରିମାଣରେ ରହିଛି ତାର ମଧ୍ୟ ନିର୍ଦ୍ଦିଷ୍ଟ ହିସାବ କାହାରି ପାଖରେ ନାହିଁ । ଗବେଷଣା ଦୃଷ୍ଟିରୁ ତାଙ୍କର ସମସ୍ତ ରଚନାକୁ ଏକତ୍ର କରି ବୈଜ୍ଞାନିକ ପ୍ରଣାଳୀରେ ଶୁଦ୍ଧ ସଂପାଦନା କରିବାର ଆବଶ୍ୟକତା ଯଥେଷ୍ଟ ପରିମାଣରେ ଉପଲବ୍ଧ ହେଉଛି । ସେଥିରୁ ଯେଉଁସବୁ ତଥ୍ୟ ମିଳିବ ତା'ଦ୍ୱାରା ଅଚ୍ୟୁତାନନ୍ଦଙ୍କ ଧର୍ମ-ଦର୍ଶନ ତଥା ଜୀବନ ସଂପର୍କରେ ନୂତନ ଦିଗ ଉନ୍ମୋଚନ ହୋଇପାରିବ । ଆନନ୍ଦର କଥା ଅଚ୍ୟୁତାନନ୍ଦ ସ୍ମୃତି କମିଟି ଆନୁକୂଲ୍ୟରେ ପ୍ରଫେସର ଡ଼ଃ ରତ୍ନାକର ଚଇନିଙ୍କ ସଂପାଦନାରେ **'ଅଚ୍ୟୁତାନନ୍ଦ ରଚନାବଳୀ'** ପ୍ରକାଶ ଲାଭ କରିଛି । ଡ଼ଃ ଚଇନି ବହୁ ଶ୍ରମରେ ଏପରି ଉପାଦେୟ କାର୍ଯ୍ୟ ସଂପାଦନ କରିଥିବାରୁ ନିଶ୍ଚିତ ଭାବରେ ସମସ୍ତଙ୍କର ଧନ୍ୟବାଦାର୍ହ ।

ତେବେ ଓଡ଼ିଶାରେ ଅଚ୍ୟୁତାନନ୍ଦଙ୍କ ନାମ ଭଣିତା ଥାଇ ଯେତେ ଗ୍ରନ୍ଥ ମିଳିଛି ସେସବୁକୁ ପଞ୍ଚସଖା ଅନ୍ତର୍ଭୁକ୍ତ ନେମାଳ ପୀଠର ସାଧକ ମହାପୁରୁଷ ଅଚ୍ୟୁତାନନ୍ଦଙ୍କର ବୋଲି ସାଧାରଣତଃ ଗ୍ରହଣ କରାଯାଇଛି । ଏହାର ମୂଳ କାରଣ ହେଲା ଅଚ୍ୟୁତାନନ୍ଦଙ୍କର ଲୋକପ୍ରିୟତା । ତେଣୁ ଅଚ୍ୟୁତ, ଦୀନ ପାମର ଅଚ୍ୟୁତ, ଅଚ୍ୟୁତି ଦାସ, ଅଚ୍ୟୁତାନନ୍ଦ ଆଦି ନାମ ଭଣିତା ଥିବା ସବୁ ଅଚ୍ୟୁତାନନ୍ଦ ଦାସଙ୍କ ରଚନା ବୋଲି

ଗୃହୀତ ହୋଇଛି । ଅଚ୍ୟୁତାନନ୍ଦ ନାମଧାରୀ ଆଉ କୌଣସି ସାଧକ ଅଚ୍ୟୁତାନନ୍ଦଙ୍କ ପରେ ଗାଦିନସୀନ ହୋଇ ନଥିଲେ ବୋଲି ନେମାଳ ଗାଦିରେ ଥିବା ଗୁରୁ ପ୍ରଣାଳୀରୁ ଜଣା ପଡ଼ିଛି । ଜଣେ ଅଚ୍ୟୁତାନନ୍ଦଙ୍କର ହିଁ ନେମାଳ ପୀଠରେ ଆବିର୍ଭାବ ହୋଇଥିଲା । ସେ ଥିଲେ ବ୍ରହ୍ମଜ୍ଞ, ତତ୍ତ୍ୱନିଷ୍ଠ, ସମାଜ ସଂସ୍କାରଧର୍ମୀ, ବହୁ ଗ୍ରନ୍ଥ ଓ ପୁରାଣର ସ୍ରଷ୍ଟା ମହାପୁରୁଷ ଅଚ୍ୟୁତାନନ୍ଦ ।

ଭାରତରେ ବହୁ ପ୍ରାଚୀନ କାଳରୁ ଗ୍ରନ୍ଥ ରଚନା କରି ଶିଷ୍ୟ ଓ ଭକ୍ତମାନେ ଗୁରୁଙ୍କ ନାମରେ ଭଣିତା କରିବାର ପରମ୍ପରା ପ୍ରଚଳିତ ଅଛି । ସଂସ୍କୃତ କବି କାଳିଦାସ, ବଙ୍ଗଳା କବି ଚଣ୍ଡୀଦାସ, ମୈଥିଳୀ କବି ବିଦ୍ୟାପତିଙ୍କ ନାମ ଭଣିତା ହୋଇ ବହୁ କବି ପ୍ରସିଦ୍ଧି ଲଭିଛି । ଓଡ଼ିଶାରେ ମଧ୍ୟ ଜୟଦେବ, ବଳରାମ, ଜଗନ୍ନାଥ, ଅଚ୍ୟୁତ, ଅନନ୍ତ, ଯଶୋବନ୍ତ, ଦୀନକୃଷ୍ଣ, ଉପେନ୍ଦ୍ରଙ୍କ ଲୋକପ୍ରିୟତା ଦୃଷ୍ଟିରୁ ସେମାନଙ୍କ ନାମରେ ବହୁ କବି ପରବର୍ତ୍ତୀ ସମୟରେ ସୃଷ୍ଟି ହୋଇଛନ୍ତି । ସାଧାରଣତଃ ପ୍ରାଚୀନ ଯୁଗରେ କବିମାନେ ନିଜର ପରିଚୟ ବିଶଦ ଭାବରେ ଗ୍ରନ୍ଥରେ ଦେଉ ନ ଥିଲେ । ତା'ର କାରଣ ହେଲା, ସେମାନେ ପ୍ରଚାର ବା ପ୍ରସାର ଉପରେ ଆଦୌ ଗୁରୁତ୍ୱ ଦେଉ ନ ଥିଲେ । ଏପରିକି ଯିଏ ଆତ୍ମ ପ୍ରଚାର କରୁଥିଲା, ସେ ଗୁରୁଦ୍ରୋହୀ ହେଉଥିଲା ବୋଲି ସେମାନଙ୍କର ବିଶ୍ୱାସ ଥିଲା । ସେ ଦୃଷ୍ଟିରୁ ଅଚ୍ୟୁତାନନ୍ଦଙ୍କ ନାମରେ ପ୍ରଚଳିତ ସବୁ ଗ୍ରନ୍ଥରେ କବିଙ୍କ ସ୍ୱପରିଚୟ ବିଶଦ ଭାବରେ ନ ଥିବାରୁ ସେସବୁ କେଉଁ ଅଚ୍ୟୁତଙ୍କ ରଚନା ତାହା ଜାଣିବା କଷ୍ଟକର କଥା ।

କେତେକ ଗ୍ରନ୍ଥରେ ବହୁ ପରବର୍ତ୍ତୀ ମୋଗଲ, ମରହଟ୍ଟା ଫିରିଙ୍ଗୀ ସମୟର ଐତିହାସିକ ଘଟଣା କ୍ରମର ବର୍ଣ୍ଣନା ଦେଖି ସ୍ୱତଃ ମନକୁ ଆସେ ଯେ ଏସବୁ ଗ୍ରନ୍ଥ ପରବର୍ତ୍ତୀ ସମୟରେ ରଚିତ ହୋଇ ଅଚ୍ୟୁତାନନ୍ଦଙ୍କ ନାମରେ ଭଣିତା କରାଯାଇଛି । ସାଧାରଣତଃ ମାଳିକା ଗ୍ରନ୍ଥମାନଙ୍କରେ ଏପରି ହୋଇଥିବାର ଦେଖାଯାଏ । କିନ୍ତୁ ଭକ୍ତମାନଙ୍କ ମତରେ ମହାପୁରୁଷ ଅଚ୍ୟୁତାନନ୍ଦ ଥିଲେ ତ୍ରିକାଳଦର୍ଶୀ ତଥା ଦିବ୍ୟଦ୍ରଷ୍ଟା । ସେ ଆଗତ ଭବିଷ୍ୟତ କଥା ସବୁ ଜାଣି ପାରୁଥିଲେ । ସେଥିପାଇଁ ଭବିଷ୍ୟତ କାଳରେ କି କି ଘଟଣା ସବୁ ଘଟିବ ସେ ସବୁ କଥାକୁ ତାଙ୍କ ରଚନାରେ ସ୍ଥାନ ଦେଇଛନ୍ତି । ଧର୍ମ ଓ ଭକ୍ତି ଦୃଷ୍ଟିରୁ ଭକ୍ତମାନଙ୍କର ଏ ପ୍ରକାର ଧାରଣା ଅମୂଳକ ନ ହୋଇପାରେ । ମାତ୍ର ଭାଷା, ଇତିହାସ ପ୍ରଭୃତି ବୈଜ୍ଞାନିକ ଦୃଷ୍ଟିକୋଣରୁ ଏହା ଆଦୌ ଗ୍ରହଣୀୟ ନୁହେଁ । ସେ ଦୃଷ୍ଟିରୁ ଗ୍ରନ୍ଥରେ ପରିବେଶିତ ଐତିହାସିକ ତଥ୍ୟ, ଅଚ୍ୟୁତାନନ୍ଦଙ୍କ ମୌଳିକ ଭାଷା, ଧର୍ମତତ୍ତ୍ୱ ଓ ସ୍ୱପରିଚୟ

ଆଦିକୁ ନେଇ ବୈଜ୍ଞାନିକ ପଦ୍ଧତିରେ ଗ୍ରନ୍ଥର ପ୍ରାମାଣିକତା ସ୍ଥିର କରାଯାଏ । ଅତଏବ ସେ ପ୍ରସଙ୍ଗ ସ୍ୱତନ୍ତ୍ର ଭାବରେ ଗବେଷଣାସାପେକ୍ଷ । ସେଥିପାଇଁ ଓଡ଼ିଶାରେ ଅଚ୍ୟୁତାନନ୍ଦଙ୍କ ନାମରେ ପ୍ରଚଳିତ ରଚନାବଳୀର ସଂକ୍ଷିପ୍ତ ଆଲୋଚନା ଏଠାରେ କରାଯାଇଛି ।

ଓଡ଼ିଆ ସାହିତ୍ୟରେ ଅନେକ ଶରୀର ଭେଦ ଭଜନ, ଚଉତିଶା, ପୁରାଣ, ମାଳିକା, ସଂହିତା, ଗୀତା, ପଟଳ, ରାସ, କୋଇଲି, ଯନ୍ତ, କଚ୍ଛ, କବଚ, ଟୀକା ପ୍ରଭୃତି ଅଚ୍ୟୁତାନନ୍ଦ ରଚନା କରିଥିଲେ । ସ୍ୱକୃତ ରଚନାବଳୀର ପରିଚୟ ଦେବାକୁ ଯାଇ ସେ କହିଛନ୍ତି-

*''ଛତିଶ ସଂହିତା ଅଠସ୍ତରି ଗୀତା ବଂଶାନୁ ସପ୍ତବିଂଶରେ*
*ଉପବଂଶାନୁ ଦ୍ୱାବିଂଶ ଖଣ୍ଡ ଘେନି ଭବିଷ୍ୟ ଶତଖଣ୍ଡରେ ।*
*ପଦପଦାବଳୀ ଲକ୍ଷେକ ଯେ ଗ୍ରନ୍ଥ ସବୁ ଶ୍ରୀକୃଷ୍ଣ ମହିମା*
*ତୋ ଆଗେ କହିଲୁ ବରଜକୁମର ବ୍ରହ୍ମ ସାରସ୍ୱତ ସୀମା ।''*

*- ଅଣାକାର ସଂହିତା*

ସେ ସଂହିତା ୩୬, ଗୀତା ୭୮, ବଂଶାନୁଚରିତ ୨୭, ଉପବଂଶାନୁଚରିତ ୨୨, ଭବିଷ୍ୟତ ମାଳିକା ୧୦୦ ପଦ୍ୟପଦ୍ୟାବଳୀ ପ୍ରଭୃତି ଲକ୍ଷେ ଗ୍ରନ୍ଥ ଲେଖିଛନ୍ତି ଓ ସବୁଠାରେ ଶ୍ରୀକୃଷ୍ଣଙ୍କ ମହିମା ବର୍ଣ୍ଣିତ ହୋଇଥିବା କଥା ଏଥିରୁ ସୂଚିତ ହୁଏ । ''ଶିବକଚ୍ଛ'' ଗ୍ରନ୍ଥରେ ଅଛି-

*''ବାରଣ ବେଳକୁ ବିହନ ବାଣ୍ଟିବି ବୁଝି ନ ପାରିବେ କେହି*
*ଲକ୍ଷେ ପଞ୍ଚାଅଣି ଗ୍ରନ୍ଥେ ବୁଝାଇବି ସନ୍ଥଳରେ ଭେଦ ରହି ।*
*ଶିରେ ଶାଢ଼ୀ ଆମ୍ଭେ ପଞ୍ଚସଖା ଦେବୁ ଅଚ୍ୟୁତ ମୂଳରେ ତତ୍ତ୍ୱ*
*ପଦ୍ମେ ଭକତକୁ ଜ୍ଞାନ ବୁଝାଇବୁ କଳି ମନ୍ତ୍ର ସାରସ୍ୱତ ।''*

ଅଚ୍ୟୁତାନନ୍ଦଙ୍କର ଜଣେ ଭକ୍ତ ଚନ୍ଦି ଦାସ 'ଅନନ୍ତ ଗୀତା'ରେ ଲେଖିଛନ୍ତି-

*''ଲକ୍ଷେ ଗ୍ରନ୍ଥକୁ ଯେ ଲେଖିଛ ପ୍ରଭୁ ଅଚ୍ୟୁତାନନ୍ଦ ।''*

ଉପରୋକ୍ତ ଉଦାହାରଣରୁ ସ୍ପଷ୍ଟ ପ୍ରମାଣିତ ହୁଏ ଯେ କବି ଲକ୍ଷେ ଅବା ତହିଁରୁ ଅଧିକ ଗ୍ରନ୍ଥ ରଚନା କରିଥିଲେ । ଲକ୍ଷେ ଶବ୍ଦଟି ଏଠାରେ ବହୁତ୍ୱବୋଧକ ଭାବେ ପ୍ରୟୋଗ କରାଯାଇଛି । ସେ ବହୁତ ଗ୍ରନ୍ଥ ରଚନା କରିଥିବା ଏଥିରୁ ସୂଚିତ ହୁଏ । ସେସବୁ ଗ୍ରନ୍ଥ

ଅଧିକାଂଶ ନବାକ୍ଷରୀ ଭାଗବତ ବୃତ୍ତ, ବଙ୍ଗଳାଶ୍ରୀ ରାଗ, ମଙ୍ଗଳ ଗୁର୍ଜ୍ଜରୀ ଓ କୁମ୍ଭକାମୋଦୀ ରାଗ ମାନଙ୍କରେ ରଚିତ ହୋଇଛି ।

ଓଡ଼ିଆ ସାହିତ୍ୟ ସମାଲୋଚକ ଜଗବନ୍ଧୁ ସିଂହ, ତାରିଣୀ ଚରଣ ରଥ, ଡଃ ଆର୍ତ୍ତବଲ୍ଲଭ ମହାନ୍ତି, ଡଃ ହରେକୃଷ୍ଣ ମହତାବ, ସୁରେନ୍ଦ୍ର ମହାନ୍ତି, ଡଃ ବଂଶୀଧର ମହାନ୍ତି, ଡଃ କୃଷ୍ଣ ଚରଣ ସାହୁ, ଡଃ ଦେବେନ୍ଦ୍ର ମହାନ୍ତି, ପଣ୍ଡିତ ଚନ୍ଦ୍ରାମଣି ଦାଶଶର୍ମା, ଶ୍ରୀଯୁକ୍ତ ପଠାଣି ପଟ୍ଟନାୟକ, ଡଃ ବୃନ୍ଦାବନ ଚନ୍ଦ୍ର ଆଚାର୍ଯ୍ୟ, ଅଧ୍ୟାପକ ଆଶୁତୋଷ ନାୟକ ପ୍ରମୁଖ ବିଭିନ୍ନ ସୂତ୍ରରୁ ଉଦ୍ଧାରକରି ଅଚ୍ୟୁତାନନ୍ଦଙ୍କ ରଚନାବଳୀର ପରିଚୟ ପ୍ରଦାନ କରିଛନ୍ତି । ପୁଣି ଏ କ୍ଷେତ୍ରରେ ଡଃ ରତ୍ନାକର ଚଇନିଙ୍କ ଦ୍ୱାରା ସଂପାଦିତ 'ଅଚ୍ୟୁତାନନ୍ଦ ରଚନାବଳୀ' ବିଶେଷ ସହାୟକ ହୋଇପାରିଛି । ସମସ୍ତଙ୍କ ଦ୍ୱାରା ପ୍ରଦତ୍ତ ସବୁ ଗ୍ରନ୍ଥର ନାମକୁ ଏକତ୍ର କଲେ, ତାହା ସୁଦୀର୍ଘ ତାଲିକାରେ ପରିଣତ ହେଉଛି । କେତେକ କ୍ଷେତ୍ରରେ ସମାଲୋଚକମାନେ ଉଲ୍ଲେଖ କରିଥିବା ଅଧିକାଂଶ ଗ୍ରନ୍ଥ ଦେଖିବାର ସୁଯୋଗ ପାଇ ପାରିନାହାନ୍ତି । କେବଳ ବିଭିନ୍ନ ସୂତ୍ରରୁ ନାମୋଦ୍ଧାର କରିଛନ୍ତି ଯାହା । ସେଥିପାଇଁ ଗୋଟିଏ ଗୋଟିଏ ନିର୍ଦ୍ଦିଷ୍ଟ ଗ୍ରନ୍ଥର ନାମ ସାମାନ୍ୟ ପରିବର୍ତ୍ତିତ ହୋଇ ଭିନ୍ନଭିନ୍ନ ନାମରେ ପ୍ରଚଳିତ ଥିବାର ଜଣାଯାଏ । ସମ୍ଭବତଃ ଗୋଟିଏ ନାମ ସହିତ ଗୀତା, ସଂହିତା, ଯନ୍ତ୍ର, ପଟଳ, କଳ୍ପ ଆଦି ଯୋଗ କରାଯାଇ ଏକାଧିକ ଗ୍ରନ୍ଥ ସୃଷ୍ଟି ହୋଇଛି । ଏପରି ଗ୍ରନ୍ଥମାନଙ୍କୁ ଏକତ୍ର କରି ଗବେଷଣା ଦୃଷ୍ଟିକୋଣରୁ ଅଧ୍ୟୟନ କଲେ ସହଜରେ ସତ୍ୟକଥା ଜଣା ପଡ଼ନ୍ତା । ତେବେ ଏଠାରେ ଅଚ୍ୟୁତାନନ୍ଦଙ୍କ ନାମରେ ପ୍ରଚଳିତ ରଚନାବଳୀର ନାମୋଲ୍ଲେଖ କରାଯିବା ସଙ୍ଗେ ସଙ୍ଗେ ସେସବୁ ମଧ୍ୟରୁ କେତେକର ସଂକ୍ଷିପ୍ତ ପରିଚୟ ଯଥା ସମ୍ଭବ ପ୍ରଦାନ କରାଗଲା ।

## ଅଚ୍ୟୁତାନନ୍ଦ ରଚନାବଳୀର ଏକ ତାଲିକା :=

**ସଂସ୍କୃତ=**

୧= ଅଣାକାର ତନ୍ତ୍ର

୨= କର୍ଣ୍ଣଟୀକା

୩= ମହାକାବ୍ୟ (ମିଶ୍ରିତ)

୪= ଶୂନ୍ୟ ସଂହିତା

୫= ସହଦେବ କ୍ଷତ୍ରୀ

**ଓଡ଼ିଆ-**

୧- ଅକଳିତ ସଂହିତା
୨- ଅଣାକାର ବ୍ରହ୍ମ ଯନ୍ତ୍ର ନିରୂପଣ
୩- ଅଜପା, ଅମପା, ଅବନା
୪- ଅଣାକାର ଚଉତିଶା
୫- ଅଣାକାର ତନ୍ତ୍ର
୬- ଅଣାକାର ବ୍ରହ୍ମଯନ୍ତ୍ର
୭- ଅଣାକାର ମନ୍ତ୍ରବ୍ୟାଖ୍ୟା
୮- ଅଣାକାର ସଂହିତା
୯- ଅଧରୀ ମଧ ଧ୍ରୁବଲୀଳା
୧୦- ଅନନ୍ତ ଗୀତା
୧୧- ଅନନ୍ତ ଗୋଇ
୧୨- ଅନନ୍ତ ରାସ
୧୩- ଅନାହତ ଧ୍ୱନି ସଂହିତା
୧୪- ଅନାହତ ସଂହିତା
୧୫- ଅବତାର ଶେଷ ମହିମା
୧୬- ଅବାଡ଼ ସଂହିତା
୧୭- ଅଭୟ କବଚ
୧୮- ଅମରକୋଷ
୧୯- ଅମର ଭ୍ରମର ସଂହିତା
୨୦- ଅଷ୍ଟ ଗୁଜ୍ଜରୀ
୨୧- ଆଗତ ଭବିଷ୍ୟମାଳିକା
୨୨- ଆଗତ ସାର
୨୩- ଆଗତ ସାର ଚଉତିଶା
୨୪- ଆତ୍ମ ପରିଚୟ
୨୫- ଆଦିବ୍ରହ୍ମ ଗୀତା
୨୬- ଆଦିଲୀଳା ଗୀତା
୨୭- ଉଦୟ କାହାଣୀ
୨୮- ଉପଦେଶ ଚକ୍ରଗୀତା
୨୯- ଉପଦେଶ ଟୀକା
୩୦- ଏକାନ୍ତ ଜ୍ଞାନ ଚଉତିଶା
୩୧- ଏକାକ୍ଷର ଗୀତା
୩୨- ଏକାକ୍ଷର ବସାଣ
୩୩- ଏକାକ୍ଷର ସଂହିତା
୩୪- କର୍ମ ସଂହିତା
୩୫- କପୋତ କପୋତୀ ବୋଲ
୩୬- କଲ୍କୀଦେବ ତୁମ୍ବକବାଣୀ
୩୭- କଲ୍‌କୀଦେବ ସତର୍କବାଣୀ
୩୮- କଳ୍ପ ଲେଖନ
୩୯- କଳିକଣ୍ଟ ଗୀତା
୪୦- କଳିକଣ୍ଟ ଟୀକା
୪୧- କଳି ଚଉତିଶା
୪୨- କଳି ଭାଗବତ
୪୩- କଳିଯୁଗ ଗୀତା
୪୪- କଳିଲୀଳା ଚଉତିଶା
୪୫- କାଳଚକ୍ର ଯନ୍ତ୍ର
୪୬- କୁସୁମ କେଳି
୪୭- କୈବର୍ତ୍ତ ଗୀତା
୪୮- କୋଡ଼ିଏ ପଟଳ ମାଳିକା
୪୯- କୃଷ୍ଣସେବା
୫୦- ଗଣଭୃତ୍ୟ ଗୀତା
୫୧- ଗଣେଶ ବିଭୂତି ଟୀକା
୫୨- ଗରୁଡ଼ ଗୀତା
୫୩- ଗରୁଡ଼ ସଂହିତା
୫୪- ଗହନ ଗୀତା
୫୫- ଗହନ ଚଉତିଶା
୫୬- ଗାୟତ୍ରୀ ବସାଣ
୫୭- ଗୁଜ୍ଜରୀ ଦୂତୀରାସ
୫୮- ଗୁପ୍ତଖେଳା
୫୯- ଗୁପତ ଗହନ ଗୀତା
୬୦- ଗୁରୁ ପ୍ରଣାଳୀ

୬୧- ଗୁରୁ ପ୍ରଶ୍ନାବଳୀ ସଂବାଦ
୬୨- ଗୁରୁଭକ୍ତି ଗୀତା
୬୩- ଗୋପାଳ ଆଚାର
୬୪- ଗୋପାଳଙ୍କ ଓଗାଳ
୬୫- ଗୋପାଳ ଜନ୍ମ
୬୬- ଗୋପାଳ ଲୀଳା
୬୭- ଗୋଷ୍ଠଲୀଳା
୬୮- ଜ୍ଞାନପ୍ରଦୀପ ଗୀତା
୬୯- ଜ୍ଞାନ ସଂହିତା
୭୦- ଜ୍ଞାନ ସାଗର ବୋଲି
୭୧- ଜ୍ଞାନୋଦୟ କୋଇଲି
୭୨- ଘଟ ପରଚେ ଚଉତିଶା
୭୩- ଘଟ ସାଗର
୭୪- ଘାଟ ସଜ୍ଜା
୭୫- ଚଇତନ ରସ ଚଉତିଶା
୭୬- ଚଉରାଶି ଚକ୍ର ବା ଯନ୍ତ୍ର
୭୭- ଚଉଷଠି ଟୀକା
୭୮- ଚବିଶ ଉପଦେଶ
୭୯- ଚବିଶ ଚଉପଦୀ
୮୦- ଚବିଶ ପଟଳ
୮୧- ଚନ୍ଦ୍ରକଳ୍ପ ଟୀକା
୮୨- ଚମ୍ପାବତୀ ହରଣ
୮୩- ଚିତ୍ତ ଆରତ ଚଉତିଶା
୮୪- ଚିତ୍ତବୋଧ
୮୫- ଚିତ୍ରୋତ୍ପଳା ମାହାତ୍ମ୍ୟ
୮୬- ଛ'ପୋଇ
୮୭- ଛୟାଳିଶ ପଟଳ
୮୮- ଛାୟା ପରଚେ ଗୀତା
୮୯- ଛାୟା ସଂହିତା
୯୦- ଜଗନ୍ନାଥ ତତ୍ତ୍ୱ ଚଉତିଶା
୯୧- ଜନ୍ମଗୀତା
୯୨- ଜନ୍ମବିବରଣ
୯୩- ଜନ୍ମଲୀଳା
୯୪- ଜନ୍ମଲୀଳା ଗୀତା
୯୫- ଜନ୍ମଶରଣ
୯୬- ଜନମ କାହାଣୀ
୯୭- ଜନମ ଲତା ବୋଲି
୯୮- ଜାଇଫୁଲ ମାଳିକା
୯୯- ଜ୍ୟୋତି ଦର୍ଶନ ଚଉତିଶା
୧୦୦- ଜ୍ୟୋତିଷ ସଂହିତା
୧୦୧- ଜ୍ୟୋତି ସଂହତା
୧୦୨- ଠୁଲଶୂନ୍ୟ ରାସ
୧୦୩- ଡିବିଡିବି କୋଇଲି
୧୦୪- ଡିବିଡିବି ଚଉତିଶା
୧୦୫- ତ୍ତ୍ୱବୋଧିନୀ
୧୦୬- ତତ୍ତ୍ୱବୋଧିନୀ ଗୀତା
୧୦୭- ତତ୍ତ୍ୱଭଜନ ଚଉତିଶା
୧୦୮- ତତ୍ତ୍ୱସାର ଟୀକା
୧୦୯- ତନ୍ତ୍ର ସଂହିତା
୧୧୦- ତନ୍ତ୍ରୀ ଚଉତିଶା
୧୧୧- ତୁଳସୀ କଳ୍ପ
୧୧୨- ତେରଜନ୍ମ ଶରଣ
୧୧୩- ତ୍ରିକାଳ ତତ୍ତ୍ୱ
୧୧୪- ତ୍ରିବିଧ ଯନ୍ତ୍ର
୧୧୫- ଦଶପଟଳ ମାଳିକା
୧୧୬- ଦୂତୀବୋଧ
୧୧୭- ଦୂତୀବୋଧ ଚଉତିଶା
୧୧୮- ଦୂତୀରାସ
୧୧୯- ଧ୍ୱନି ସଂହିତା
୧୨୦- ନବ ଗୁଞ୍ଜରୀ

୧୨୧= ନବଧା ଭକ୍ତି
୧୨୨= ନାମତତ୍ତ୍ୱ
୧୨୩= ନିର୍ଗୁଣ
୧୨୪= ନିତ୍ୟ ବିଚିତ୍ର ଯନ୍ତ୍ର
୧୨୫= ନିତ୍ୟ ରାହାସ
୧୨୬= ନିର୍ବାଣ ସାଗର ବୋଲି
୧୨୭= ନିରାକାର ସଂହିତା
୧୨୮= ନିଷ୍କଳ ଜ୍ଞାନ ଗୀତା
୧୨୯= ନିଶି ଅବକାଶ
୧୩୦= ନୀଳକଣ୍ଠ ରହସ୍ୟ
୧୩୧= ପଞ୍ଚସଖା ଚଉତିଶା
୧୩୨= ପଟଳ ସଂହିତା
୧୩୩= ପଦ୍ମକଳ୍ପ
୧୩୪= ପଦ୍ମକଳ୍ପ ଟୀକା
୧୩୫= ପଦ୍ମଦୋଳା
୧୩୬= ପଦ୍ମବନ ନାମ
୧୩୭= ପଦ୍ମବନ ପରିଚୟ
୧୩୮= ପଦ୍ମବନ ରାସ
୧୩୯= ପଦ୍ମବୋଲି
୧୪୦= ପଦ୍ମ ସଂହିତା
୧୪୧= ପରମ ଗୁପ୍ତଗୀତା
୧୪୨= ପରମ ଗୁପତ ଚଉତିଶା
୧୪୩= ପରମଜ୍ଞାନ ଗୀତା
୧୪୪= ପରମ ରାହାସ
୧୪୫= ପରାର୍ଦ୍ଧ
୧୪୬= ପାଟଳ ଗୀତା
୧୪୭= ପାଟଳ ସଂହିତା
୧୪୮= ପ୍ରାପ୍ତ ଲକ୍ଷଣ
୧୪୯= ପିଣ୍ଡବ୍ରହ୍ମାଣ୍ଡ ଚଉତିଶା
୧୫୦= ପ୍ରଣବ ଚଉତିଶା
୧୫୧= ପ୍ରେମଭକ୍ତି ବ୍ରହ୍ମାମୃତ
୧୫୨= ବାଉଳ ଚଉତିଶା
୧୫୩= ବନ ପରିକ୍ରମା
୧୫୪= ବନ ସଂହିତା
୧୫୫= ବଣ ବୋଲି
୧୫୬= ବର୍ଣ୍ଣଚରିତ
୧୫୭= ବର୍ଣ୍ଣଟୀକା
୧୫୮= ବର୍ଣ୍ଣଟୀକା ପୁରାଣ
୧୫୯= ବୟାଳିଶ ଚଉପଦୀ
୧୬୦= ବରଣି ଚରିତ ଗୀତା
୧୬୧= ବରାହ କଳ୍ପ
୧୬୨= ବରୁଣି ଚରିତ
୧୬୩= ବସନ୍ତ ଯନ୍ତ୍ର
୧୬୪= ବସ୍ତାଣ୍ଡ
୧୬୫= ବାଖର ବୋଲକି
୧୬୬= ବାରମାସ ଚଉତିଶ ଉପଦେଶ
୧୬୭= ବାଲ୍ମିକୀ କଳ୍ପ
୧୬୮= ବିଜ୍ଞାନ କଳ୍ପ
୧୬୯= ବିଚିତ୍ର ଯନ୍ତ୍ର
୧୭୦= ବିପ୍ର ଚାଳକ
୧୭୧= ବିପ୍ରବୋଧ
୧୭୨= ବୀଜସାଗର ଗୀତା
୧୭୩= ବୀଜସାର ଗୀତା
୧୭୪= ବୀଜ ସଂହିତା
୧୭୫= ବେଦତତ୍ତ୍ୱ ବ୍ରହ୍ମଜ୍ଞାନକଳ୍ପ
୧୭୬= ବୈଶାଖ କଳ୍ପ
୧୭୭= ବ୍ରହ୍ମଏକାକ୍ଷର ଗୀତା
୧୭୮= ବ୍ରହ୍ମକଳ୍ପ
୧୭୯= ବ୍ରହ୍ମପୁରାଣ
୧୮୦= ବ୍ରହ୍ମଜ୍ଞାନ ଚଉତିଶା

୧୮୧- ବ୍ରହ୍ମଟୀକା

୧୮୨- ବ୍ରହ୍ମବଟ ସଂହିତା

୧୮୩- ବ୍ରହ୍ମବିଦ୍ୟା

୧୮୪- ବ୍ରହ୍ମବିଦ୍ୟା ତତ୍ତ୍ୱଜ୍ଞାନ

୧୮୫- ବ୍ରହ୍ମ ଶାଙ୍କୋଳି

୧୮୬- ବ୍ରହ୍ମ ସଂହିତା

୧୮୭- ବ୍ରହ୍ମାଣ୍ଡ ସାଗର ବୋଲି

୧୮୮- ବୃନ୍ଦାରାସ

୧୮୯- ଭକ୍ତିଆରତ ଚଉତିଶା

୧୯୦- ଭକ୍ତିଜନ ଭେଦ

୧୯୧- ଭକ୍ତଲୀଳା ଗୀତା

୧୯୨- ଭକ୍ତିଶାସ୍ତ୍ର

୧୯୩- ଭକ୍ତି ସଂହିତା

୧୯୪- ଭିଗିଟି ଚଉତିଶା

୧୯୫- ଭବିଷ୍ୟ ଚଉତିଶା

୧୯୬- ଭବିଷ୍ୟତ ମାଳିକା

୧୯୭- ଭବିଷ୍ୟ ବର୍ଣ୍ଣମାଳା

୧୯୮- ଭାଗବତ ତତ୍ତ୍ୱ

୧୯୯- ଭାଗବତ ରହସ୍ୟ

୨୦୦- ଭାବନାବରି

୨୦୧- ମଣିବରଣ ଗୀତା

୨୦୨- ମଣିବନ୍ଧ ଗୀତା

୨୦୩- ମଥୁରାମଙ୍ଗଳ ବୋଲି

୨୦୪- ମନଭେଦ ଚଉତିଶା

୨୦୫- ମନ୍ତ୍ର ମୁକ୍ତାମଣି

୨୦୬- ମନ୍ତ୍ରଯନ୍ତ୍ରତନ୍ତ୍ର ଭେଦ

୨୦୭- ମନ୍ତ୍ର ସଂହିତା

୨୦୮- ମହାନିତ୍ୟ ରାହାସ

୨୦୯- ମହାପୁରୁଷ କବଚ

୨୧୦- ମହାମନ୍ତ୍ର

୨୧୧- ମହାଶୂନ୍ୟ ରାସ

୨୧୨- ମାତୃଗର୍ଭ ହେତୁ

୨୧୩- ମୁଦ୍ରା ପ୍ରଣାଳୀ

୨୧୪- ମୋହକଳ୍ପ

୨୧୫- ଯନ୍ତ୍ର ବଖାଣ

୨୧୬- ଯନ୍ତ୍ରବିଧି

୨୧୭- ଯନ୍ତ୍ର ସଂହିତା

୨୧୮- ଯୁଗାବ୍ଧି ଗୀତା

୨୧୯- ଯୋଗ ପ୍ରଣାଳୀ

୨୨୦- ଯୋଗ ଲୀଳା

୨୨୧- ରସ ଚନ୍ଦ୍ରିକା

୨୨୨- ରାଜ ସଂହିତା

୨୨୩- ରାଧାକୃଷ୍ଣ ଚଉତିଶା

୨୨୪- ରାଧାକୂଟୀ ଚଉତିଶା

୨୨୫- ରାଧାରାସ

୨୨୬- ରାମରସ ବୋଲି

୨୨୭- ରାମାୟଣ ରହସ୍ୟ

୨୨୮- ରାସଗୋପ ପଞ୍ଚାମୃତ

୨୨୯- ରାସ ଚନ୍ଦ୍ରିକା

୨୩୦- ରାହାସ ପ୍ରେମ ପଞ୍ଚାମୃତ

୨୩୧- ରାହାସ ବନ୍ଦନା

୨୩୨- ଲଉଡ଼ି ଖେଳ

୨୩୩- ଲକ୍ଷ୍ମୀଧର ବିଳାସ

୨୩୪- ଷଡ଼ଚକ୍ର

୨୩୫- ଷଡ଼ଚକ୍ର ବିଚାର

୨୩୬- ଷୋଡ଼ଶ ପଟଳ

୨୩୭- ଶବ୍ଦବ୍ରହ୍ମ ସଂହିତା

୨୩୮- ଶବ୍ଦ ସଂହିତା

୨୩୯- ଶରଣ ପଞ୍ଜର ସ୍ତୋତ୍ର

୨୪୦- ଶରୀର ଭେଦ ଚଉତିଶା

୨୪୧- ଶାରିକା ବଟ ବର୍ଣ୍ଣନା
୨୪୨- ଶିବକଳ୍ପ
୨୪୩- ଶିଶୁବେଦ
୨୪୪- ଶୂନ୍ୟଗୀତା
୨୪୫- ଶୂନ୍ୟ ପୁରୁଷ
୨୪୬- ଶୂନ୍ୟ ବଖାଣ
୨୪୭- ଶୂନ୍ୟରାସ
୨୪୮- ଶୂନ୍ୟ ସଂହିତା
୨୪୯- ଶ୍ରୀରାମଚରିତ
୨୫୦- ସତର୍କ ଚଉତିଶା
୨୫୧- ସତର ପଟଳ ମାଳିକା
୨୫୨- ସପ୍ତ ପଞ୍ଚାମୃିକା
୨୫୩- ସପ୍ତା ଭାଗବତ
୨୫୪- ସପ୍ତାଙ୍ଗ
୨୫୫- ସର୍ବ ମଙ୍ଗଳା ଜଣାଣ
୨୫୬- ସର୍ବାର୍ଥ ଚିନ୍ତାମଣି ବୋଲି
୨୫୭- ସାରସ୍ୱତ ମାଳିକା
୨୫୮- ସିଦ୍ଧକଳ୍ପ
୨୫୯- ସିଦ୍ଧ କାହାଳୀ
୨୬୦- ସୁମରଣା ଚଉତିଶା
୨୬୧- ସ୍ୱରୋଦୟ
୨୬୨- ସ୍ମୃତି ଚିନ୍ତାମଣି
୨୬୩- ସ୍ଥଳ ନିର୍ଣ୍ଣୟ
୨୬୪- ସ୍ଥାନ ନିର୍ଣ୍ଣୟ
୨୬୫- ହରି ଅର୍ଜୁନ ଚଉତିଶା
୨୬୬- ହରିବଂଶ
୨୬୭- ହେତୁ ଉଦୟ ଚଉତିଶା
୨୬୮- କ୍ଷେତ୍ର ମାହାତ୍ମ୍ୟ
୨୬୯- କ୍ଷେତ୍ର ସଂହିତା

## କ୍ଷୁଦ୍ର ରଚନା -

୧- ଅଖିଳ ବ୍ରହ୍ମାଣ୍ଡ ପତି
୨- ଅଣ ସାଧନାକୁ
୩- ଅଣାକାର ଭଜନ
୪- ଅନାଦିକୁ ଭଜମନ
୫- ଅନାମକୁ ନାମ
୬- ଅମଳ କମଳ ଚରଣକୁ
୭- ଅଶୂନ୍ୟ ହୋଇଣ ଯେ
୮- ଅଷ୍ଟରତ୍ନ ମାଳା
୯- ଆଉ ନାହିଁ ଭରସା
୧୦- ଆରେ ବାୟା ସଂସାର
୧୧- ଆସ ବୃନ୍ଦାବନକୁ ଯିବା
୧୨- ଆରେ ଭଜମନ
୧୩- ଆରେ ମନ ମୋର
୧୪- ଏକ ବ୍ରହ୍ମ ଦୁଇ ନାମ
୧୫- ଏଡ଼େ ପ୍ରଭୁ ଆଶ୍ରେ
୧୬- ଏ ମିଥ୍ୟା ସଂସାରେ
୧୭- ଏହି ମନ ସିନା ଚତୁର୍ଧା ମୂରତି
୧୮- ଓ ମତି ଅକ୍ଷର
୧୯- କର ଧରିରାଧା
୨୦- କଳାକୃଷ୍ଣ ନାମକୁ ରଟ
୨୧- କହଇ କଥାଏ ଶୁଣ
୨୨- କହୁଅଛି ମନ
୨୩- କହେ ଚଇତନ
୨୪- କାହିଁକିରେ ଭୁଲାମନ

ଏଗୁଡ଼ିକ ଅଚ୍ୟୁତାନନ୍ଦଙ୍କ ନାମରେ ଭଣିତା ହୋଇ ମିଳୁଥିବା କାବ୍ୟ-କବିତାର ସାମଗ୍ରିକ ପରିଚୟ ନୁହେଁ । ଆହୁରି ଅନେକ କୃତି ସନ୍ଥକବି ଅଚ୍ୟୁତାନନ୍ଦଙ୍କ ନାମରେ ପ୍ରଚଳିତ । ଭାଷା, ଭକ୍ତିଭାବନା, ଚିନ୍ତା-ଚେତନା ଓ ପଞ୍ଚସଖା ଭାବାଦର୍ଶ ଦୃଷ୍ଟିରୁ ଏ ଗ୍ରନ୍ଥଗୁଡ଼ିକୁ ମୂଲ୍ୟାଙ୍କନ କଲେ ବାସ୍ତବ ସତ୍ୟର ପରିଚୟ ମିଳିପାରିବ ।

## କେତେକ ଗ୍ରନ୍ଥର ସଂକ୍ଷିପ୍ତ ପରିଚୟ

**୧-ଅକଳିତ ସଂହିତା-** ଏହି ଗ୍ରନ୍ଥଟି ସାତ ଅଧ୍ୟାୟ ବା ସାତ ପଟଳ ବିଶିଷ୍ଟ । ଶିଷ୍ୟ ରାମଦାସ ପଚାରିଥିବା ବିଭିନ୍ନ ତତ୍ତ୍ୱମୂଳକ ପ୍ରଶ୍ନର ଉତ୍ତର ଦେଇଛନ୍ତି ଗୁରୁ ଅଚ୍ୟୁତାନନ୍ଦ । ତେଣୁ ଏହା କଥୋପକଥନ ଶୈଳୀରେ ରଚିତ ହୋଇଛି । ଏଥିରେ ହରିନାମ, ବତିଶ ଅକ୍ଷର ମହାମନ୍ତ୍ର, ଗାୟତ୍ରୀ ମନ୍ତ୍ର, ଶୂନ୍ୟ ସାଧନା, ଅବାଡ଼ ସାଧନା ଓ ଜ୍ୟୋତି ଦର୍ଶନ ସଂପର୍କୀୟ ଗୂଢ଼ ତତ୍ତ୍ୱ କଥା ବର୍ଣ୍ଣନା କରାଯାଇଛି । ଅବାଡ଼ ସାଧନା ସଂପର୍କରେ କୁହାଯାଇଛି ଯେ, ପଞ୍ଚଭୂତକୁ ଏକ କଲେ ଭାଲପଟରେ ଅବାଡ଼ ଖେଳିଯାଏ । ପ୍ରଥମ ଅବସ୍ଥାରେ ଜାଲବାଡ଼ ପରି ଓ ପରେ ମୃଗତୃଷ୍ଣା ସଦୃଶ ଦେଖାଦିଏ । ଏଥିରେ ଅନେକ ବିନ୍ଦୁ ଥାଏ । କିନ୍ତୁ ଯେତେବେଳେ ସବୁ ବିନ୍ଦୁ ଏକତ୍ର ହୁଏ, ସେତେବେଳେ ଏହା ସୂର୍ଯ୍ୟମଣ୍ଡଳ ପରି ଦେଖାଯାଏ । ତା'ପରେ ପଞ୍ଚକଳା ହ୍ରାସ ପାଇବା ମାତ୍ରେ ପ୍ରଥମ ବେଢ଼ ଶୁକ୍ଳବର୍ଣ୍ଣ, ତା'ପରେ କୁଙ୍କୁମ, ତା'ପରେ ହରିଦ୍ରା, ତା'ପରେ ନୀଳୋତ୍ପଳ ବର୍ଣ୍ଣଧାରଣ କରେ । ଏଥି ଉତ୍ତାରୁ ନିଜେ ନୟନାନନ୍ଦ ବାଳମୂର୍ତ୍ତିରେ ବିରାଜମାନ କରନ୍ତି । ଏହି ଜ୍ୟୋତିର୍ମୟ ମୂର୍ତ୍ତିକୁ ଦର୍ଶନ କଲେ ସମସ୍ତ ପ୍ରକାର ବିପଦରୁ ରକ୍ଷା ମିଳେ । ଯେଉଁ ସାଧକ ଅବାଡ଼ ଦର୍ଶନ କରିପାରେ ନାହିଁ, ତା'ପ୍ରତି ବିଷ୍ଣୁ ବିମୁଖ ବୋଲି ବୁଝିବାକୁ ହେବ । ଗ୍ରନ୍ଥରେ କବି ନିଜର ପରିଚୟ ଦେବାକୁ ଯାଇ କହିଛନ୍ତି-

*"ତିଳ୍ପୋଇ ତଟ ନେମାଳ ଗ୍ରାମରେ*
*ନିବାସ ହୋଇଛି ବଟପୁଞ୍ଜରେ ।"*

**୨- ଅକାଶେ ବ୍ରହ୍ମଯନ୍ତ୍ର ନିରୂପଣ-** ବ୍ରହ୍ମଜ୍ଞାନମୂଳକ ଏହି କ୍ଷୁଦ୍ର ରଚନାରେ ଗୁରୁ କିପରି ଶିଷ୍ୟଙ୍କୁ ଯନ୍ତ୍ରଭେଦ ତତ୍ତ୍ୱ ଶିଖାଇବେ ସେ ବିଷୟ ବର୍ଣ୍ଣିତ ହୋଇଛି । ଶରୀର ମଧ୍ୟରେ ଥିବା ବିଭିନ୍ନ ଚକ୍ର, ବର୍ଣ୍ଣ, ବାୟୁ, ବୀଜ ଓ ତାହାର ମନ୍ତ୍ର ବିଶଦ ଭାବରେ ଏଥିରେ ବର୍ଣ୍ଣିତ । ଶ୍ରୀଜଗନ୍ନାଥଙ୍କ ତତ୍ତ୍ୱ ମଧ୍ୟ ସୁନ୍ଦର ଭାବରେ ଗ୍ରନ୍ଥରେ ପ୍ରକାଶ ପାଇଛି ।

*"ଯେହି ଜଗନ୍ନାଥ ସାକ୍ଷାତେ ଅନାଦି ଅବ୍ୟକ୍ତ କରୁଣା ରାଶି*
*ତପନ ପ୍ରକାର ଶ୍ରୀମହାପ୍ରସାଦ ସେବନ କରନ୍ତି ବସି ।*
*ପତିତପାବନ ପତାକା ଉଡ଼ଇ ଚକ୍ର ପରେ ନିରନ୍ତରେ*
*ଅଣାକାର ବ୍ରହ୍ମ ଆକାରେ ବସିଣ ଚାଳିଛ ଏକ ଯନ୍ତ୍ରରେ ।"*

ମହାପ୍ରଭୁ ଶ୍ରୀ ଜଗନ୍ନାଥ ନନ୍ଦିଘୋଷ ରଥରେ ବିଜେ କରି ଜଗତ ରୂପକ ଯନ୍ତ୍ରକୁ ଚଳାଉଛନ୍ତି । ଯନ୍ତ୍ର, ମନ୍ତ୍ର ଓ ତନ୍ତ୍ର ବିଧି ଏହି ନାଟକରେ ପ୍ରକାଶ ଲାଭ କରିଛି । ଶେଷରେ କବି ଭଣିତାରେ କହିଛନ୍ତି-

*"ସାମର ଅଚ୍ୟୁତ ପଦ୍ମପାଦେ ଚିତ୍ତ ପଦ୍ମବନରେ ନିବାସ*
*ଯନ୍ତ୍ର-ମନ୍ତ୍ର-ତନ୍ତ୍ର ହୋଇଲା ସଂପୂର୍ଣ୍ଣ ଭଣଇ ଅଚ୍ୟୁତ ଦାସ ।"*

ଉକ୍ତ ରଚନାଟି 'ଅଣାକାର ବ୍ରହ୍ମଯନ୍ତ୍ର' ନାମରେ ମଧ ପ୍ରଚଳିତ ଅଛି । ଅଚ୍ୟୁତାନନ୍ଦ ଶ୍ରୀକୃଷ୍ଣଙ୍କୁ ଧ୍ୟାନ କରି ମନ୍ଦିର ମଧ୍ୟରେ ଶୟନ କରିଥିବା ସମୟରେ ଭଗବାନ ତାଙ୍କୁ ଗୀତା ଲେଖିବା ପାଇଁ ଆଦେଶ ଦେଇଥିଲେ । ତେଣୁ ସେ 'ଅଣାକାର ବ୍ରହ୍ମଗୀତା' ରଚନା କରିଥିଲେ ।

**୩- ଅଣାକାର ସଂହିତା-** କବି ଏହି ଗ୍ରନ୍ଥରେ ଅଣାକାର ବ୍ରହ୍ମଙ୍କ ସ୍ୱରୂପ ବର୍ଣ୍ଣନା କରିଛନ୍ତି । ପୁଣି ଏହି ସ୍ୱରୂପ ବର୍ଣ୍ଣନା କରିବା ପାଇଁ ସେ ଅବ୍ୟୟ - ଅବିନାଶୀ ବ୍ରହ୍ମଙ୍କର ଆଶୀର୍ବାଦ କାମନା କରିଛନ୍ତି । ଅଣାକାରଙ୍କ ବିଷୟରେ କବି ଲେଖିଛନ୍ତି-

*"ଅନାମ ଅଣଅକ୍ଷର ବୋଲି ଜାଣ*
*ନାମ ବଳୁ ବୋଲି ତାଙ୍କୁ*
*ଅନାଦି ଅନନ୍ତ ଅବ୍ୟକ୍ତ ନାମ*
*ନ ଜାଣି ବହି ପରକୁ ।*
*ଅଣାକାରଟି ଆକାରରେ ମିଶିଲେ*
*ବହିଲୁ ରୂପ ପ୍ରକାଶ*
*ଅନାମିକାକୃତି ଅଣାକାର ବୋଲି*
*ଆକାରୁ ରୂପ ପ୍ରକାଶ ।"*

ଅଚ୍ୟୁତାନନ୍ଦ ୩୬ ସଂହିତା, ୭୮ ଗୀତା, ୨୭ ବଂଶାନୁଚରିତ, ୨୨ ଉପବଂଶାନୁଚରିତ, ୧୦୦ ଭବିଷ୍ୟତ ମାଳିକା, ପଦ୍ୟ ପଦ୍ୟାବଳୀ ସହିତ ଲକ୍ଷେ ଗ୍ରନ୍ଥ ରଚନା କରିଥିବା କଥା ଏହି ଗ୍ରନ୍ଥରୁ ଜଣାପଡ଼େ ।

**୪- ଅନନ୍ତ ଗୋଇ-** ଚକ୍ରକେଳି ରାଗରେ ରଚିତ ଉକ୍ତ ଗ୍ରନ୍ଥର ଅନ୍ୟ ନାମ **'ଆଗତ ଭବିଷ୍ୟ'** । ଏହାର ସମୁଦାୟ ପଦସଂଖ୍ୟା ତିନିଶତ । କଳେବର ଦୃଷ୍ଟିରୁ ଗ୍ରନ୍ଥଟି କ୍ଷୁଦ୍ର ହେଲେ ହେଁ ଏହାର ଉପାଦେୟତା ଯଥେଷ୍ଟ ରହିଛି ।

ଗ୍ରନ୍ଥ ଆରମ୍ଭରେ କବି ଶ୍ରୀଜଗନ୍ନାଥଙ୍କର ବନ୍ଦନା କରି ତାଙ୍କୁ 'ଇଷ୍ଟ ଦେବତା' ରୂପେ ସ୍ୱୀକାର କରିଛନ୍ତି ।

*''ଗୁଣଗୁଣି ନ ଅଣ୍ଟେ ରାତ୍ର ଦିନ*
*ଯେଣୁ ଇଷ୍ଟ ମୋର ଜଗଜ୍ଜୀବନ ।*
*ସେହି ଜୀବନକୁ ରଖିଣ ଆଶା*
*ଦୀନ ଅଚ୍ୟୁତିର ନପୂରେ ଆଶା ।''*

ଅଚ୍ୟୁତାନନ୍ଦଙ୍କର ଦୁଇଶିଷ୍ୟ ରାମଦାସ ଓ ଧରମୁ ଦାସ ଗୁରୁଙ୍କ ନିକଟକୁ ଯାଇ ତାଙ୍କୁ କଳିଯୁଗର କଳୁଷିତ କର୍ମ ସଂପର୍କରେ ନାନା ପ୍ରଶ୍ନ ପଚାରିଛନ୍ତି । ଗୁରୁ ପଚିଶ ତତ୍ତ୍ୱ ଓ ଅବଧୂତ ଦୀକ୍ଷା ସଂପର୍କରେ ସେମାନଙ୍କୁ ବୁଝାଇବା ସଙ୍ଗେ ସଙ୍ଗେ କଳିଯୁଗ ଅନୀତି ପ୍ରସଙ୍ଗ ମଧ୍ୟ କହିଛନ୍ତି । କଳିଯୁଗରେ ଶିଷ୍ୟମାନେ ଗୁରୁଙ୍କ ପାଖକୁ ନଯାଇ ଗୁରୁମାନେ ଶିଷ୍ୟଙ୍କ ପାଖକୁ ଯିବେ । କାହାରି ହିତାହିତ ଜ୍ଞାନ ରହିବ ନାହିଁ ଓ ସମସ୍ତେ ଅପକର୍ମ କରିବେ । ତେଣୁ କଳିଯୁଗରେ ଏସବୁ ଅପକର୍ମରୁ ରକ୍ଷା ପାଇବା ପାଇଁ ହଂସ ଭଜନ ତଥା ଶୂନ୍ୟ ଭଜନ କରିବା ପାଇଁ ଗୁରୁ ଉପଦେଶ ଦେଇଛନ୍ତି । ସେସବୁ ସହିତ ପିଣ୍ଡ ବ୍ରହ୍ମାଣ୍ଡ ତତ୍ତ୍ୱ ଭଲ ଭାବରେ ଜାଣିଛନ୍ତି ବୋଲି ଶିଷ୍ୟଙ୍କୁ ବୁଝାଇଛନ୍ତି । ସେ ନିଜକୁ ତାତ୍ତ୍ୱିକ ଗୁରୁ ଓ ପଞ୍ଚଭୂତ ତତ୍ତ୍ୱଜ୍ଞାତା ଭାବରେ ମଧ୍ୟ ପ୍ରକାଶ କରିଛନ୍ତି ।

*''ମୁହିଁ ପଞ୍ଚଭୂତ ଚତୁର ଗୁଣ*
*କୀଟ ପତଙ୍ଗ ସ୍ଥାବର ଜଙ୍ଗମ ।*
*ଜ୍ଞାନ ବିଜ୍ଞାନଟି ମୋହର ସେହି*
*ଦୀନ ଅଚ୍ୟୁତି ମୁଁ କହୁ ଅଛଇ ।''*

ଭବିଷ୍ୟତରେ କଳାପାହାଡ଼ ଆଦି ଦୁର୍ଜନମାନେ ଦେଶରେ ନାନାପ୍ରକାର ବିପ୍ଳାତ କରିବା କଥା ଗ୍ରନ୍ଥରେ ବର୍ଣ୍ଣିତ ହୋଇଛି । ଏପରି ଦୁର୍ଗତିରୁ କିପରି ଦେଶକୁ ରକ୍ଷା କରିବାକୁ

ହେବ, ସେଥିପାଇଁ ଅଚ୍ୟୁତାନନ୍ଦ ଆହ୍ୱାନ ଦେଇଛନ୍ତି । ସରଳ ସାବଲୀଳ ଭାଷାରେ ରଚିତ ଏହି ଗ୍ରନ୍ଥଟି ବେଶ ହୃଦୟସ୍ପର୍ଶୀ ।

**୫- ଅବାଡ଼ ସଂହିତା-** ଏହା ଏକ କ୍ଷୁଦ୍ର ରଚନା । ଏଥିରେ ଅବାଡ଼ ସାଧନା ଅବସ୍ଥାରେ ସାଧକ ଯାହା ଅନୁଭବ କରେ ସେକଥା ବର୍ଣ୍ଣିତ ହୋଇଛି ।

*''ପ୍ରାଣ ପବନକୁ ଉର୍ଦ୍ଧ୍ୱକୁ ଟେକ*
*ମୂର୍ଦ୍ଧନୀ ମଣ୍ଡଳେ କର ହୋ ଠୁଳ ।*
*ଅନହତ ଧ୍ୱନି ପ୍ରକାଶ ହେବ*
*ଚିତା ମଧ୍ୟରେ କରିଥାଅ ଠାବ ।*
*ବ୍ରହ୍ମାଣ୍ଡ ଫୁଟି କରୁଅଛି ନାଦ*
*ଅଟି ସୁଲଳିତ ବଂଶୀ ଶବଦ ।''*

ଜଟିଳ ଯୋଗ ସାଧନା ତତ୍ତ୍ୱକୁ କବି ସରଳ ଭାଷାରେ ପ୍ରକାଶ କରିଛନ୍ତି ।

**୬- ଅମର କୁମର ସଂହିତା-** ଉକ୍ତ ଗ୍ରନ୍ଥକୁ କେହି କେହି ଆଲୋଚକ ଏକାଧିକ ସ୍ୱତନ୍ତ୍ର ଗ୍ରନ୍ଥ ଭାବରେ ଗ୍ରହଣ କରିଛନ୍ତି । ବିଭିନ୍ନ ସୂତ୍ରରୁ ପ୍ରାପ୍ତ ଗ୍ରନ୍ଥର ନାମଗୁଡ଼ିକ ହେଲା- ଅମର ସଂହିତା, ଅମର କୋଷ, କୁମର ସଂହିତା ଓ କୁମର ଗୀତା ।

ଓଁକାର ତତ୍ତ୍ୱ ଓ ଯୋଗ ସାଧନା କିପରି ମୃତ୍ୟୁକୁ ନିୟନ୍ତ୍ରିତ କରେ ତାହା ଉକ୍ତ ଗ୍ରନ୍ଥରେ ବିଶଦ ଭାବରେ ବର୍ଣ୍ଣିତ ହୋଇଛି । ଅଚ୍ୟୁତାନନ୍ଦ ଓ ନିରାକାରଙ୍କ ମଧ୍ୟରେ କଥୋପକଥନ ଛଳରେ ସ୍ଥାନ ପାଇଛି ବେଦର ଜନ୍ମ, ଓଁକାର ତତ୍ତ୍ୱ, ଯୋଗ ସାଧନା ଓ ଶରୀର ଭେଦ ପ୍ରସଙ୍ଗ । ନିରାକାର କହିଛନ୍ତି ଯେ, ଶୂନ୍ୟ ସ୍ୱରୂପୀ ଓଁକାରରୁ ବ୍ରହ୍ମା, ବିଷ୍ଣୁ, ମହେଶ୍ୱରଙ୍କର ସୃଷ୍ଟି । ଏହି ଓଁକାର ହେଉଛି ଜ୍ଞାନର ବାସସ୍ଥାନ ଓ ସୃଷ୍ଟିର ମୂଳାଧାର । ଓଁକାର ପ୍ରାପ୍ତି ପାଇଁ 'ହ'କାର ସାଧନାର ଆବଶ୍ୟକତା ରହିଛି । କାରଣ ଏହି 'ହ'କାର ହେଉଛି ପବନ । ତେଣୁ ଅଚ୍ୟୁତଙ୍କ ପ୍ରଶ୍ନର ଉତ୍ତରରେ ନିରାକାର କହିଛନ୍ତି-

*''ଓଁକାର ଅଟଇଟି ଶୂନ୍ୟ । ହକାର ଅଟଇ ପବନ ।''*

ପୁଣି- *''ଜ୍ଞାନର ଘର ସେ ଓଁକାର । ଅଣ ଅକ୍ଷରୁ ସେ ବାହାର ।''*

ଶରୀର ଭେଦ ସଂପର୍କୀୟ ତାତ୍ତ୍ୱିକ ଆଲୋଚନା କରି କବି କହିଛନ୍ତି ଯେ, ଏହି ଶରୀର ମଧ୍ୟରେ ଅଷ୍ଟକୀଳାର ସ୍ଥିତି । କଳିଙ୍ଗରେ ଦୁଇଟି କୀଳା । ତା'ଉପରେ ଗୁହ୍ୟକୀଳା, ନାଭିରେ ଗୋଟିଏ କୀଳା, କଣ୍ଠରେ ଗୋଟିଏ କୀଳା, ଲଲାଟରେ ଦୁଇଟି କୀଳା ଓ ସର୍ବଶେଷ କୀଳାଟିର ସ୍ଥିତି ନାସିକାରେ- ଯାହାର ନାମ ବ୍ରହ୍ମକୀଳା । ଲଲାଟ ସ୍ଥିତ ଦୁଇକୀଳା ମଧ୍ୟରେ ବୃନ୍ଦାବନ ଅବସ୍ଥିତ, ଯେଉଁଠାରେ ରାଧାକୃଷ୍ଣ ନିତ୍ୟ ବିହାର କରୁଛନ୍ତି । ଉକ୍ତ ଅଷ୍ଟକୀଳା ଯୋଗୁଁ ଏ ଶରୀର ସମ୍ଭବ ହୋଇପାରିଛି । କୀଳାଗୁଡ଼ିକ ଗୋଟିକ ପରେ ଗୋଟିଏ ଯେତେବେଳେ ଉପୁଡ଼ି ପଡ଼େ ସେତେବେଳେ ଶରୀର ମଧ୍ୟରେ ପ୍ରଳୟ ସୃଷ୍ଟି ହୁଏ । ତଳ କୀଳାଟି ପ୍ରଥମେ ଉପୁଡ଼ିବା ମାତ୍ରେ ସନ୍ନିପାତ ଘୋଟି ଜୀବାତ୍ମା ଯେଉଁ ସୁଷୁମ୍ନା ମଧ୍ୟ ଦେଇ ଲଲାଟ ଉପରେ ପହଞ୍ଚେ । ତା'ପରେ ଲଲାଟ କୀଳାଟି ଉପୁଡ଼ି ପଡ଼େ ଓ ପିଣ୍ଡରେ ପ୍ରଳୟ ସୃଷ୍ଟି ହୁଏ । ଏହି କୀଳା ଉପୁଡ଼ିବା ଫଳରେ ଜୀବାତ୍ମା ସହିତ ପରମାତ୍ମାର ମିଳନ ଘଟେ ଓ ଏଥିପାଇଁ କଷ୍ଟସାଧ୍ୟ ବାୟୁ ସାଧନାର ଆବଶ୍ୟକତା ରହିଛି । ଗ୍ରନ୍ଥରେ ବାୟୁ ସାଧନାର ବିଶଦ ବ୍ୟାଖ୍ୟା କରାଯାଇଛି ।

**୭- ଅଷ୍ଟଗୁଜରୀ-** ରାମକେରୀ ବୃତ୍ତରେ ରଚିତ ଆଠଟି ଗୀତ ଏଥିରେ ସନ୍ନିବେଶିତ ହୋଇଥିବାରୁ ରଚନାଟିର ନାମ 'ଅଷ୍ଟଗୁଜରୀ' ରଖାଯାଇଛି । ଭକ୍ତ ଓ ଭଗବାନଙ୍କର ନିବିଡ଼ ସଂପର୍କ ପ୍ରସଙ୍ଗକୁ ନେଇ ରଚନାଟି ସମୃଦ୍ଧ । ଯୁଗେଯୁଗେ ଭକ୍ତ ଆକୁଳ ଆବେଦନ କରି ଭଗବାନଙ୍କ ନିକଟରେ ନିଜକୁ ଆତ୍ମ ସମର୍ପଣ କରି ଦେଇଛି ଓ ନାନା ପ୍ରକାର ବିପଦରୁ ଉଦ୍ଧାର କରିବା ପାଇଁ ପ୍ରଭୁଙ୍କୁ ପ୍ରାର୍ଥନା ମଧ୍ୟ କରିଛି । ଭଗବାନ ମଧ୍ୟ ଭକ୍ତର ଦୁଃଖ ସହି ନପାରି ତାକୁ ଯେପରି ବିପଦରୁ ଉଦ୍ଧାର କରିଛନ୍ତି, ତାହାର ଭୂରିଭୂରି ପ୍ରମାଣ ପୁରାଣମାନଙ୍କରେ ରହିଛି । ଅଚ୍ୟୁତାନନ୍ଦ ସେସବୁ ଭକ୍ତଙ୍କ କାହାଣୀ ବର୍ଣ୍ଣନା କରିଛନ୍ତି ଏହି ଗ୍ରନ୍ଥରେ । ତାଙ୍କ ମତରେ-

*''ଭକ୍ତ ତୁମ୍ଭ କିସ କରିବ ଭକ୍ତ ବୋଲାଉ ଅଛି*
*ଭକ୍ତ ଯେଉଁ ନିଳା ହରିନାମକୁ ତୁଟ ପଥରେ ଯାଅି ।*
*ଭକ୍ତ ଦେଖାଇଲା ତୁମ୍ଭକୁ ତନୁ ହେଲି ରହିଚି*
*ଭିତରେ ଭୃତ୍ୟ ଅଛିଭୃତ୍ୟ ଜଣେ ବୋଲି ଅଚ୍ୟୁତ ।''*

କବି ନମ୍ରତାର ସହିତ ନିଜକୁ ଦୀନ ଓ ଭକ୍ତର ଭୃତ୍ୟର ଭୃତ୍ୟ ବୋଲି ପ୍ରକାଶ କରିଛନ୍ତି । ସେ ନିଜେ ଜଣେ ଭକ୍ତ ହୋଇଥିଲେ ମଧ୍ୟ ଏ ମାୟା ସଂସାର ରୂପକ କୂପରେ ପଡ଼ି ଛଟପଟ ହେଉଛନ୍ତି । ଏଥିରୁ ଉଦ୍ଧାର ପାଇବା ପାଇଁ ସେ ଭଗବାନଙ୍କୁ କାତର ପ୍ରାର୍ଥନା

କରିଛନ୍ତି । ସରଳ ତଥା ସାବଲୀଳ ଭାଷାରେ ପ୍ରଣୀତ ରଚିତ ହୋଇଥିଲେ ହେଁ ବହୁ ତାତ୍ତ୍ୱିକ ଆଲୋଚନା ଦ୍ୱାରା ପରିପୁଷ୍ଟ ହୋଇଛି ।

୮ = **ଆଗତ ଭବିଷ୍ୟ ମାଳିକା**= ଓଡ଼ିଶାରେ ଅଚ୍ୟୁତାନନ୍ଦଙ୍କ ନାମ ଭଣିତା ଥାଇ ଶତାଧିକ ମାଳିକା ପ୍ରଚଳିତ ଅଛି । ସାଧାରଣ ଲୋକେ ମହାପୁରୁଷ ଅଚ୍ୟୁତାନନ୍ଦଙ୍କୁ ଆଗତ ଭବିଷ୍ୟ ପ୍ରବକ୍ତା ଭାବରେ ଗ୍ରହଣ କରିଥାନ୍ତି । କୌଣସି ପ୍ରକାର ବିପଦ ଆପଦ, ଅପକର୍ମ ଅଥବା ଅଘଟଣ ଘଟିଲେ ତାଙ୍କ ମାଳିକାରୁ ପଦ ଉଦ୍ଧାର କରି କଳିଯୁଗର ଅନୀତି କଥା ପ୍ରକାଶ କରିଥାନ୍ତି । କେବଳ ଅଚ୍ୟୁତାନନ୍ଦ କାହିଁକି ପଞ୍ଚସଖାଙ୍କ ମଧ୍ୟରୁ ପ୍ରତ୍ୟେକଙ୍କ ନାମରେ ପ୍ରଚଳିତ ବହୁ ମାଳିକା ଅତ୍ୟନ୍ତ ଲୋକପ୍ରିୟତା ହାସଲ କରିଛି । ଏଠାରେ ଓଡ଼ିଆ ମାଳିକା ସଂପର୍କରେ କେତୋଟି କଥା ଜାଣି ରଖିବା ଉଚିତ ।

୧୫୬୮ରୁ ୧୮୦୩ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ଆଫଗାନ, ମୋଗଲ ଓ ମରହଟ୍ଟାମାନଙ୍କ ମଧ୍ୟରେ ବାରମ୍ବାର ସଂଘର୍ଷ ଘଟି ସେମାନଙ୍କ ଦ୍ୱାରା ଓଡ଼ିଶା ଶାସିତ ହୋଇଛି । ଦୀର୍ଘ ଦୁଇଶହ ବର୍ଷରୁ ଊର୍ଦ୍ଧ୍ୱ ସମୟ ଧରି ଓଡ଼ିଶା ମାଟିରେ ଏମାନଙ୍କ ଦ୍ୱାରା ବହୁ ଲୋମହର୍ଷଣକାରୀ ଅତ୍ୟାଚାର ମୁଣ୍ଡ ଟେକି ଉଠିଛି । ଧନ ସଂପଦ ଲୁଣ୍ଠନ, ରକ୍ତପାତ, ଦେବଦେବୀ ମନ୍ଦିର ଧ୍ୱଂସ, ହିନ୍ଦୁ ରମଣୀମାନଙ୍କ ଉପରେ ଅକଥନୀୟ ପାଶବିକ ଅତ୍ୟାଚାର ଭଳି କୁତ୍ସିତ ଘଟଣାମାନ ସେସବୁର ଅଙ୍ଗବିଶେଷ । ସେଥିପାଇଁ ଏହି ସମୟ ଥିଲା ଓଡ଼ିଶାର ଜନସାଧାରଣଙ୍କ ପାଇଁ ଭୟ ସଂକୁଳ ଓ ବିପନ୍ନାପନ୍ନ । ସମାଜର ଏ ପ୍ରକାର ଦୂରାବସ୍ଥାକୁ ଲକ୍ଷ୍ୟ କରି କେତେକ ଧର୍ମଜ୍ଞ ପୁରୁଷ ତଥା ଚିନ୍ତାଶୀଳ କବିଗଣ ଲୋକଙ୍କୁ ମାଳିକା ମାଧ୍ୟମରେ ଚେତାବନୀ ଶୁଣାଇଛନ୍ତି । ଲୋକେ ଧୈର୍ଯ୍ୟହରା ନହୋଇ କିପରି ସେମାନଙ୍କ ମନରେ ଆସ୍ଥା ଓ ବିଶ୍ୱାସ ସୃଷ୍ଟିହେବ ସେଥିପାଇଁ ମାଳିକା ଜରିଆରେ ପ୍ରଚେଷ୍ଟା କରାଯାଇଛି ।

ଷୋଡ଼ଶ ଶତାବ୍ଦୀରୁ ମାଳିକା ରଚନା ପାଇଁ ଉପକ୍ରମ ହୋଇଥିଲେ ମଧ୍ୟ ଅଷ୍ଟାଦଶ ଶତାବ୍ଦୀରେ ଏହା ଚରମ ଅବସ୍ଥାରେ ପହଞ୍ଚିଛି । ଇତିହାସର ଉପାଦାନ ନେଇ ଲେଖକମାନେ ରଚନାରେ ଏପରି କୌଶଳ ଅବଲମ୍ବନ କରିଛନ୍ତି ଯାହା ଲୋକଙ୍କ ନିକଟରେ ତାଙ୍କୁ ଏକାନ୍ତ ଭାବରେ ବିଶ୍ୱାସୀ କରି ପାରିଛି । ଅତୀତରେ ଘଟିଥିବା ବହୁ ଗୁରୁତ୍ୱପୂର୍ଣ୍ଣ ଘଟଣାକୁ ଭବିଷ୍ୟତର ସଂକେତରେ କବି ପ୍ରକାଶ କରିଛନ୍ତି । ତା'ସହିତ ପୁଣି ଜନଶ୍ରୁତିରୁ ବହୁ କିମ୍ବଦନ୍ତୀ ସଂଯୋଜିତ ହୋଇଛି । ସେସବୁ ପାଠ କଲେ ପାଠକ ଅନୁଭବ କରିବ ଯେ ବାସ୍ତବରେ ଅତୀତରେ ଘଟିଥିବା ବହୁ ଘଟଣା ଏଥିରୁ ସତ୍ୟ ବୋଲି ପ୍ରମାଣିତ

ହୋଇଛି । ତେଣୁ ଭବିଷ୍ୟତ ପାଇଁ ଯାହା କୁହାଯାଇଛି ତାହା ନିଶ୍ଚେ ଦିନେ ନା ଦିନେ ଘଟିବ । କିନ୍ତୁ ପ୍ରକୃତରେ ଦେଖିବାକୁ ଗଲେ ମାଳିକାରେ ଯେତେ ଯାହା ଘଟଣା ସନ୍ନିବେଶିତ ହୋଇଥାଏ ସେସବୁ ଅତୀତର ଘଟଣା । କେବଳ ଭବିଷ୍ୟତ କାଳର ସଂକେତ ଦେଇ ବର୍ଣ୍ଣନା କରାଯାଇଛି ।

ଜଣକ ନାମରେ ଭଣିତା ଥିଲେ ମଧ୍ୟ ଅଧିକାଂଶ ମାଳିକା ଏକାଧିକ ବ୍ୟକ୍ତିଙ୍କ ଦ୍ୱାରା ରଚିତ । ସାଧାରଣତଃ ମାଳିକା ଭକ୍ତଙ୍କ ଦ୍ୱାରା ଲେଖାଯାଇଛି । ଗୁରୁଶିଷ୍ୟ ପରମ୍ପରାରେ ଗୁରୁ କେତେକାଂଶ ରଚନା କରିଯିବା ପରେ କାଳକ୍ରମେ ଶିଷ୍ୟମାନେ ସେଥିରେ ନିଜ ରଚନା ଯୋଗକରି ତାର କଳେବର ବୃଦ୍ଧି କରିଥାନ୍ତି । ଗୁରୁ ପଦାଶ୍ରିତ ଶିଷ୍ୟ ନିଜ ରଚନାକୁ ଗୁରୁଙ୍କ ନାମରେ ଭଣିତା କରିବାର ବଳିଷ୍ଠ ପରମ୍ପରା ପ୍ରାଚୀନ କାଳରୁ ଭାରତରେ ପ୍ରଚଳିତ ଅଛି । ଏ ଦୃଷ୍ଟିରୁ ଓଡ଼ିଆ ଭାଷାରେ ରଚିତ ବହୁ ମାଳିକା ଶିଷ୍ୟମାନଙ୍କ ଦ୍ୱାରା ରଚିତ ହୋଇ ଗୁରୁଙ୍କ ନାମରେ ଭଣିତା ହୋଇଛି ।

ମହାପୁରୁଷ ଅଚ୍ୟୁତାନନ୍ଦଙ୍କ ପ୍ରସିଦ୍ଧି ଯୋଗୁଁ ପରବର୍ତ୍ତୀ କାଳରେ ରଚିତ ବହୁ ମାଳିକା ତାଙ୍କ ନାମରେ ଭଣିତା କରାଯାଇଛି । କିନ୍ତୁ ସେସବୁ ମାଳିକାର ସ୍ରଷ୍ଟା ସେ ନୁହନ୍ତି । ଚଉତିଶା ନିୟମରେ ରଚିତ ଗୋଟିଏ ମାଳିକାରେ ବହୁ ଅପ୍ରାସଙ୍ଗିକ କଥା ଉଲ୍ଲେଖ ହୋଇଛି । ସେଥିରେ ଅଛି-

*"ଡାକି କହଇ ଅଚ୍ୟୁତି, ଡ଼ାକିଣୀ ଗୋଳ ଲଗାଇବେ କ୍ଷିତି ଯେ,*
*ଡ଼ରଘାତେ ଘରେ ପଶିବେଟି, ସୁଜନେ ହେ ।*
*ଢ଼ମାଳି ଅଚ୍ୟୁତ ବାଇ, ଢ଼ମାଳିଆ ହରବର ଲଗାଇ ଯେ,*
*ଢ଼ମେ ମରିବେ ଡରାଣି ହୋଇ, ସୁଜନେ ହେ ।"*

ଆଉ ଗୋଟିଏ ମାଳିକା ବିଷୟବସ୍ତୁ ଦୃଷ୍ଟିରୁ ବହୁ ଅର୍ବାଚୀନ । ସମ୍ଭବତଃ ଇଂରେଜ ଶାସନ ସମୟରେ କୌଣସି କବିଙ୍କ ଦ୍ୱାରା ଏହା ରଚିତ । ଏଥିରେ ଅଛି-

*"ରେଳଧାର ମହାନଦୀରେ ଯେବେ ହେବ ପ୍ରବେଶ*
*ଲୀଳା ନାନାପ୍ରକାରେ ଲାଗିଯିବ ଓଡ଼ିଶା ଦେଶ ।*
*ବନ୍ଦୋବସ୍ତ ହେବ ଓଡ଼ିଶା କର ଦେବେ ନିଜର*
*ସଂସାର ଉଚ୍ଛନ୍ନ ହୋଇବ ପୃଥ୍ୱୀ ହୋଇବ ଘୋର ।*

*ସକଳ ଗ୍ରାମରେ ସୁପଟ ଭାବେ ଲକଟ ଜନ*
*ସଂକ୍ଷେପି ଲକଟ ଖୋଳିବେ ଭେଟ ନୋହିବ କ୍ରମ ।*
*ହେତୁ ରଖିଥାଅ ଏଚିଜି ଜଙ୍କଡୀ ଲୀଳା ହେବାର*
*ପାମର ଅଚ୍ୟୁତ ଭାବୁଛି ଜଗନ୍ନାଥ ପୟର ।"*

ଅନ୍ୟ ଗୋଟିଏ ମାଳିକାରେ ଅଚ୍ୟୁତାନନ୍ଦଙ୍କ ପରବର୍ତ୍ତୀ ବହୁ ଐତିହାସିକ ତଥ୍ୟ ସ୍ଥାନ ପାଇଛି । ସେଥିରେ ଅଛି-

*"ଟିକିରା ଗୋହିରୀ ଯୁଦ୍ଧରୁ ପ୍ରଭୁ ହେବେ ବାହାର*
*ପାମର ଅଚ୍ୟୁତ କହଇ ଦୋଷ ନ ଧର ମୋର ।*
*ନବଲକ୍ଷ ସାଧୁ ପୂରିବେ ପୁରୀ ଠାରୁ କଟକ*
*ଭୁବନେଶ୍ୱରରେ ରହିବେ ନାଗାନ୍ତ ଯେ ଅନେକ ।*
*କଟକ କଟାରେ ଲକ୍ଷ୍ମୀ ଧରା ହୋଇବେ ପୁଣ*
*କାଠିଆବୋଦାରେ ସହସ୍ରେ ଦୁଷ୍ଟ ହେବେ ନିଧନ ।"*

ଐତିହାସିକ ତଥ୍ୟ ଓ ଭାଷା ଦୃଷ୍ଟିରୁ ଉକ୍ତ ମାଳିକାଟି ମହାପୁରୁଷ ଅଚ୍ୟୁତାନନ୍ଦଙ୍କ ରଚନା ନୁହେଁ ବୋଲି ମନରେ ସ୍ୱତଃ ଧାରଣା ଆସେ ।

ଅଧିକାଂଶ ମାଳିକାର ସ୍ରଷ୍ଟା ଅଚ୍ୟୁତାନନ୍ଦ ନହେଲେ ମଧ ତାଙ୍କ ନାମରେ ସେସବୁ ପ୍ରଚଳିତ ଅଛି । ସେ ତ୍ରିକାଳଦର୍ଶୀ ଥିବାରୁ ଆଗତ ଭବିଷ୍ୟତ କଥା ସବୁ ଜାଣି ପାରୁଥିଲେ- ଏହା ହିଁ ହେଉଛି ଲୋକଙ୍କର ତାଙ୍କ ପ୍ରତି ଦୃଢ଼ ବିଶ୍ୱାସ । ସେଥିପାଇଁ "ଆଗତ ଭବିଷ୍ୟ ଜାଣେ ଅଚ୍ୟୁତ" ଉକ୍ତିକୁ ଗ୍ରହଣ କରି ବିନା ଦ୍ୱିଧାରେ ତାଙ୍କ ନାମରେ ପ୍ରଚଳିତ ସମସ୍ତ ମାଳିକାକୁ ସ୍ୱୀକାର କରି ନେଇଛନ୍ତି ।

**୯- ଆଦିଲୀଳା ଗୀତା-** ଏଗାର ଅଧାୟ ବିଶିଷ୍ଟ ଏହି ଗ୍ରନ୍ଥରେ ପ୍ରଥମରୁ ତୃତୀୟ ଅଧାୟ ପର୍ଯ୍ୟନ୍ତ ମିଳିନାହିଁ । ଅବଶିଷ୍ଟ ଆଠଟି ଅଧାୟ ମଧ୍ୟରୁ ୪ର୍ଥ ଅଧାୟରେ ପଞ୍ଚଗୋପାଳ କଳିଯୁଗରେ ପଞ୍ଚସଖା ଭାବରେ ଜନ୍ମଗ୍ରହଣ କରିଥିବା କଥା ଉଲ୍ଲେଖ ଅଛି । ପଞ୍ଚମ ଅଧାୟରେ ଅନନ୍ତ ଗୋସାଇଁଙ୍କ ବର୍ଣ୍ଣନା ସହିତ ଗୋପାଳ ମନ୍ତ୍ର-ରାଧାକୃଷ୍ଣ ମନ୍ତ୍ର ଓ ପ୍ରେମଭକ୍ତି ତତ୍ତ୍ୱ ପ୍ରସଙ୍ଗ ରହିଛି । ନୀଳଗିରି ମାହାତ୍ମ୍ୟ ବର୍ଣ୍ଣନା ଏହି ଅଧାୟର ଅନ୍ୟତମ ବିଶେଷତ୍ୱ ।

*"ଶୁଣିବା ଗ୍ରନ୍ଥ ନାହିଁ ମିଳି ପ୍ରତିପଦେ*
*ତାହାର ବୃନ୍ଦାବନ ରହିଛି ଶୁଣପଦେ ।"*

ଷଷ୍ଠ ଅଧ୍ୟାୟରେ ବିଷ୍ଣୁ ପ୍ରାପ୍ତି ନିମନ୍ତେ ସତ୍ୟ, ଶାନ୍ତି, ଦୟା, କ୍ଷମା ଆଦି ଗୁଣର ଆବଶ୍ୟକତା କଥା କୁହାଯାଇଛି । ଉକ୍ତ ଅଧ୍ୟାୟରେ ସନ୍ନିବେଶିତ ଗଦ୍ୟାଂଶ ବିଶେଷ ପ୍ରଣିଧାନ ଯୋଗ୍ୟ । ଶ୍ରୀପୁରୁଷୋତ୍ତମ ଗୋପସ୍ଥାନ ବର୍ଣ୍ଣନା ପ୍ରସଙ୍ଗରେ ଅଛି-

"ଶ୍ରୀ ପୁରୁଷୋତ୍ତମ ଗୋପସ୍ଥାନେ, ଗୋପୀ ଜନ୍ମ ଭବନ, ସଦା ଆନନ୍ଦ, କିଶୋର କିଶୋରୀ ବିହାର ବନ, ଏମନ୍ତେ ଦ୍ୱାଦଶ ବନ । ଷୋଳସ୍ତମ୍ଭ ଗୋପାଳ, ମଧ୍ୟେ ଦ୍ୱାଦଶ ଗୋପାଳ, ଦ୍ୱାଦଶ ସପ୍ତ ଶାଖା, ଦ୍ୱାଦଶ ମାଧବ, ଦ୍ୱାଦଶ ମାସେ, ଦ୍ୱାଦଶ ଗୋପାଳ, ଦ୍ୱାଦଶ ସହସ୍ର ଶ୍ଳୋକ ।"

ସପ୍ତମ ଅଧ୍ୟାୟରେ ଶ୍ରୀକୃଷ୍ଣ ରୁକ୍ମିଣୀଙ୍କ କଥୋପକଥନ ମାଧ୍ୟମରେ କଳିଯୁଗରେ ଅନ୍ୟାୟ କ୍ରିୟାକଳାପର ବିସ୍ତୃତ ବର୍ଣ୍ଣନା ରହିଛି ।

*"ପାତ୍ରମନ୍ତ୍ରୀ ଅବିବେକୀ ହୋଇବେ । ପ୍ରଜା ଦୁଃଖ କେହି ନ ଶୁଣିବେ ।*
*ବିପ୍ରେ ମଦିରା ପଞ୍ଚକ ପିବେ । ବଳେ ଧରି ଆଣି କନ୍ୟା ଭୋଗିବେ ।*
*ବୈଷ୍ଣବମାନେ ଭ୍ରମ ଧରିବେ । କ୍ଷତ୍ରିମାନେ ଯେ ବଣିଜ କରିବେ ।"*

କିନ୍ତୁ କଳିଯୁଗରେ "ବୀରପଥ ଯୋଗୀ । ଉଭବ ପଥ ସଂଗୀ । ବଣବାସୀ ଯେତେ ସନ୍ନ୍ୟାସୀ । ଅନନ୍ତ କୋଟି ବୈଷ୍ଣବ ।" ଆଦି ତରିଯିବେ ବୋଲି ଉଲ୍ଲେଖ ଅଛି । ପରବର୍ତ୍ତୀ ଅଧ୍ୟାୟରେ ରାଧାକୃଷ୍ଣ ନାମତତ୍ତ୍ୱ, ହରେରାମ, ଶିଶୁବେଦ ତତ୍ତ୍ୱ, ଆଦିଶୂନ୍ୟ ନିତ୍ୟ ଓ ଅନନ୍ତ ପ୍ରଭୃତି ବହୁ ତାତ୍ତ୍ୱିକ ପ୍ରସଙ୍ଗ ଆଲୋଚିତ ହୋଇଛି । ଗ୍ରନ୍ଥର ଅଧିକାଂଶ ସ୍ଥାନରେ କବି ଲେଖିଛନ୍ତି, "ଗୁପତ ଲୀଳା ଏ ରସ ବାରିଧି ।" ସମାଲୋଚକ ଡ଼ଃ ବଂଶୀଧର ମହାନ୍ତି 'ଓଡ଼ିଆ ସାହିତ୍ୟର ଇତିହାସ'ରେ ଏହି ଗ୍ରନ୍ଥ ସଂପର୍କରେ ତାତ୍ତ୍ୱିକ ଆଲୋଚନା କରିଛନ୍ତି ।

**୧୦= ଉଦୟ କାହାଣୀ=** ପଞ୍ଚସଖାଙ୍କ ଜୀବନୀ ସଂପର୍କୀୟ ଏହା ଏକ ମୂଲ୍ୟବାନ ତଥ୍ୟଭିତ୍ତିକ ଗ୍ରନ୍ଥ । ଏଥିରେ ଶ୍ରୀଚୈତନ୍ୟଙ୍କ ଆବିର୍ଭାବ ପ୍ରସଙ୍ଗ ଓ ପଞ୍ଚସଖାଙ୍କ ଜନ୍ମକାହାଣୀ ବର୍ଣ୍ଣିତ ହୋଇଥିବାରୁ ଏହି ଗ୍ରନ୍ଥର ଭୂମିକା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । 'ଉଦୟ କାହାଣୀ' ଗ୍ରନ୍ଥରେ ଥିବା ତଥ୍ୟକୁ ଭିତ୍ତିକରି ଆଲୋଚକମାନେ ପଞ୍ଚସଖାଙ୍କ ଜନ୍ମ ସମୟ ନିରୂପଣ

କରିଛନ୍ତି । ତଦନୁଯାୟୀ ଅଚ୍ୟୁତାନନ୍ଦ ହେଉଛନ୍ତି ସେମାନଙ୍କ ମଧ୍ୟରେ ଜ୍ୟେଷ୍ଠ । ଅଚ୍ୟୁତାନନ୍ଦ ରାମ, ଧର୍ମ୍ମ, ଭରତ, ଯାଦବ, ବଂଶ, ଗୋବିନ୍ଦ, ଆନନ୍ଦ, ଗୋବର୍ଦ୍ଧନ ମିଶ୍ର ପ୍ରମୁଖ ଭକ୍ତଗଣଙ୍କ ଗହଣରେ ଧର୍ମଚର୍ଚ୍ଚା କରୁଥିବା ସମୟରେ ଶିଷ୍ୟ ରାମଦାସ ପଞ୍ଚସଖାଙ୍କ ଯୁଗାବତାର ସଂପର୍କରେ ପ୍ରଶ୍ନ ପଚାରିଛନ୍ତି । ଉତ୍ତରରେ ଅଚ୍ୟୁତାନନ୍ଦ କହିଛନ୍ତି, ''ଶ୍ରୀକୃଷ୍ଣଙ୍କ ଲୀଳା ପ୍ରକାଶ କରିବା ନିମନ୍ତେ ସେମାନଙ୍କର ଆବିର୍ଭାବ ଘଟିଛି । ସେମାନେ ଭିନ୍ନ ଭିନ୍ନ ପାଞ୍ଚଟି କୁଳରେ ଜନ୍ମ ଗ୍ରହଣ କରିଥିଲେ ହେଁ ବାସ୍ତବରେ ସେମାନେ ହେଉଛନ୍ତି ବୈଷ୍ଣବ ଓ ଭଗବାନଙ୍କର ପାଦପଦ୍ମରେ ସେବା କରିବା ହେଉଛି ସେମାନଙ୍କର ପ୍ରଧାନ ଉଦ୍ଦେଶ୍ୟ ।

ପଞ୍ଚସଖାଙ୍କ ବଂଶ, ଗୁରୁ, ମନ୍ତ୍ର ଓ ତିଳକ ସଂପର୍କରେ ମଧ୍ୟ ଏ ଗ୍ରନ୍ଥରେ ସୂଚନା ପ୍ରଦାନ କରାଯାଇଛି । ପ୍ରତ୍ୟେକ ''ହରେରାମ କୃଷ୍ଣ'' ମନ୍ତ୍ର ଭଜନ କରୁଥିବା ଏଥିରୁ ଜଣାଯାଏ । ନିଜ ସଂପର୍କରେ ଅଚ୍ୟୁତାନନ୍ଦ କୁହନ୍ତି-

*''ଅଚ୍ୟୁତ ମୁହିଁ ଅହୋ ଜୁଳ ଜାତ*
*ନିମାନୁଜ ପ୍ରଭୁ ସଂପ୍ରଦାକୁତ ।*
*ନାସା ଅଗ୍ର ଠାରୁ କେଶ ପର୍ଯ୍ୟନ୍ତ*
*ହରି ମନ୍ଦିର ତିଳକ ଶୋଭିତ ।''*

ପଞ୍ଚସଖାମାନେ ସତ୍ୟଯୁଗରେ ବ୍ରାହ୍ମଣ, ତ୍ରେତୟାରେ କ୍ଷତ୍ରିୟ, ଦ୍ୱାପରରେ ବୈଶ୍ୟ ଓ କଳିଯୁଗରେ ଶୂଦ୍ର ହୋଇ ଜନ୍ମଗ୍ରହଣ କରିଥିଲେ । କୌଣସି ପ୍ରକାର ସାନବଡ଼ ଭେଦଭାବ ନଥାଇ ସେବା କରିବା ହେଉଛି ସେମାନଙ୍କର ଉଦ୍ଦେଶ୍ୟ । ଶୂଦ୍ରମାନେ ଅନ୍ୟର ସେବାକରି ସନ୍ତୋଷ ଲାଭ କରିଥାନ୍ତି । ସେଥିପାଇଁ ପଞ୍ଚସଖା ଶୂଦ୍ର ଭାବରେ ନିଜର ପରିଚୟ ପ୍ରଦାନ କରି ସମାଜରୁ ବ୍ରାହ୍ମଣମାନଙ୍କର ଆଧିପତ୍ୟ ବିଲୋପ କରିବା ପାଇଁ ଚେଷ୍ଟା କରିଛନ୍ତି । କବି ଅଚ୍ୟୁତାନନ୍ଦ ସ୍ପଷ୍ଟ ଭାବରେ କହିଛନ୍ତି-

*''ସାନ ହେବାକୁ ଯେ ଆମ୍ଭରି ମନ*
*ତହୁଁ ଶୂଦ୍ରକୁ ଯେ ନ ମଣୁ ଆନ ।*
*ଶୁଣ ରାମଚନ୍ଦ୍ର ଗୋପ କୁମର*
*ସେବା ଆମ୍ଭର ଶ୍ରୀକୃଷ୍ଣ ପୟର ।*
*ତହୁଁ ପଞ୍ଚସଖା ଶୂଦ୍ର ହୋଇଲୁ*
*ଜ୍ୟେଷ୍ଠ କନିଷ୍ଠ ବାରି ନ ପାରିଲୁ ।''*

ସରଳ ଓ ସାବଲୀଳ ଭାଷାରେ ରଚିତ ଏହି ଗ୍ରନ୍ଥରୁ ପଞ୍ଚସଖାଙ୍କ ଧର୍ମଦର୍ଶନ ସଂପର୍କୀୟ ବହୁ ତତ୍ତ୍ୱ ମିଳିଥାଏ ।

**୧୧- ଉପଦେଶ ଟୀକା-** ଏହି ଗ୍ରନ୍ଥର ନାମ ସାମାନ୍ୟ ପରିବର୍ତ୍ତିତ ହୋଇ 'ଉପଦେଶ ଚକ୍ର ଗୀତା' ଓ 'ଉପଦେଶ ତତ୍ତ୍ୱସାର ଟୀକା' ଭାବରେ ପ୍ରଚଳିତ ଅଛି । ଏଥିରେ ଅଚ୍ୟୁତାନନ୍ଦ ତାଙ୍କର ଶିଷ୍ୟମାନଙ୍କୁ ନାନା ପ୍ରକାର ଧର୍ମ ଉପଦେଶ ପ୍ରଦାନ କରିବା ସଙ୍ଗେ ସଙ୍ଗେ ଦୀକ୍ଷା ପ୍ରଦାନ ସଂପର୍କୀୟ ନୀତି ନିୟମ ପ୍ରସଙ୍ଗ ବର୍ଣ୍ଣନା କରିଛନ୍ତି । ସେ ଏଥିରେ କହିଛନ୍ତି ଯେ, ପୁରୁଷ ଓ ସ୍ତ୍ରୀ ଉଭୟ ଦୀକ୍ଷା ଗ୍ରହଣ କରି ପାରିବେ । ଚୈତ୍ର, ଜ୍ୟେଷ୍ଠ, ଆଷାଢ଼ ଓ ମାର୍ଗଶୀର ମାସରେ ଦୀକ୍ଷା ଗ୍ରହଣ କରିବା ଉଚିତ ନୁହେଁ । ତୁଳସୀ ମୂଳ, ନିର୍ମଳ ଘର, ଗୋରୁ ଗୁହାଳ, ଓସ୍ତବୃକ୍ଷ ତଳ, ବାଲିକୂଦ, ବିଷ୍ଣୁ ମନ୍ଦିର, ବୈରାଗୀ ମଠ ଓ ନିଗମ ବନସ୍ତ ପ୍ରଭୃତିକୁ ସେ ଦୀକ୍ଷା ଗ୍ରହଣର ଉପଯୁକ୍ତ ସ୍ଥାନ ଭାବରେ ସ୍ୱୀକାର କରିଛନ୍ତି । ଉକ୍ତ ଗ୍ରନ୍ଥରେ ତାଙ୍କର କେତେକ ପ୍ରଧାନ ଶିଷ୍ୟଙ୍କ ନାମ ଉଲ୍ଲେଖ କରାଯାଇଛି । ସେମାନଙ୍କ ମଧ୍ୟରେ ଅଛନ୍ତି ମୁକୁନ୍ଦ, ରାମ, ଅନନ୍ତ, ଉତ୍‌ଥାନ, ପବନ, ସୁଦାମ, ମଧୁ, ଗୋବିନ୍ଦ, ଆନନ୍ଦ, ଯାଦବ, ବୃନ୍ଦାବନ ଓ ମଥୁରୀ ।

**୧୨- କର୍ମ ସଂହିତା-** ଶୈବଧର୍ମ ସଂପର୍କୀୟ ଉକ୍ତ ଗ୍ରନ୍ଥଟି ବିଶେଷ ପ୍ରଣିଧାନ ଯୋଗ୍ୟ । ଦିନେ ଉମା ଶିବଙ୍କୁ ଫାଲଗୁନ ମାସ ଶୁକ୍ଳପକ୍ଷ ଅଷ୍ଟମୀ ତିଥିରେ ଶୈବଧର୍ମୀମାନଙ୍କର ବିଭିନ୍ନ ସନ୍ତକର ଜନ୍ମ ପ୍ରସଙ୍ଗରେ ପ୍ରଶ୍ନ କଲେ । ସେସବୁ ମଧ୍ୟରେ ଅଛି ତାଳ, କଂସାଳ, ରବା, ଶଙ୍ଖ, ମର୍ଦ୍ଦଳ, ବୀଣା, ପଞ୍ଚୁଶର, ଭେରି, ଶିଂଘା, ବେଣୁ, ମୁରଲୀ, କାହାଳୀ, ଚକ୍ର, ଗଦା, ଡ଼ମ୍ବରୁ, ପିନାକ, କୋଦଣ୍ଡ, କମାଣ, ବିଭୂତି, ମୟୂରପକ୍ଷୀ, ରୁଦ୍ରାକ୍ଷ, କଟଟି ଓ ତୁଳସୀ ପ୍ରଭୃତି ରୁଦ୍ରାକ୍ଷ ଜନ୍ମ ପ୍ରସଙ୍ଗରେ କୁହାଯାଇଛି-

*''ବୋଲନ୍ତି ଇଶ୍ୱର ଶୁଣ ଗୋ କପାଳି*
*ରୁଦ୍ରାକ୍ଷ ଜାତ କଲେ ଦେବ ବନମାଳି ।*
*ଯେତେବେଳେ ବିଷ୍ଣୁ ସିନ୍ଧୁ ମନ୍ଥନ କଲେ*
*ସତ୍ୟ ସମୁଦ୍ରରୁ ଅମୃତ ଜନ୍ମିଲେ ।*
*ତାହାର ମଂଜିଯେ ଅଟଇ ରୁଦ୍ରାକ୍ଷ*
*ଲବଣ ସାଗରେ ହୋଇଲା ଅଲକ୍ଷ ।''*

ଶିବ ପାର୍ବତୀଙ୍କ କଥୋପକଥନ ସମୟରେ ଅଚ୍ୟୁତାନନ୍ଦ ସେଠାରେ ଉପସ୍ଥିତ ଥିଲେ ବୋଲି ଉଲ୍ଲେଖ କରିଛନ୍ତି ।

*''ମୂଢ଼ ଅଚ୍ୟୁତି ଥିଲା ସେହିଠାରେ, ଈଶ୍ୱର ପାର୍ବତୀଙ୍କ ଗୁପତ ବିଚାରେ ।''*

ଏହି କ୍ଷୁଦ୍ର ଗ୍ରନ୍ଥଟିର ଭାଷା ଷୋଡ଼ଶ ଶତାବ୍ଦୀର ଓଡ଼ିଆ ଭାଷା ବୋଲି ମନେହୁଏ ।

**୧୩- କଳିକଳ୍ପ ଗୀତା-** ଏହି ରଚନାଟି ମାଳିକାଧର୍ମୀ । ଶିଷ୍ୟ ରାମଚନ୍ଦ୍ରଙ୍କ ପ୍ରଶ୍ନର ଉତ୍ତର ଦେଉଛନ୍ତି ମହାପୁରୁଷ ଅଚ୍ୟୁତାନନ୍ଦ । ଆଗତ ଭବିଷ୍ୟ ଓ ବ୍ରହ୍ମଜ୍ଞାନର ମଧୁର ସମନ୍ୱୟ ସାଧିତ ହୋଇଛି ଏହି ଗ୍ରନ୍ଥରେ ।

କଳିଯୁଗରେ ଅନ୍ୟାୟ-ଅନୀତି କିପରି ସମାଜରେ ବ୍ୟାପିଯିବ ତାର ଏକ ସ୍ପଷ୍ଟ ଚିତ୍ର ପ୍ରଦାନ କରାଯାଇଛି । କବିଙ୍କ ମତରେ-

*''ମାତା ପିତାଙ୍କୁ ନ ମାନି ପୁତ୍ରମାନେ ଭିନେ ଭିନେ କରି ଘର*
*ଲକ୍ଷେ ଅରଜିଲେ ପକ୍ଷେ ନ ଅଣ୍ଟିବ ନିଶ୍ଚା ବଚନ ମୋହର ।*
*ଗେରସ୍ତ ଭାରିଯା ଭିନ୍ନେ ଭିନ୍ନେ ହୋଇ କେ କାହାକୁ ନ ମାନିବ*
*ଯଉବନ ବିକି ପେଟକୁ ପୋଷିବେ ଏକଥା ଅଟଇ ଧ୍ରୁବ ।''*

ଭବିଷ୍ୟତ ସମ୍ବନ୍ଧରେ ଅଚ୍ୟୁତାନନ୍ଦ ନିଜେ କହିଛନ୍ତି, ''ପର୍ବତ ଶିଖରେ ଫୁଟିବ କଇଁ, ଅଚ୍ୟୁତ ବଚନ ଆନ ନୋହଇ ।'' ପୁଣି ଗଡ଼ଜାତ ରାଜାମାନଙ୍କର ବିଲୋପ, ବଙ୍ଗ ବିଭାଜନ, ବିହାର ଓଡ଼ିଶା ଏକତ୍ରୀକରଣ, ଦିଲ୍ଲୀ ରାଜଧାନୀ ହେବା, କଳା ପାହାଡ଼ ଆକ୍ରମଣ, ନୂତନ ବନ୍ଦୋବସ୍ତ, ଦେଶରେ ବିଶୃଙ୍ଖଳା ହେତୁ ଜରୁରୀ ଅବସ୍ଥା ଜାରି ହେବା, ଦୁର୍ଭିକ୍ଷ ପଡ଼ିବା, କୃଷି ହେବ ନାହିଁ, ଉତ୍ତରରୁ ସୈନ୍ୟ ମାଡ଼ି ଆସିବେ, ଦମନ ସୈନ୍ୟମାନେ ନିହତ ହେବେ ପ୍ରଭୃତି ନାନା ପ୍ରସଙ୍ଗ ବର୍ଣ୍ଣିତ ହୋଇଛି । ବ୍ରହ୍ମଜ୍ଞାନ ସାଧନା ସଂପର୍କରେ ଛାୟା, ଜ୍ୟୋତି, ଆବାଡ଼, ସାଧନାର ବିଶଦ ବିବରଣୀ ପ୍ରଦାନ କରାଯାଇଛି । ଧ୍ୱନି ସାଧନା ଓ ସାତବାରରେ ଅଷ୍ଟାଙ୍ଗ ସାଧନା ମାଧ୍ୟମରେ ଅନାଦି ବ୍ରହ୍ମ ପ୍ରାପ୍ତିର ମାର୍ଗ ମଧ୍ୟ ଏହି ଗ୍ରନ୍ଥରେ ପ୍ରଦର୍ଶିତ ହୋଇଛି । ଶିଶୁବେଦ, ସପ୍ତଶୂନ୍ୟ, ମହାଶୂନ୍ୟ, ଗୋଲାହାଟ, ସହସ୍ରାର ସ୍ଥାନ ଓ ସେଠାରେ ତିନି ହଂସର ବିହାର ପ୍ରସଙ୍ଗରେ ବହୁ ତାତ୍ତ୍ୱିକ ବ୍ୟାଖ୍ୟା କରାଯାଇଛି । ବାସ୍ତବରେ ଭବିଷ୍ୟତ ମାଳିକା ଓ ବ୍ରହ୍ମଜ୍ଞାନ ସାଧନା ଦୃଷ୍ଟିରୁ ଏହି ଗ୍ରନ୍ଥଟି ଏକ ଅମୂଲ୍ୟ ସଂପଦ ।

**୧୪- କଳିଯୁଗ ଗୀତା-** କ୍ଷୁଦ୍ର କଳେବର ବିଶିଷ୍ଟ ଏହି ଗ୍ରନ୍ଥରେ କଳିଯୁଗର ଅନୀତି, ଅନାଚାର ପ୍ରସଙ୍ଗ ସହିତ ଏକାକ୍ଷର ବ୍ରହ୍ମ ମନ୍ତ୍ରର ମାହାତ୍ମ୍ୟ ବର୍ଣ୍ଣିତ ହୋଇଛି । ବୈଷ୍ଣବ ଧର୍ମର ମୂଳତତ୍ତ୍ୱକୁ ନ ବୁଝି ବୈଷ୍ଣବ ଭେକଧାରୀ ଭଣ୍ଡମାନେ ଧର୍ମ ଓ ସମାଜକୁ କଳୁଷିତ କରିବେ କଳିଯୁଗରେ । ହଂସଦୀକ୍ଷା, ଏକାକ୍ଷର ମନ୍ତ୍ର ଓ ଯୋଗ ସାଧନାର ଘୋର ସମାଲୋଚନା କରାଯିବା ସଙ୍ଗେ ସଙ୍ଗେ ନିନ୍ଦାବାଦ ମଧ କରାଯାଇଛି । ଏହା ହେଉଛି ଅଚ୍ୟୁତାନନ୍ଦଙ୍କ ମତବାଦର ପରିପନ୍ଥୀ । ସେଥିପାଇଁ ଉକ୍ତ ଗ୍ରନ୍ଥଟି ପରବର୍ତ୍ତୀ ସମୟରେ ରଚିତ ହୋଇ ଅଚ୍ୟୁତାନନ୍ଦଙ୍କ ନାମରେ ଭଣିତା କରାଯାଇଛି । କେହି କେହି ଆଲୋଚକ ଏହାକୁ ଦ୍ୱିତୀୟ ଅଚ୍ୟୁତାନନ୍ଦଙ୍କ ରଚନା ବୋଲି ଗ୍ରହଣ କରିଛନ୍ତି ।

**୧୫- କୈବର୍ତ୍ତ ଗୀତା-** ଶ୍ରୀକୃଷ୍ଣ ଓ ଅର୍ଜ୍ଜୁନଙ୍କ କଥୋପକଥନ ଛଳରେ ଏହି ଗ୍ରନ୍ଥଟି ରଚିତ । କୈବର୍ତ୍ତ ଜାତିର ଗୌରବ ବୃଦ୍ଧି କରିବା ନିମନ୍ତେ କବି ସେମାନଙ୍କୁ ପରାଶରଙ୍କ ବଂଶଧର ରୂପେ ପରିଚିତ କରାଇଛନ୍ତି । ସେଥିପାଇଁ ପରାଶର ଓ ସତ୍ୟବତୀ ଉପାଖ୍ୟାନ ଏହି ଗ୍ରନ୍ଥରେ ସ୍ଥାନିତ । ଷୋଡ଼ଶ ଶତାବ୍ଦୀ ସମାଜରେ ବ୍ରାହ୍ମଣମାନଙ୍କର ଆଧିପତ୍ୟ ଅଧିକ ଥିଲା ଓ ଜାତିଭେଦ ପ୍ରଥା ତୀବ୍ର ଆକାର ଧାରଣ କରିଥିଲା । ଉଚ୍ଚନୀଚ ଭେଦଭାବ ତଥା ବର୍ଣ୍ଣ ବୈଷମ୍ୟ ନୀତି ସମାଜକୁ କଳୁଷିତ କରିଦେଇଥିଲା । ଅଚ୍ୟୁତାନନ୍ଦ କିନ୍ତୁ ଏପରି ଜାତିଭେଦ ପ୍ରଥାର ବିଲୋପ ପାଇଁ ପ୍ରଗାଢ଼ ଉଦ୍ୟମ କରିଥିଲେ । ସେ ଶୂଦ୍ରର ବୃତ୍ତିକୁ ଏକ ପବିତ୍ର ବୃତ୍ତିଭାବରେ ଗ୍ରହଣ କରି ଶୂଦ୍ରମାନେ ଭଗବାନଙ୍କ ପାଦରୁ ଜାତ ବୋଲି କହିଥିଲେ ।

*"ଶୂଦ୍ର ଯେ ଚରଣୁ ଜାତ ସେବକ ପୟର ॥*
*ସେବାକାରୀ ରୂପେ ସେହୁ ଥାଏ ଦିବାରାତ୍ର*
*ଭଣ୍ଡାରୀ ପରିଛା ବୋଲି ଜଗତେ ବିଖ୍ୟାତ ॥*
*ବାରିକ ଭଣ୍ଡାରି ବୋଲି ହୋଇଲା ବିଖ୍ୟାତ*
*ପାଦପଦ୍ମ ପଖାଳି ମୋ କରଇ ପବିତ୍ର ॥"*

ଶ୍ରୀକୃଷ୍ଣଙ୍କର ନୀଚଜାତି ପ୍ରତି ଅଧିକ ଆନ୍ତରିକତା ଥିଲା । ନିଜକୁ ହାଡ଼ି ବୋଲି କହି ସେ କର୍ମ ଭିତ୍ତିକ ଜାତିଭେଦକୁ ଅସ୍ୱୀକାର କରିଛନ୍ତି । ଜାତି ଅନୁସାରେ ଜଣକୁ ଛୋଟବଡ଼ କହିବା ଉଚିତ ନୁହେଁ ବୋଲି ଅଚ୍ୟୁତାନନ୍ଦ କହୁଥିଲେ । ତାଙ୍କ ମତରେ କର୍ମ ହେଉଛି ଏବ୍ରର ମୂଳକଥା । କର୍ମ ଅନୁଯାୟୀ ଜଣେ ଛୋଟ ବା ବଡ଼ ହୋଇପାରେ । ଯିଏ ଯେଉଁ କର୍ମ କରୁନା କାହିଁକି ସମସ୍ତଙ୍କର ଜାତି ହେଉଛି ଏକ । ସେଥିପାଇଁ ସେ କହି

*"ସମସ୍ତେ ଯେ ଏକ ଜାତି ଜ୍ଞାନବନ୍ତେ ହେଜ*
*ସଂସାର ଚଳିବା ପାଇଁ କରିଛି ବାଣିଜ୍ୟ ।"*

କୈବର୍ତ୍ତମାନେ ବିଷ୍ଣୁ ଉପାସନା କରିବା ପାଇଁ ଉପଯୁକ୍ତ । ସେମାନଙ୍କର ଓଷା, ବ୍ରତ, ପର୍ବପର୍ବାଣୀ ଆଦି ଧାର୍ମିକ ପରମ୍ପରା ମୂଳରେ କିପରି ଭଗବତ ଚିନ୍ତା ରହିଛି ତାହା ଏ ଗ୍ରନ୍ଥରେ ବର୍ଣ୍ଣିତ ହୋଇଛି । ସର୍ବୋପରି ଅଚ୍ୟୁତାନନ୍ଦ ନୀଚଜାତିର ଲୋକଙ୍କୁ ସମାଜରେ ସମ୍ମାନିତ ଆସନ ଦେବା ପାଇଁ ଏହି ଗ୍ରନ୍ଥରେ ଚେଷ୍ଟା କରିଛନ୍ତି । ସରଳ ଓ ସାବଲୀଳ ଭାଷାରେ ରଚିତ ଏହି ଗ୍ରନ୍ଥରେ ଶ୍ରୀଚୈତନ୍ୟ ଓ ପଞ୍ଚସଖା ମଣ୍ଡଳୀଭୁକ୍ତ ସଖାଙ୍କ କଥା ନ ଥିବାରୁ ଏହାକୁ କବିଙ୍କର ପ୍ରାଥମିକ ରଚନା ରୂପେ ଗ୍ରହଣ କରାଯାଇପାରେ ।

**୧୬- ଗଣଭୃତ୍ୟ ଗୀତା-** ଚାରିଗୋଟି ପଟଳରେ ରଚିତ ଏହି କ୍ଷୁଦ୍ର ଗ୍ରନ୍ଥରେ ଓଡ଼ିଶାର ବିଭିନ୍ନ ସିଦ୍ଧସାଧକ ଓ କବିମାନଙ୍କ କଥା ବର୍ଣ୍ଣିତ ହୋଇଛି । ଦ୍ୱାଦଶ ଗୋପାଳଙ୍କର ଜନ୍ମ ଜନ୍ମାନ୍ତର ବର୍ଣ୍ଣନା ପ୍ରସଙ୍ଗରେ କବି ସାଧକମାନଙ୍କର ପରିଚୟ ପ୍ରଦାନ କରିଛନ୍ତି । ଧର୍ମ ଦୃଷ୍ଟିରୁ ଗ୍ରନ୍ଥଟି ଗୁରୁତ୍ୱପୂର୍ଣ୍ଣ ନ ହୋଇଥିଲେ ହେଁ ଭକ୍ତମାନଙ୍କ ବିବରଣୀ ପ୍ରଦତ୍ତ ଦୃଷ୍ଟିରୁ ଏହାର ଐତିହାସିକ ମୂଲ୍ୟ ରହିଛି । ଭଣିତାରେ କବି କହିଛନ୍ତି-

*"ଆଦି ଅନାଦିଙ୍କ ଗୁପତ କଥା*
*ଦୀନ ଅଚ୍ୟୁତ ଗୀତେ ରଚିଲେ ପୋଥା ।"*

**୧୭- ଗରୁଡ଼ ଗୀତା-** ଲୋକପ୍ରିୟ ଏହି ଗ୍ରନ୍ଥଟି କବି ତେଲେଙ୍ଗା ମୁକୁନ୍ଦଦେବଙ୍କ ୧୦ମ ଅଙ୍କ ଅର୍ଥାତ୍ ଖ୍ରୀ:ଅ: ୧୫୬୬ ରେ ରଚନା କରିଛନ୍ତି । ଗ୍ରନ୍ଥରେ ନିଜ ସଂପର୍କରେ କିଛି ବିବରଣୀ ଦେବା ସହିତ କଳିଯୁଗରେ ଦେଶବାସୀଙ୍କ ଅବସ୍ଥା କିପରି ହେବ ତାର ଏକ ସ୍ୱଷ୍ଟ ଚିତ୍ର ପ୍ରଦାନ କରିଛନ୍ତି । କବି ନିଜ ସଂପର୍କରେ ଲେଖିଛନ୍ତି-

*"ଅଚ୍ୟୁତ ନାମ ଯେ ଅଟଇ ମୋହର ମୋହ ଠାରୁ ଦୁଃଖୀ ନାହିଁ*
*ଚିତ୍ରୋତ୍ପଳା ନଦୀ କୂଳରେ ଯେ ଗ୍ରାମ ନେମ୍ଭାଳୋ ଅଟଇ ।*
*ଏହିଠାରେ ନାଥ ରହିଅଛି ମୁହିଁ ରହିଅଛି ରାତି ଦିନ*
*ଯେବେ ମୋହଠାରେ ସୁଦୟା ହୋଇବ ତେବେ କହିବି ବଖାଣ ।"*

କବି ନେମ୍ଭାଳୋ ଗ୍ରାମରେ ବାସ କରୁଥିବା ସମୟରେ ଏହି ଗ୍ରନ୍ଥଟି ରଚନା କରିଥିବା ଏଥିରୁ ସୂଚିତ ହୁଏ । ଏହି ଗ୍ରନ୍ଥରେ ଭବିଷ୍ୟତରେ କିପରି ବତାସ ଓ ଦୁର୍ଭିକ୍ଷ ଦ୍ୱାରା ଦାରୁଣ ବିପର୍ଯ୍ୟୟ ଘଟିବ, 'ତୁରୁଖ' ଓ 'ମୋଗଲ' ମାନଙ୍କ ଆକ୍ରମଣରେ ଜନଜୀବନ

ଅସ୍ତବ୍ୟସ୍ତ ହୋଇପଡ଼ିବ, ତାର ସ୍ପଷ୍ଟ ଚିତ୍ର ପ୍ରଦାନ କରାଯାଇଛି । ପୁଣି ଲୋକଙ୍କ ଅବସ୍ଥା ସଂପର୍କରେ କୁହାଯାଇଛି-

*''ହୀନ ଲୋକମାନେ ବଡ଼ ବୋଲାଇବେ ବଡ଼ମାନେ ହେବେ ହୀନ*
*ନିଜନ ଭାବ ହୋଇକରି ରହିବେ କିଛି ନ କହିବେ ପୁଣ ।''*

ସରଳ ଭାଷାରେ ରଚିତ ଏହି ଗ୍ରନ୍ଥଟି ଓଡ଼ିଶାର ଜନସାଧାରଣଙ୍କ ଦ୍ୱାରା ବହୁଳ ଭାବରେ ଆଦୃତ । ଏହି ଗ୍ରନ୍ଥରେ 'ତୁରୁଖ' ଓ 'ମୋଗଲ' ଆକ୍ରମଣ ଓ ବାରବାଟୀ ଦୁର୍ଗ ନିର୍ମାଣ ପରି କେତେକ ପ୍ରସଙ୍ଗ ପ୍ରକ୍ଷେପ ବୋଲି ଅନୁମାନ କରାଯାଇପାରେ ।

**୧୮- ଗହନ ଗୀତା-** ଭାଗବତ ବୃତ୍ତରେ ରଚିତ ଏହି ଗ୍ରନ୍ଥଟିରେ ପ୍ରଶ୍ନକର୍ତ୍ତା ଗରୁଡ଼ ଓ ଉତ୍ତର ଦାତା ସ୍ୱୟଂ ଗୋବିନ୍ଦ । ଏଥିରେ ଭକ୍ତ ପ୍ରଶଂସା, ଗୋଲୋକ ବର୍ଣ୍ଣନା ଓ ପିଣ୍ଡବ୍ରହ୍ମାଣ୍ଡ ତତ୍ତ୍ୱ ଇତ୍ୟାଦି ସ୍ଥାନ ପାଇଛି ।

**୧୯- ଗୁଜ୍ଜରୀ ବା ଦୂତୀରାସ-** ଅଚ୍ୟୁତାନନ୍ଦଙ୍କ ନାମରେ ଭଣିତା ଥିବା ଏହି ଗ୍ରନ୍ଥରେ ହରିହରଙ୍କର ରାସର ବର୍ଣ୍ଣନା କରାଯାଇଛି ଓ ବହୁ ଗୂଢ଼ ତତ୍ତ୍ୱ ପ୍ରକାଶ ପାଇଛି । ହେଲେ ଗ୍ରନ୍ଥରେ ବ୍ୟବହୃତ ଓକିଲ, କଚେରୀ ଓ ମୋକଦ୍ଦମା ଆଦି ଶବ୍ଦକୁ ଦେଖିଲେ ଏହା ଯେ ଅଚ୍ୟୁତାନନ୍ଦଙ୍କ ସୃଷ୍ଟି ନୁହେଁ ତାହା ସହଜରେ ଜଣାପଡ଼େ । ଏଥିରେ ଅଛି-

*''ଗୁଜ୍ଜରୀ ଯାଉଛି କର ଗୁଜରୀ*
*ଗୋବର୍ଦ୍ଧନ ପରେ କର କଚେରୀ ।*
*ବୃନ୍ଦାବନେ ନିକି ଧର ଚୋରକୁ*
*ରାଧା କଚେରୀରେ ବାନ୍ଧ ତାହାକୁ ।*
*ସଖି ଗୋ ! ଦୂତୀ ଓକିଲ କର*
*ମକଦ୍ଦମା କୁଞ୍ଜେ କରଦି ଭର ।''*

ଏହ ଗ୍ରନ୍ଥଟି ମଧ 'ଗୁଜ୍ଜରୀ ନିତ୍ୟରାସ' ନାମରେ ପ୍ରଚଳିତ ଅଛି ।

**୨୦- ଗୁରୁ ପ୍ରଣାଳୀ-** କବି ଗୋଟିଏ କ୍ଷୁଦ୍ର ରଚନାରେ ନିଜର ଗୁରୁ ପ୍ରଣାଳୀ ପ୍ରସଙ୍ଗ ବର୍ଣ୍ଣନା କରିଛନ୍ତି । ସେଥିରୁ ତାଙ୍କର ଗୁରୁ ସନାତନ ଗୋସ୍ୱାମୀ, ତାଙ୍କ ଗୁରୁ ରାମକୃଷ୍ଣ ଗୋସ୍ୱାମୀ, ତାଙ୍କ ଗୁରୁ ଶ୍ୟାମଘୋଷ ଗୋସ୍ୱାମୀ, ତାଙ୍କ ଗୁରୁ ସୁନ୍ଦରାନନ୍ଦ ଓ ତାଙ୍କ ଗୁରୁ ଶ୍ରୀଚୈତନ୍ୟ ଥିବାର ଜଣାଯାଏ । ରଚନାଟିର ଭଣିତାରେ ଅଛି-

*''ସନାତନ ଗୋସାଇଁଙ୍କର ଶିଷ୍ୟ । ମୋହର ନାମଟି ଅଚ୍ୟୁତ ଦାସ ।''*

**୨୧- ଗୁରୁଭକ୍ତି ଗୀତା-** ବୃହତ କଳେବରବିଶିଷ୍ଟ ଏହି ଗ୍ରନ୍ଥଟି ତିନି ଖଣ୍ଡରେ ବିଭକ୍ତ । ୧ମ ଖଣ୍ଡରେ ୬୨ ଛାନ୍ଦ, ୨ୟ ଖଣ୍ଡରେ ୧୮ଟି ପଟଳ ଓ ୩ୟ ଖଣ୍ଡରେ ୫୪ଟି ପଟଳ ରହିଛି । ଅଚ୍ୟୁତାନନ୍ଦଙ୍କର ଏପରି ଏକ ଅମୂଲ୍ୟ ଗ୍ରନ୍ଥ ପ୍ରଥମେ ପ୍ରାଚୀ ସମିତି ଦ୍ୱାରା ପ୍ରକାଶିତ ହୋଇଥିଲା ଓ ପରେ ଉତ୍କଳ ବିଶ୍ୱବିଦ୍ୟାଳୟ ଦ୍ୱାରା ଡଃ ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ସଂପାଦନାରେ ପ୍ରକାଶ ପାଇଥିଲା । ବିଭିନ୍ନ ଦୃଷ୍ଟିକୋଣରୁ ଏହି ଗ୍ରନ୍ଥଟି ଗୁରୁତ୍ୱପୂର୍ଣ୍ଣ ।

ଅଚ୍ୟୁତାନନ୍ଦଙ୍କ ଶିଷ୍ୟମାନଙ୍କର ବିଶଦ ବିବରଣୀ ଏଥିରେ ସ୍ଥାନ ପାଇଛି । ସେଥିରୁ ଜଣାଯାଏ ଯେ, ତାଙ୍କର ଷୋଳ ହଜାର ଶିଷ୍ୟଙ୍କ ମଧ୍ୟରୁ ୧୨ ଜଣ ଥିଲେ ପ୍ରଧାନ । ସେମାନେ ହେଲେ ମୁକୁନ୍ଦ, ଅନନ୍ତ, ବସ୍ତ, ପବନ, ସୁଦାମ, ଯାଦବ, ବାଳକ, ମଧୁ, ମଥୁରି, ଉଦ୍‌ଧାନ, ଗୋବିନ୍ଦ ଓ ବୃନ୍ଦାବନ । ଓଡ଼ିଶାକୁ କେତୋଟି ମଣ୍ଡଳ ବା ଶାଖାରେ ବିଭକ୍ତ କରି ସେସବୁର ପରିଚାଳନା ଦାୟିତ୍ୱ ଶିଷ୍ୟମାନଙ୍କୁ ଦିଆଯାଉଥିଲା । ଅଚ୍ୟୁତ ସଂପ୍ରଦାୟର ପଞ୍ଚଶାଖା ଥିଲା ପ୍ରଧାନ । ୧ମ ଶାଖା ଶିଷ୍ୟ ରାମଚନ୍ଦ୍ର ଦାସ, ୨ୟ ଶାଖା ଶିଷ୍ୟ ଭରତ ବା ଭୃଥ, ୩ୟ ଶାଖା ଶିଷ୍ୟ ବକ୍ର ଦାସ, ୪ର୍ଥ ଶାଖା ଶିଷ୍ୟ ଧର୍ମ ଦାସ ଓ ୫ମ ଶାଖା ଶିଷ୍ୟ ବିଷ୍ଣୁ ଦାସଙ୍କ ତତ୍ତ୍ୱାବଧାନରେ ପରିଚାଳିତ ହେଉଥିଲା । ସେମାନେ ଅଚ୍ୟୁତାନନ୍ଦଙ୍କ ଧର୍ମ ଦର୍ଶନ ପ୍ରଚାର କରି ସମାଜରୁ ଅନୀତି, ଅନ୍ୟାୟ, ଅନାଚାର ଦୂର କରିବା ସହିତ ଲୋକମାନଙ୍କୁ ସୁପଥରେ ପରିଚାଳିତ କରୁଥିଲେ । ଏତଦ୍‌ବ୍ୟତୀତ ତତ୍କାଳୀନ ଭକ୍ତ ଓ ସାଧକମାନଙ୍କର ବିଶଦ ବିବରଣୀ ଗ୍ରନ୍ଥରେ ସ୍ଥାନ ପାଇଛି ।

ଗୁରୁ ଅଚ୍ୟୁତାନନ୍ଦଙ୍କ ନିର୍ଦ୍ଦେଶରେ ଶିଷ୍ୟମାନେ ରାସ ରଚନା କରି ବୁଲି ବୁଲି ଅଭିନୟ ମାଧ୍ୟମରେ ତତ୍ତ୍ୱ ପ୍ରଦର୍ଶନ କରୁଥିଲେ । ରାସ ସହିତ ସଂକୀର୍ତ୍ତନ ହେଉଥିଲା ଓ ଏଥିରେ ଗୋପାଳମାନେ ନିର୍ଦ୍ଦିଷ୍ଟ ଭାବରେ ବେଶ ହୋଇ ନୃତ୍ୟ ପରିବେଷଣ କରୁଥିଲେ । ଓଡ଼ିଶାରେ ଅଚ୍ୟୁତାନନ୍ଦ ହିଁ ଥିଲେ ରାସଲୀଳାର ପ୍ରଥମ ପ୍ରବକ୍ତା । ସାଧାରଣତଃ ତିନି ପ୍ରକାରର ରାସଲୀଳା ଅନୁଷ୍ଠିତ ହେଉଥିଲା । (୧) ପୁରୁଷୋତ୍ତମ କ୍ଷେତ୍ରର ନିତ୍ୟରାସଲୀଳା, (୨) ଶରୀର ମଧ୍ୟରେ ଅନ୍ତର୍ମୁଖୀ ଶୂନ୍ୟ ରାସଲୀଳା, (୩) ବୃନ୍ଦାବନର ରାସଲୀଳା । ଗ୍ରନ୍ଥର ୩ୟ ଖଣ୍ଡରେ ଏହାର ବିଶଦ ବର୍ଣ୍ଣନା ପ୍ରଦତ୍ତ ହୋଇଛି ।

ଗ୍ରନ୍ଥରେ ଶ୍ରୀଚୈତନ୍ୟ ଓ ପଞ୍ଚସଖା ପ୍ରସଙ୍ଗ ବହୁ ସ୍ଥାନରେ ବର୍ଣ୍ଣିତ ହୋଇଛି । ଉତ୍କଳୀୟ ବୈଷ୍ଣବ ଧର୍ମଦର୍ଶନ ସଂପର୍କୀୟ ଏହା ଏକ ଅମୂଲ୍ୟ ଗ୍ରନ୍ଥ । ଏଥିରେ ମନ୍ତ୍ର-ଯନ୍ତ୍ର-ତନ୍ତ୍ର ସାଧନା, ଶୂନ୍ୟ ସାଧନା, ସାକାର-ନିରାକାର ସାଧନା, ସଗୁଣ-ନିର୍ଗୁଣ ଉପାସାନା, ଗୁରୁ ମାହାତ୍ମ୍ୟ, ଦୀକ୍ଷା ପ୍ରଦାନ, ଷଡ଼ଚକ୍ର ସାଧନା ବିଶଦ ଭାବରେ ଆଲୋଚିତ ହୋଇଛି । ଶିଷ୍ୟର ମହାଶୂନ୍ୟ ଦର୍ଶନ ସଂପର୍କରେ କବି କହିଛନ୍ତି-

*"ମହାଶୂନ୍ୟକୁ ନ ଚିହ୍ନିଲେ । ଅଣଗୁରୁଆ ବୋଲି ଭଲେ ।*
*ଗୁରୁ ଚିହ୍ନାନ୍ତି ମହାଶୂନ୍ୟ । ତେବେ ବୋଲିବା ଗୁରୁ ଧନ୍ୟ ।"*

**(୩ୟ ଖଣ୍ଡ)**

ସତ୍ୟ, ଶାନ୍ତି, ଦୟା, କ୍ଷମା ଓ ଧର୍ମ ହେଉଛି ସନ୍ଥର ଲକ୍ଷଣ । ସାଧୁ କୋଟିଏରେ ବୈଷ୍ଣବ ଜଣେ, ବୈଷ୍ଣବ କୋଟିଏରେ ସନ୍ଥ ଗୋଟିଏ । ଗୁରୁଙ୍କୁ ସେ ଭଗବାନଙ୍କ ସହିତ ସମାନ ଆସନ ଦେଇଛନ୍ତି । ତେଣୁ ସେ କହିଛନ୍ତି-

*"ଗୁରୁ ମୁକତି ଗତି ଦାତା । ଗୁରୁଟି ଜୀବ ଉଦ୍ଧାରନ୍ତା ।"*

ଓଡ଼ିଆ ସନ୍ଥ ସାହିତ୍ୟ ନୀତି ଓ ଉପଦେଶରେ ପରିପୂର୍ଣ୍ଣ । ଅଚ୍ୟୁତାନନ୍ଦ ସେହିପରି 'ଗୁରୁଭକ୍ତି ଗୀତା'ରେ ଅଶେଷ ନୀତିବାଣୀ ତଥା ଉପଦେଶ ପ୍ରଦାନ କରିଛନ୍ତି । ଯଥା-

ଧନ- "ଏହି ରୂପେ ଧନଜନ ଚିର ଯେ ନୁହଇ
କିଛି ଦିନ ବଢ଼ିକରି ପୁଣି ନାଶ ଯାଇ ।" (୩ୟ ଖଣ୍ଡ/୯ମ ପଟଳ)
ଗୁରୁ- "ଏ ଭବ ସମୁଦ୍ର ଅଟଇ । ଗୁରୁ ତହିଁକି ନାବ ହୋଇ ।" (୩/୧୨)
ମାୟା- "ମାୟା ଅନ୍ଧ ଜଡ଼େ ପଡ଼ି ପ୍ରାଣୀ ମଣେ ସତ
ନିରନ୍ତରେ ବୋଲୁଥାଇ ମୋର ଧନ ସୁତ ।" (୩/୯)
ଉପଦେଶ- "ନଳିନୀ ଦଳରେ ନୀର ପରାୟେ ଶରୀର
ଶ୍ରବଣେ ବାରେକ ହରିନାମ ହେତୁକର ।"
ପୂଜା- "ଦିଅଁ ରଖିଣ ନ ପୂଜିଲେ । ଦିଅଁ କି ବର ଦିଏ ଭଲେ ।" (୩/୪୬)

ଏହି ଗ୍ରନ୍ଥର ପ୍ରତ୍ୟେକ ଛାନ୍ଦ ବା ପଟଳରେ ଉଲ୍ଲେଖ ଥିବା ନିର୍ଦ୍ଦିଷ୍ଟ ବାଣୀରୁ ଏହାର ସାଙ୍ଗୀତିକତା ଲକ୍ଷ୍ୟ କରାଯାଇପାରେ । ସମଗ୍ର ଗ୍ରନ୍ଥଟି ବିଭିନ୍ନ ପ୍ରକାର ଛନ୍ଦରେ ରଚିତ ହୋଇଛି । ଏହାର ଭାଷା ସରଳ, ମଧୁର ତଥା ହୃଦୟସ୍ପର୍ଶୀ । ସାହିତ୍ୟ ଓ ଧର୍ମତତ୍ତ୍ୱ ଦୃଷ୍ଟିରୁ ଗ୍ରନ୍ଥଟି ଯେପରି ମୂଲ୍ୟବାନ ଐତିହାସିକ ଦୃଷ୍ଟିକୋଣରୁ ମଧ୍ୟ ସେହିପରି ଉପାଦେୟ ।

**୨୨- ଗୋପାଳଙ୍କ ଓଗାଳ-** ଏହା ଅଚ୍ୟୁତାନନ୍ଦଙ୍କର ସର୍ବାପେକ୍ଷା ଅଧିକ ଲୋକପ୍ରିୟ ରଚନା । ପ୍ରକାଶିତ ଗ୍ରନ୍ଥଟିର କଳେବର କ୍ଷୁଦ୍ର ହେଲେ ହେଁ ବାସ୍ତବିକ ଏହା ଏକ ବିରାଟ ଗ୍ରନ୍ଥ । ଗବେଷକ ପଣ୍ଡିତ କୁରାମଣି ପାଠୀଶର୍ମା ନେମାଳ ନିକଟବର୍ତ୍ତୀ ଗୋପାଳପଲ୍ଲୀରୁ ଏହାର ଏକ ପ୍ରତିଲିପି ପାଇଥିଲେ । ତାଙ୍କ ମତରେ, ଏଥିରେ ସାଧାରଣ ଗୋପାଳମାନଙ୍କ କଥା ଥିବାର ଅନୁମିତ ହୋଇଥାଏ । କିନ୍ତୁ ବାସ୍ତବରେ ତାହା ନୁହେଁ । ଏଠାରେ ଗୋପାଳ

ଅର୍ଥ ବ୍ରହ୍ମଗୋପାଳଙ୍କୁ ବୁଝାଇଥାଏ । ଗୋ କହିଲେ ଗାୟତ୍ରୀ, ତାର ଯେ ପାଳକ ତାକୁ ଗୋପାଳ ଓ ତାଙ୍କ ସଂପର୍କୀୟ ଜଟିଳ ପ୍ରଶ୍ନର ନାମ ଓଗାଳ । ଏଣୁ ଏହାକୁ ଗୋପାଳ ଓଗାଳ କହନ୍ତି ।

ନାନା ପ୍ରକାର ଛନ୍ଦ ଥାଇ ଚତୁର୍ଦ୍ଦଶାକ୍ଷରୀ ଓ ଷୋଡ଼ଶାକ୍ଷରୀରେ ରଚିତ ଏହି ଗ୍ରନ୍ଥର ଗୀତଗୁଡ଼ିକ ଅତ୍ୟନ୍ତ ହୃଦୟଗ୍ରାହୀ । ସେଥିରେ ପୁଣି ଅନେକ ଚଉପଦୀ, ଢ଼ଗଢ଼ମାଳିରେ ଗ୍ରନ୍ଥଟି ପରିପୂର୍ଣ୍ଣ । ଏହାର ଭାଷା ଅତ୍ୟନ୍ତ ସରଳ-କୋମଳ ତଥା ଶ୍ରୁତି ମଧୁର । କଠିନ ଶବ୍ଦ ପ୍ରାୟତଃ ଦେଖିବାକୁ ମିଳେନାହିଁ । ସାଧାରଣତଃ ସଂଗୀତ ହେଉଛି ଏହାର ପ୍ରାଣ । ଦୋଳପୂର୍ଣ୍ଣିମାରେ ଗୋପାଳମାନେ ଶିଂଘା, ବେଣୁ, ବଂଶୀ ବଜାଇ ଅବିର ରଂଜିତ ପୀତବସ୍ତ୍ର ପିନ୍ଧି ଓଗାଳ ଗୀତ ଗାଇ ନାଚି ନାଚି ଲଉଡ଼ି ଖେଳିଥାନ୍ତି । ଏହି ଲଉଡ଼ି ଖେଳ ହେଉଛି ବୃନ୍ଦାବନର ଗୋପାଳମାନଙ୍କର ମଧୁର ଲୀଳା ।

ଏହି ସମୟରେ ସେମାନେ ଦୁଇଦଳରେ ବିଭକ୍ତ ହୋଇ ପ୍ରଶ୍ନୋତ୍ତର ଛଳରେ 'ଗୋପାଳଙ୍କ ଓଗାଳ' ଗ୍ରନ୍ଥରୁ ଗୀତ ଗାଇଥାନ୍ତି । ଚନ୍ଦ୍ରକୁ ଜହ୍ନ ମାମୁଁ ବୋଲି କାହିଁକି ଡ଼ାକନ୍ତି ସେ ବିଷୟରେ ସୁଦାମଙ୍କର ପ୍ରଶ୍ନ ଓ ଶ୍ରୀଦାମଙ୍କର ଉତ୍ତର ଅତି ସୁନ୍ଦର ଭାବରେ ଦିଆଯାଇଛି ।

*''ଶୁଣଶୁଣ ଭାଇମାନେ ପଚାରିଲ ଯାହା*
*ଯାହା କିଛି ଜଣାଅଛି କହୁଅଛି ତାହା ।*
*ଜହ୍ନମାମୁଁ ବୋଲି ଲୋକେ କାହିଁକି ଡ଼ାକନ୍ତି*
*ଲକ୍ଷ୍ମୀଦେବୀ ଜଗତର ଜନନୀ ଅଟନ୍ତି ।*
*ଚନ୍ଦ୍ର ଲକ୍ଷ୍ମୀ ଦୁଇ ଜଣ ସମୁଦ୍ରରୁ ଜାତ*
*ଚନ୍ଦ୍ର ତାଙ୍କର ଅଟନ୍ତି ସହୋଦର ଭ୍ରାତ ।*
*ଚନ୍ଦ୍ରଭ୍ରାତ ଭଗ୍ନୀ ଲକ୍ଷ୍ମୀ ଜଗତମାତା ହେଲେ*
*ତେଣୁ ମାମୁଁ ବୋଲି ଚନ୍ଦ୍ରେ ଜଗତେ ଡ଼ାକିଲେ ।''*

ଏହି ଗ୍ରନ୍ଥରେ ସନ୍ନିବେଶିତ ବାରମାସୀ ଗୀତଟି ଅତ୍ୟନ୍ତ ହୃଦୟସ୍ପର୍ଶୀ । ବାରମାସରେ ପ୍ରକୃତି ପରିବର୍ତ୍ତନ ଯୋଗୁଁ ରାଧାକୃଷ୍ଣଙ୍କ ହୃଦୟରେ କିପରି ଭାବଗତ ପରିବର୍ତ୍ତନ ହୁଏ ତାହା କବି ଜୀବନ୍ତ ଭାବରେ ବର୍ଣ୍ଣନା କରିଛନ୍ତି ।

*"ଆଦ୍ୟ ମାର୍ଗଶୀର ମାସର ଶୀତ*
*ଶ୍ରୀକୃଷ୍ଣ ଜାଣନ୍ତି ରାଧିକା ଚିତ୍ତ*
*ଦୁଃଖୀର ଜୀବନ ଦୁଃଖୀ ସଂଗାତ*
*କାହୁଁ ଆଣିଦେବି କମଳାକାନ୍ତ । ମୋ କାହ୍ନୁରେ ।"*

ହାସ ପରିହାସ ଛଳରେ ଅନେକ ଜଟିଳ ତତ୍ତ୍ୱ ସମ୍ବଳିତ ପ୍ରଶ୍ନର ଉତ୍ତର ଦିଆଯାଇଛି ଏହି ଗ୍ରନ୍ଥରେ । ଏଥିରେ ରାଧାକୃଷ୍ଣ ତତ୍ତ୍ୱ, ବଂଶୀ ତତ୍ତ୍ୱ, ଗାୟତ୍ରୀ ତତ୍ତ୍ୱ, ପୁରାଣ ତତ୍ତ୍ୱ, ବୃନ୍ଦାବନ ତତ୍ତ୍ୱ, ବାଡ଼ିପଘା ତତ୍ତ୍ୱ, ଗୁହାଳ ତତ୍ତ୍ୱ, ରାସ, ସ୍ତୋତ୍ର, ଫୁଲତୋଳା, ଗୋବର୍ଦ୍ଧନ ପୂଜା, ଶିଂଘା, ବେଣୁ, ମୟୂର ଚୂଳର ରହସ୍ୟ, ଗରୁଡ଼ ହନୁମାନ ଯୁଦ୍ଧ, ରୁକ୍ମିଣୀଙ୍କ ସୀତାବେଶ, ଷଡ଼ଚକ୍ର ସାଧନା, ରାଧାକୃଷ୍ଣ ବୃତ୍ତାନ୍ତ, ମନ୍ତ୍ର-ଯନ୍ତ୍ର ସାଧନା ଆଦି ବହୁ ରହସ୍ୟ ତଥା ତତ୍ତ୍ୱ ମୂଳକ ବିଷୟ ସ୍ଥାନ ପାଇଛି । ତେବେ ଏହି ଗ୍ରନ୍ଥଟି ଅଚ୍ୟୁତାନନ୍ଦଙ୍କର ପିଲାଦିନର ରଚନା ବୋଲି ଅନୁମାନ କରାଯାଏ । ସମ୍ଭବତଃ ସେ ଧର୍ମପ୍ରଚାରର ପ୍ରାଥମିକ ପର୍ଯ୍ୟାୟରେ ଏହି ଗ୍ରନ୍ଥଟି ଲେଖିଥିଲେ । ସେଥିପାଇଁ ଗ୍ରନ୍ଥରେ ସେ ନିଜକୁ ବାଳୁତ କହି ବୃଦ୍ଧ ଗୋପାଳମାନଙ୍କୁ ନମସ୍କାର କରିଛନ୍ତି ।

*"ବୃଦ୍ଧ ଗୋପାଳମାନଙ୍କୁ ମୋର ନମସ୍କାର*
*ମୁଁ ବାଳୁତ ମତି କିଛି ଜ୍ଞାନ ନାହିଁ ମୋର ।"*

ପୁଣି

*"ବିଜ୍ଞଲୋକ ତୁହେଁ ମୁହିଁ ଅଟଇ ମୂରୁଖ*
*ତୁହଇ ଯେ ବୃଦ୍ଧ ମୁହିଁ ବାଳୁତ ଯେ ଦେଖ ।"*

**୨୩- ଜ୍ଞାନପ୍ରଦୀପ ଗୀତା-** ଏହା ଗୋଟିଏ ବ୍ରହ୍ମଜ୍ଞାନ ମୂଳକ ଉପାଦେୟ ଗ୍ରନ୍ଥ । ଅର୍ଜୁନ ଓ ଶ୍ରୀକୃଷ୍ଣଙ୍କ ପ୍ରଶ୍ନୋତ୍ତର ଛଳରେ ଏଥିରେ ପଞ୍ଚମନ, ପଞ୍ଚପବନ, ପଞ୍ଚତତ୍ତ୍ୱ, ପଞ୍ଚଭୂତ, ପଞ୍ଚପ୍ରାଣ, ଅବ୍ୟକ୍ତ ପୁରୁଷ, ଜୀବ-ପରମ, ଯୋଗୀ, ବୀଜମନ୍ତ୍ର, ଚାରିକଳା, ଷଡ଼ଚକ୍ର, ପିଣ୍ଡ ବ୍ରହ୍ମାଣ୍ଡ, ନାମବ୍ରହ୍ମ, ପଦ୍ମର ଦଳ ଓ ଅକ୍ଷର ବସାଣ ପ୍ରଭୃତି ଆଲୋଚିତ ହୋଇଛି । ବ୍ରହ୍ମଜ୍ଞାନ ସଂପର୍କରେ କବି କହିଛନ୍ତି-

*"ବ୍ରହ୍ମଜ୍ଞାନ ଜ୍ଞାନବ୍ରହ୍ମ ତୁହଇ ଏ ଦୂର*
*ଗୁପତ ହୋଇ ରହିଛି ମନ୍ଦିରେ ତୋହର ।"* *(୯ମ ଅଧ୍ୟାୟ)*

ସେହିପରି ଜୀବ-ପରମ ପ୍ରସଙ୍ଗରେ କୁହାଯାଇଛି-

*''ଅଜ୍ଞାନୀକୁ ବ୍ୟକ୍ତ କରିବୁ ନାହିଁ*
*ଅବ୍ୟକ୍ତ ପୁରୁଷ ଶୂନ୍ୟରେ ଥାଇ ।*
*ଜୀବ-ପରମ ତା ବେନି ଚରଣ*
*ଜୀବ-ପରମ ମୁଁ ହୋଇଛି ଜାଣ ।''*

**୨୪- ଜ୍ଞାନସାଗର ବୋଲି-** ବ୍ରହ୍ମଜ୍ଞାନ ମୂଳକ ଏହି କ୍ଷୁଦ୍ର ରଚନାରେ ମହାଶୂନ୍ୟ, ଶୂନ୍ୟ ପୁରୁଷ, ସହସ୍ରାର କମଳ, ତ୍ରିବେଣୀ ଘାଟ ଆଦି ତାତ୍ତ୍ୱିକ ପ୍ରସଙ୍ଗ ଆଲୋଚିତ ହୋଇଛି । ଏଥିରେ ତ୍ରିକୂଟକୁ ତିନିଶାଖା, 'ଉର୍ମି-ଧୂର୍ମି-ଜ୍ୟୋତିଜ୍ୱାଳା'କୁ ଚାରିଡ଼ାଳ ଭାବରେ ଅଭିହିତ କରାଯାଇଛି । ସହସ୍ରାର କମଳ ବର୍ଣ୍ଣନାରେ ବ୍ରହ୍ମଜ୍ଞାନ ସହିତ ଚମତ୍କାର କବିତ୍ୱ ଶକ୍ତିର ପରିପ୍ରକାଶ ଘଟିଛି ।

*''ପଦ୍ମଫୁଲ ବୋଲି ନାମ ତାହାର । ଶୁକଳ କାନ୍ତି ଲକ୍ଷ ନାହିଁ ତାର ।*
*ସେ ପୁଷ୍ପ ମୁହିଁ ଅଂଗେ ନାରାୟଣ । ସକଳ ଜୀବଙ୍କ ମୁହିଁ ପ୍ରମାଣ ।*
*ସେ ଫୁଲ ରାଧା ଜୀବନ ହୋଇଛି । ସର୍ବ ଜୀବରେ ଜ୍ୟୋତି ବିରାଜୁଛି ।*
*ଭ୍ରୂଲତା ମଧ୍ୟରେ ନାସାର ବାଟ । ସେହିଠାରେ ଅଛି ତ୍ରିବେଣୀ ଘାଟ ।*
*ସୂଚ୍ୟଗ୍ର ପ୍ରମାଣେ ବାଟ ଫିଟିଛି । ତିଳ ପ୍ରମାଣେ କବାଟ ଲାଗିଛି ।''*

**୨୫- ଘଟ ସାଗର-** ବ୍ରହ୍ମଜ୍ଞାନ ମୂଳକ ଏହି କ୍ଷୁଦ୍ର ରଚନାରେ ସୃଷ୍ଟିତତ୍ତ୍ୱ, ପିଣ୍ଡବ୍ରହ୍ମାଣ୍ଡ ତତ୍ତ୍ୱ ଓ ଶୂନ୍ୟବାଦ ସଂପର୍କରେ ଆଲୋଚନା କରାଯାଇଛି । ଶରୀର ଏଥିରେ ଘଟ ରୂପେ ଗୃହୀତ । ବ୍ରହ୍ମଜ୍ଞାନର ସ୍ୱରୂପ ପ୍ରସଙ୍ଗରେ କବି କହିଛନ୍ତି-

*''ଗୁରୁ ବୋଲନ୍ତି ଶିଷ୍ୟ ମୁଖ ଚାହିଁ, ବ୍ରହ୍ମଜ୍ଞାନ କଥା ଅସଂଖ୍ୟ ହୋଇ ।*
*ମହାଶୂନ୍ୟରୁ ନିତ୍ୟ ହୋଯେ ଜାତ, ନିତ୍ୟରୁ ପ୍ରଣବ ହୋଯେ ସମ୍ଭୂତ ।''*

ଅଚ୍ୟୁତାନନ୍ଦ ତାଙ୍କ ସମୟର କେତେକ ଭକ୍ତଙ୍କର ବିବରଣୀ ପ୍ରଦାନ କରିବା ସଙ୍ଗେ ସଙ୍ଗେ ସ୍ୱପରିଚୟ ମଧ୍ୟ ପ୍ରଦାନ କରିଛନ୍ତି ।

**୨୬- ଚଉରାଶି ଯନ୍ତ୍ର-** ଏଗାର ଅକ୍ଷରୀ ବୃତ୍ତରେ ରଚିତ ଏହି ଗ୍ରନ୍ଥଟି ରସାମୃତ ସିନ୍ଧୁ ଓ ଚଉରାଶି ଚକ୍ର ନାମରେ ମଧ୍ୟ ପ୍ରଚଳିତ ଅଛି । ଏହି ଶରୀର ମଧ୍ୟରେ ତିନିପୁର

ବିଦ୍ୟମାନ । ବେକ ଠାରୁ ମୁଣ୍ଡ ପର୍ଯ୍ୟନ୍ତ ସ୍ୱର୍ଗପୁର । ଏଥିରେ ୨୮ଟି ଚକ୍ର । ଅଣ୍ଟାଠାରୁ ବେକ ପର୍ଯ୍ୟନ୍ତ ମର୍ତ୍ତ୍ୟପୁର । ଏଥିରେ ୨୮ଟି ଚକ୍ର ଏବଂ ଅଣ୍ଟାଠାରୁ ପାଦ ପର୍ଯ୍ୟନ୍ତ ପାତାଳପୁର । ଏଥିରେ ୨୮ଟି ଚକ୍ର । ଏପରି ମୋଟ ୮୪ଟି ଚକ୍ର ରହିଛି । ଏହି ୮୪ଟି ଚକ୍ର ପାଇଁ ଗ୍ରନ୍ଥରେ ୮୪ଟି ଅଧ୍ୟାୟ ସହିତ ସ୍ୱତନ୍ତ୍ର ଆଉ ଗୋଟିଏ ଅଧ୍ୟାୟ ଯୋଗ କରାଯାଇଛି । ପ୍ରତ୍ୟେକ ଅଧ୍ୟାୟରେ ଚକ୍ର ପାଇଁ ଯନ୍ତ୍ରଟିଏ ରହିଛି ଓ ସେଥିରେ ଅକ୍ଷର ବସାଣ ହୋଇଛି । ତା'ପରେ ଗୋଟିଏ ବା ଦୁଇଟି ଶ୍ଳୋକ, ଉପଦେଶ ମନ୍ତ୍ର ରହି ଓଡ଼ିଆରେ ବିସ୍ତୃତ ଭାବରେ ବର୍ଣ୍ଣନା କରାଯାଇଛି ।

**ସୃଷ୍ଟିଯନ୍ତ୍ର ଶ୍ଳୋକ-**

*"ମହାଶୂନ୍ୟ ପରେ ବାସ ଯଜ୍ଞାଦି ସର୍ବଶୂନ୍ୟକଂ*
*ସୃଷ୍ଟିକର୍ତ୍ତା ସ ମେ ଜ୍ଞାନଂ ପରା ପରମ ତେଜୟୋଃ ।"*

ମନ୍ତ୍ର- *"ଓଁ କ୍ଳୀଂ କୃଷ୍ଣାୟ ନମଃ ।"*

ଉପଦେଶ ମନ୍ତ୍ର- *ଓଁ କୃଷ୍ଣାୟ ଗୋବିନ୍ଦାୟ ଗୋପୀଜନ ବଲ୍ଲଭାୟ ନମଃ ।"*

ଗ୍ରନ୍ଥରେ ବର୍ଣ୍ଣିତ ବିଭିନ୍ନ ଯନ୍ତ୍ର ମାଧ୍ୟମରେ ପିଣ୍ଡ ବ୍ରହ୍ମାଣ୍ଡ ତତ୍ତ୍ୱ ବିଶ୍ଳେଷିତ ହୋଇଛି । ଏହି ଶରୀର ମଧ୍ୟରେ ନିତ୍ୟ ବୃନ୍ଦାବନ ଓ ସେଠାରେ ଚାଲିଛି ରାଧାକୃଷ୍ଣଙ୍କର ନିତ୍ୟ ରାସଲୀଳା । ସେ ନିତ୍ୟସୁଖ ରହିଛି କଦମ୍ବ ବୃକ୍ଷରେ ଓ ତାକୁ ହିଁ ମହାସୁଖ କୁହାଯାଏ ।

*"କଦମ୍ବ ବୃକ୍ଷ ପରେ ମହାସୁଖ । ନିରେଖି ଚାହିଁଲେ ଉପେଖ ଦୁଃଖ ।"*

ମହାପୁରୁଷ ଅଚ୍ୟୁତାନନ୍ଦଙ୍କ ଜୀବନୀ ସଂକ୍ରାନ୍ତୀୟ ବହୁ ଅମୂଲ୍ୟ ତଥ୍ୟ ଉକ୍ତ ଗ୍ରନ୍ଥରୁ ମିଳେ ।

*"ଚିତ୍ରୋତ୍ପଳା କୂଳେ ନେମାଳପୁର*
*ଅଚ୍ୟୁତଦାସର ଅଟଇ ଘର ।" (ବିରାଟ ଯନ୍ତ୍ର)*

ନାରଦ ଓ ଶ୍ରୀକୃଷ୍ଣଙ୍କ କଥୋପକଥନ ଛଳରେ ରଚିତ ଏହି ଗ୍ରନ୍ଥଟି ବ୍ରହ୍ମଜ୍ଞାନ ଏବଂ ଶରୀର ତତ୍ତ୍ୱ ଦୃଷ୍ଟିରୁ ବେଶ ତାତ୍ପର୍ଯ୍ୟପୂର୍ଣ୍ଣ ।

**୨୭- ଚବିଶ ଉପଦେଶ-** ଅଚ୍ୟୁତାନନ୍ଦଙ୍କ ଜୀବନୀ ଓ ବୈଷ୍ଣବ ତତ୍ତ୍ୱ ଦୃଷ୍ଟିରୁ ଏହି ଗ୍ରନ୍ଥଟି ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ଏଥିରେ ପ୍ରଥମ ଦିନରୁ ସନ୍ତାନର ମାତୃଗର୍ଭର ସମସ୍ତ ବିବରଣୀ, ମନର ମହତ୍ତ୍ୱ ଓ ଶ୍ରେଷ୍ଠତ୍ୱ, ପଞ୍ଚମନର ସ୍ୱରୂପ ଆଦି ବିଷୟ ବର୍ଣ୍ଣିତ ହୋଇଛି । ସାଧକ ମନକୁ ଆୟତ୍ତ କଲେ ସିଦ୍ଧିଲାଭ କରିପାରିବ ।

*"ମନ ଆୟତ୍ତରେ ସବୁ କରଇ । ମନ ଦ୍ୱାରା ଦିଗମ୍ବର ହୁଅଇ ।*
*ମନେ ଚିହ୍ନିଲେ ସବୁକୁ ପାଇ । ଚୈତନ୍ୟଟି ଗୁରୁ ରୂପରେ ରହି ।*
*ମନଟି ଶିଷ୍ୟ ସବୁଆଡ଼େ ଥାଇ । ମନ ନ ଧଇଲେ କିଛି ନୁହଇଁ ।"*

ଅଚ୍ୟୁତାନନ୍ଦ ଦ୍ୱାଦଶ ଗୋପାଳଙ୍କୁ ନେଇ ଯେଉଁ ବୃନ୍ଦାବନ ଲୀଳା କରିଥିଲେ ସେମାନଙ୍କ ମଧ୍ୟରୁ କେତେକଙ୍କ ନାମ ଏଥିରେ ଉଲ୍ଲେଖ କରାଯାଇଛି । ସେମାନେ ହେଲେ ପୁରୁଷୋତ୍ତମ, ଚକ୍ରଧର, ଦାଶରଥି, ଦୀନବଂଧୁ, କାଳିନ୍ଦୀ, କୁଞ୍ଜବନ ପ୍ରମୁଖ । ଶରୀର ମଧ୍ୟରେ ବୃନ୍ଦାବନ ଲୀଳାର ମହତ୍ତ୍ୱ ମଧ୍ୟ ଏଥିରେ ଦେଖାଇ ଦିଆଯାଇଛି । ବ୍ରହ୍ମଦର୍ଶୀ ହେବା ନିମନ୍ତେ ଅଚ୍ୟୁତାନନ୍ଦ କେତେକ ଉପଦେଶ ପାଳନ କରିବା ପାଇଁ କହିଛନ୍ତି । ସେସବୁ ହେଲା- କୀଟଠାରୁ ବ୍ରହ୍ମ ପର୍ଯ୍ୟନ୍ତ ସମସ୍ତଙ୍କୁ ସମାନ ଦୃଷ୍ଟିରେ ଦେଖିବ, ସତ୍ୟବାଦୀ ଓ ଧୈର୍ଯ୍ୟଶୀଳ ହେବ, ଗୁରୁ ଓ ବୈଷ୍ଣବଙ୍କୁ ସମଜ୍ଞାନ କରିବ, ଅହଂକାର ଦୂର କରିବ ଇତ୍ୟାଦି । ଶିଷ୍ୟ ରାମଚନ୍ଦ୍ରଙ୍କୁ ଅଚ୍ୟୁତାନନ୍ଦ ଏହିପରି ଚବିଶଟି ମୂଲ୍ୟବାନ ଉପଦେଶ ପ୍ରଦାନ କରିଛନ୍ତି । ଗ୍ରନ୍ଥର ଶେଷ ଅଧ୍ୟାୟରେ କବିଙ୍କର ଜୀବନ ଚରିତ ବର୍ଣ୍ଣିତ ହୋଇଛି ଯାହାକି ଇତିହାସ ଦୃଷ୍ଟିରୁ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ଏଥିରେ ନିଜର ପିତାମାତା, ବାଲ୍ୟଶିକ୍ଷା, ଗୁରୁଙ୍କ ପରିଚୟ ଓ ବେଶଭୂଷା, ଦୀକ୍ଷା ପ୍ରସଙ୍ଗ, ଗୁରୁ ପ୍ରଦତ୍ତ ନାମ ଆଦି ବିଷୟ ବିଶଦ ଭାବରେ ସ୍ଥାନ ପାଇଛି ।

*"ଦୀନବନ୍ଧୁ ନାମ ପିତା ମୋହର*
*ମାତା ନାମ ପଦ୍ମା ବଖାଣି ସାର ।*
*ଦଶ ବରଷେ ହେତୁ ହେଲା ପୁଣି*
*ବେଳୁଂ ଆଜ୍ଞା ଏକ ପୁରୁଷ ଜାଣି ।*
*ତ୍ରିପୁର ଗ୍ରାମ ମୋ ମନ୍ଦିର ବାସ*
*ବିଦ୍ୟା ପଢ଼ିଲି ମୁଁ ଅଟି ଭବିଷ୍ୟ ।*
*ବାଳକ ମେଳେ ନାନା ଖେଳରସ*
*କିଛୁଦିନ ଗଲା ବାଳ ବୟସ ।"*

**୨୮- ଚବିଶ ପଟଳ-** ଉକ୍ତ ଗ୍ରନ୍ଥରେ ଟିକିରା ଗୋହିରୀ ଯୁଦ୍ଧର ବିବରଣୀ ପ୍ରଦାନ ଓ ନଭେମ୍ବର ମାସର ନାମୋଲ୍ଲେଖ କରାଯାଇଥିବାରୁ ଏହା ପଞ୍ଚସଖା ଅନ୍ତର୍ଗତ ଅଚ୍ୟୁତାନନ୍ଦଙ୍କ ରଚନା ନୁହେଁ । ଏହା ପରବର୍ତ୍ତୀ କୌଣସି ବ୍ୟକ୍ତିଙ୍କ ଦ୍ୱାରା ରଚିତ ହୋଇ ଅଚ୍ୟୁତାନନ୍ଦଙ୍କ ନାମ ଭଣିତା ହୋଇଅଛି । ଏଥିରେ ଅଛି-

*''ଲୋମାଳ ତିନି ନଲୋମର*
*ବଧ୍ ବୋହିବ ତିନିଧାର ।''*

କେହି କେହି ଆଲୋଚକ ଏହାକୁ କୁମ୍ଭୀପଟିଆ ଅଚ୍ୟୁତାନନ୍ଦଙ୍କ ରଚନା ରୂପେ ଗ୍ରହଣ କରିଛନ୍ତି ।

**୨୯- ଚିତ୍ତବୋଧ-** ଚାରିଖଣ୍ଡରେ ପ୍ରକାଶିତ ଏହି ଗ୍ରନ୍ଥର ୧ମ ଓ ୨ୟ ଖଣ୍ଡରେ ଅଚ୍ୟୁତାନନ୍ଦ ଦାସଙ୍କ ନାମ ଭଣିତା ଅଛି । କିନ୍ତୁ ୩ୟ ଓ ୪ର୍ଥ ଖଣ୍ଡରେ ଲେଖା ହୋଇଛି ''ଅଚ୍ୟୁତାନନ୍ଦ ଦାସଙ୍କ ଭାବାନୁଯାୟୀ ଲେଖକ କ୍ଷେତ୍ରମୋହନ ପ୍ରଧାନଙ୍କ ଠାରୁ ସ୍ୱତ୍ୱ କ୍ରୀତ ।'' ଗ୍ରନ୍ଥଟିକୁ ଧର୍ମଗ୍ରନ୍ଥ ଷ୍ଟୋର, କଟକ ପ୍ରକାଶ କରିଛନ୍ତି ।

ଏଥିରେ ଗଣନାଥ, ମଧୁସୂଦନ, ଶିବ, ଜଗଦ୍ଧାତ୍ରୀ ଓ ସୂର୍ଯ୍ୟ ଆଦି ଦେବାଦେବୀଙ୍କୁ ବନ୍ଦନା କରାଯାଇଛି । ହରିବଂଶର କଥାବସ୍ତୁ ପ୍ରାୟତଃ ଏଥିରେ ସ୍ଥାନ ପାଇଥିବାରୁ ଏହାକୁ ହରିବଂଶର ଅଂଶ ବିଶେଷ ଭାବରେ ଗ୍ରହଣ କରାଯାଇପାରେ । ତେବେ ୧ମ, ୨ୟ ଖଣ୍ଡର ଭାଷା ଅପେକ୍ଷା ୩ୟ ଓ ୪ର୍ଥ ଖଣ୍ଡର ଭାଷା ଅର୍ବାଚୀନ ମନେହୁଏ । ହୁଏତ ୩ୟ ଓ ୪ର୍ଥ ଖଣ୍ଡ ପରବର୍ତ୍ତୀ ପ୍ରକ୍ଷେପ । ବଂଶୀର ମାହାତ୍ମ୍ୟ କବି ଲେଖନୀରେ ଏହିପରି ପ୍ରକାଶ ପାଇଛି ।

*''ଏହି ବଂଶୀଖଣ୍ଡ ମୋର ମହତ୍ତ୍ୱ ସାରିଲା*
*ଏହି ବଂଶୀଖଣ୍ଡ ସବୁ ମାନ ବୁଡ଼ାଇଲା*
*ଏହି ବଂଶୀଖଣ୍ଡ ମୋର ଧୈର୍ଯ୍ୟ କଲା ଭଙ୍ଗ*
*ଏହି ବଂଶୀଖଣ୍ଡ ଜୀର୍ଣ୍ଣଶୀର୍ଣ୍ଣ କଲା ଅଙ୍ଗ ।''*

ଏହି ଗ୍ରନ୍ଥ ସଂପର୍କରେ ସ୍ୱତନ୍ତ୍ର ଗବେଷଣାର ଆବଶ୍ୟକତା ରହିଛି ।

**୩୦- ଛ' ପୋଇ-** ରାଧାକୃଷ୍ଣଙ୍କର ମିଳନ ଓ ବିରହକୁ ଭିତ୍ତି କରି ରଚିତ ଏହି କ୍ଷୁଦ୍ର ରଚନାଟି ବେଶ ହୃଦୟସ୍ପର୍ଶୀ । ଶ୍ରୀକୃଷ୍ଣ ରାଧାଙ୍କ ସହିତ ମିଳିତ ହେବା ପାଇଁ ରାତିରେ ଚନ୍ଦ୍ରସେଣା ପୁରରେ ପହଞ୍ଚିଛନ୍ତି । ସେତେବେଳେ ରାଧା ତାଙ୍କ ନଣନ୍ଦଙ୍କ ସହିତ ନିଦ୍ରିତା । ଡ଼ାକିଡ଼ାକି କବାଟ ନ ଖୋଲିବାରୁ କୃଷ୍ଣ ମୁଣ୍ଡରେ କବାଟ ଠେଲି ଦେବାରୁ କଣ୍ଠାରେ ଆଘାତ ପାଇଛନ୍ତି । ରାଧା ତାଙ୍କର ପ୍ରେମ ନିବେଦନକୁ ଅଗ୍ରାହ୍ୟ କରିଦେବାରୁ କୃଷ୍ଣ ଆତୁର ହୋଇ ତାଙ୍କର ପାଦ ଧରିଛନ୍ତି । ତଥାପି ରାଧା ଅସମ୍ମତ ହେବାରୁ ଅପମାନିତ

ହୋଇ କୃଷ୍ଣ ବ୍ରହ୍ମାଙ୍କ ନିକଟରେ ପହଞ୍ଚି ସବୁକଥା କହିଛନ୍ତି । ପ୍ରତିକାର ସ୍ୱରୂପ ବ୍ରହ୍ମା ତାଙ୍କୁ ଦେଇଛନ୍ତି ଉଚ୍ଚାଟନ, ସ୍ତମ୍ଭନ, ମୋହନ ଓ ବଶୀକରଣର ମୋହନ ବଂଶୀ । ଏହିପରି ଚମତ୍କାର କଥାବସ୍ତୁ ରଚନାଟିରେ ବର୍ଣ୍ଣିତ ହୋଇଛି ।

**୩୧- ଛୟାଳିଶ ପଟଳ-** ଦୁଇଖଣ୍ଡରେ ପ୍ରକାଶିତ ଉକ୍ତ ଗ୍ରନ୍ଥର ୧ମ ଖଣ୍ଡରେ ୧ରୁ ୨୪ ପଟଳ ଓ ୨ୟ ଖଣ୍ଡରେ ୨୫ରୁ ୪୬ ପଟଳ ପର୍ଯ୍ୟନ୍ତ ରହିଛି । ସମୁଦାୟ ୪୬ଟି ପଟଳ ବା ଅଧାୟ ଥିବାରୁ ଏହି ଗ୍ରନ୍ଥର ଏପରି ନାମକରଣ ହୋଇଛି । କିନ୍ତୁ ବଳରାମ ଦାସଙ୍କର 'ବିରାଟ ଗୀତା' ଓ 'ଅମରକୋଷ ଗୀତା'ର କେତେକାଂଶ ଏଥିରେ ସନ୍ନିବେଶିତ ହୋଇଥିବାର ଦେଖାଯାଏ । ପଞ୍ଚସଖା ଧର୍ମ ଦର୍ଶନ ଦୃଷ୍ଟିରୁ ଏହା ଏକ ଗୁରୁତ୍ୱପୂର୍ଣ୍ଣ ଗ୍ରନ୍ଥ । ଏଥିରେ ସୃଷ୍ଟି ପ୍ରକ୍ରିୟା, ଶୂନ୍ୟ ପୁରୁଷ, ଅରୂପ ବ୍ରହ୍ମର ସ୍ୱରୂପ, ସଗୁଣ-ନିର୍ଗୁଣ ଉପାସନା, ହଠଯୋଗ, ଛାୟା-ଅବାଡ଼-ଜ୍ୟୋତି ସାଧନା ସଂପର୍କରେ ବିଶଦ ଭାବରେ ଆଲୋଚନା କରାଯାଇଛି । ସମସ୍ତଙ୍କ ହୃଦୟରେ ସେହି ଅରୂପବ୍ରହ୍ମ ବିଦ୍ୟମାନ । ତାଙ୍କର ସତ୍ତା ସଂପର୍କରେ କବି କୁହନ୍ତି-

*''ଦେଖ ତୋହର ହୃଦେ ସେହି । ସକଳ ଶୁଣାଇ ଶୁଣଇ ।*
*ସେ ପ୍ରଭୁ ମୋର ହୃଦେ ବିଜେ । କରି କରାଉଥାନ୍ତି ନିଜେ ।*
*ମୋ ହୃଦେ ଥାଇଣ କହନ୍ତି । ତୋ ହୃଦେ ଥାଇଣ ଶୁଣନ୍ତି ।''*

*(୩ୟ ପଟଳ)*

ରୂପ ଭଜନରେ କେବେହେଲେ ସିଦ୍ଧିଲାଭ ହୁଏ ନାହିଁ । ନିର୍ଗୁଣ ବ୍ରହ୍ମ ଉପାସନା ଜୀବର ଏକାନ୍ତ କାମ୍ୟ । ସେଥିପାଇଁ ରୂପ ଭଜନର ଅସାରତା ସଂପର୍କରେ ସେ କୁହନ୍ତି-

*''ରୂପ ଭଜନ ଯେ କରଇ । କେବେ ହେଁ ତରି ନ ପାରଇ ।''*

*(୮ମ ପଟଳ)*

ସାଧକ ସାଧନାରେ ସିଦ୍ଧିଲାଭ କରି ଜ୍ୟୋତି ବା ପରଂବ୍ରହ୍ମ ଦର୍ଶନ କରିଥାଏ । ଏହା ଶୈବ ନିମନ୍ତେ ଶିବ ଦର୍ଶନ, ବୈଷ୍ଣବ ନିମନ୍ତେ ବିଷ୍ଣୁ ଦର୍ଶନ ଓ ଶାକ୍ତ ନିମନ୍ତେ ଶକ୍ତି ଦର୍ଶନ ତୁଲ୍ୟ ।

**୩୨- ଠୁଳଶୂନ୍ୟ ରାସ-** କ୍ଷୁଦ୍ର କଳେବର ବିଶିଷ୍ଟ ଏହି ରଚନାରେ କବି ଯୋଗମାର୍ଗ ଉପରେ ପ୍ରାଧାନ୍ୟ ଦେବା ସଙ୍ଗେ ସଙ୍ଗେ ମନକୁ ଆୟତ୍ତ କରିବା ପାଇଁ କହିଛନ୍ତି । ଯଶୋଦାସୁତ ଶ୍ରୀକୃଷ୍ଣ ହେଉଛନ୍ତି ଜୀବ ପରମର ଏକୀଭୂତ ରୂପ । ତାଙ୍କୁ ଲାଭ କରିବା

କେବଳ ରାସଲୀଳା ମାଧ୍ୟମରେ ହିଁ ସମ୍ଭବ । ଶରତ ପୂର୍ଣ୍ଣମୀ ରାତିରେ ଗୋପାଙ୍ଗନାମାନଙ୍କ ସହିତ ରାଧାଙ୍କର ପୁଚିଖେଳ ହୋଇଛି । ଜଣେ ସଖୀ, ଶ୍ରୀକୃଷ୍ଣ ରାଧାଙ୍କ ନିକଟରେ ସର୍ବଦା ଅଛନ୍ତି ବୋଲି ପ୍ରକାଶ କରିଛି ।

*"ରାଧେ ଗୋ ! ତୁମ୍ଭ କୁଚ ଯୁଗଳେ*
*ଲୁଚି ରହିଥାନ୍ତି ସବୁବେଳରେ ।"*

ସଖୀଙ୍କ ଏପରି ଉକ୍ତିରେ ରାଧା କହିଛନ୍ତି ସେ ହେଉଛନ୍ତି ମାଇଁ ଓ ଶ୍ରୀକୃଷ୍ଣ ଭଣଜା । ସବୁଗୋପୀଙ୍କୁ ଶ୍ରୀକୃଷ୍ଣ ସମାନ ଦୃଷ୍ଟିରେ ଦେଖନ୍ତି । ତା'ପରେ ସେଠାରେ ଶ୍ରୀକୃଷ୍ଣ ପ୍ରବେଶ କରି ସେମାନଙ୍କ ସହିତ ପୁଚି ଖେଳିଲେ ଓ ସମସ୍ତେ ପଦ୍ମକାନନକୁ ଗଲେ । ସେଠାରେ ନିତ୍ୟରାସ ଅନୁଷ୍ଠିତ ହେଲା । ରାଧାକୃଷ୍ଣଙ୍କର ଏହି ନିତ୍ୟରାସଲୀଳାକୁ କବି ଜୀବ ଓ ପରମର ମଧୁର ମିଳନ ଭାବେ ଗ୍ରହଣ କରିଛନ୍ତି ।

**୩୩- ତତ୍ତ୍ୱବୋଧିନୀ-** ଏହି ଗ୍ରନ୍ଥଟି 'ତତ୍ତ୍ୱବୋଧିନୀ ଟୀକା' ଓ 'ତତ୍ତ୍ୱବୋଧିନୀ ଗୀତା' ନାମରେ ପ୍ରଚଳିତ ଅଛି । ଏଥିରେ ଶିଷ୍ୟ ରାମଦାସଙ୍କର ଗୂଢ଼ତତ୍ତ୍ୱମୂଳକ ପ୍ରଶ୍ନର ଉତ୍ତର ଦେଉଛନ୍ତି ଗୁରୁ ଅଚ୍ୟୁତାନନ୍ଦ । ଗୂଢ଼ତତ୍ତ୍ୱ ବୁଝିବାରେ ଗ୍ରନ୍ଥଟି ସାହାଯ୍ୟ କରୁଥିବାରୁ ଏହାର ଏପରି ନାମକରଣ କରାଯାଇଛି ।

ଏହି ଗ୍ରନ୍ଥରେ ଓଁକାରର ବୈଶିଷ୍ଟ୍ୟ, ଗୁରୁଙ୍କ ପ୍ରାଧାନ୍ୟ, ଛାୟା-ଅବାଡ଼-ଜ୍ୟୋତି ଯୋଗର ପ୍ରକାର ଓ ସ୍ୱରୂପ, ମନର ମହାତ୍ମ୍ୟ, ନାମ ମାାହାତ୍ମ୍ୟ, ଏକାକ୍ଷର ମନ୍ତ୍ର, ପରମାତ୍ମାଙ୍କ ସ୍ୱରୂପ, ପଞ୍ଚଭୂତ, ପଞ୍ଚବେଦ ସୃଷ୍ଟି ଆଦି ବ୍ରହ୍ମଜ୍ଞାନ ମୂଳକ ତତ୍ତ୍ୱ ସଂପର୍କରେ ଆଲୋଚିତ ହୋଇଛି । କଳିକାଳରେ ଓଡ଼ିଶାର ଭବିଷ୍ୟତ କଣ ହେବ ସେକଥା ମଧ୍ୟ କବି ସୂଚନା ଦେଇଛନ୍ତି । ନାରୀମାନଙ୍କର ନୈତିକ ଅଧଃପତନ ସଂପର୍କରେ କବି କହନ୍ତି-

*"ମୂର୍ତ୍ତିମନ୍ତ ପୁଂସ ଦେଖିଲେ ନାରୀ*
*ସ୍ୱାମୀ ଛାଡ଼ି ପର ସଙ୍ଗେ ବିହରି ।*
*ବାହୁ ଟେକି ଦେଖାଇବେ ଯୌବନ*
*କାଢ଼ିବେ ଦୁକୂଳ ଦିଶିବ ସ୍ତନ ।"*

ଏକାଦଶାକ୍ଷରୀ ଚକ୍ରକେଳି ବୃତ୍ତରେ ରଚିତ ଏହି ଗ୍ରନ୍ଥର ଭାଷା ସରଳ ହେଲେ ହେଁ ତତ୍ତ୍ୱ ବ୍ୟାଖ୍ୟା ସମୟରେ ସ୍ଥାନେ ସ୍ଥାନେ ଦୁର୍ବୋଧ ହୋଇଛି ।

**୩୪- ଦଶପଟଳ ମାଳିକା-** ଏହି ଗ୍ରନ୍ଥରେ ଶିଷ୍ୟ ରାମଦାସଙ୍କ ବିଭିନ୍ନ ତତ୍ତ୍ୱମୂଳକ ପ୍ରଶ୍ନର ଉତ୍ତର ଦେଉଛନ୍ତି ଗୁରୁ ଅଚ୍ୟୁତାନନ୍ଦ । ବୈଷ୍ଣବୀୟ ତତ୍ତ୍ୱ ସହିତ ଭବିଷ୍ୟତର କେତେକ ଘଟଣା ମାଳିକା ଶୈଳୀରେ ଏଥିରେ ବର୍ଣ୍ଣିତ ହୋଇଛି । ବିଭିନ୍ନ ଯୁଗରେ ପଞ୍ଚସଖା ଭଗବାନଙ୍କ ଅବତାର ସହିତ ସଖା ଭାବରେ ଅବତୀର୍ଣ୍ଣ ହୋଇଥିବା କଥା ଗ୍ରନ୍ଥରେ ଉଲ୍ଲେଖ ଅଛି । ସେମାନେ ସତ୍ୟ ଯୁଗରେ ନିରଞ୍ଜନ, ତ୍ରେତୟାରେ ରାମଚନ୍ଦ୍ର, ଦ୍ୱାପରରେ ଶ୍ରୀକୃଷ୍ଣ ଓ କଳିଯୁଗରେ ଶ୍ରୀଚୈତନ୍ୟଙ୍କର ପଞ୍ଚସଖା ଭାବରେ ପରିଚିତ ଥିଲେ । ପୁଣି ଭଗବାନ କଳ୍କୀ ଅବତାର ଗ୍ରହଣ କଲେ ଏମାନେ ମାନବ ଦେହ ଧାରଣ କରି ତାଙ୍କର ପଞ୍ଚସଖା ହୋଇ ଜନ୍ମ ହେବେ ।

କିନ୍ତୁ ଏହି ଗ୍ରନ୍ଥରେ ପରବର୍ତ୍ତୀ ସମୟର କେତେକ ଐତିହାସିକ ଘଟଣା ବର୍ଣ୍ଣିତ ହୋଇଛି । ଖୋର୍ଦ୍ଧା ରାଜା ବୀରକେଶରୀ ଦେବଙ୍କ ରାଜତ୍ୱକାଳର ଓଡ଼ିଶାର ଅବସ୍ଥାକୁ କବି ଲେଖିଛନ୍ତି-

*"ନୀଚଲୋକଟି ବଳିଆର ହେବେ*
*ଖଚୁଆ ଜାତି ଘରେ ଲୁଚାଇବେ ।*
*ରାଜା ବନ୍ଧନେ ପଡ଼ିଥିବେ ରହି*
*ଶ୍ରୀବନ୍ତ ବୀରକେଶରୀଙ୍କ କହି ।*
*ନଥିବ କିଛି ରାଜନୀତି ମାନ*
*ଦୁଃଖ ପାଉଥିବେ ଧରା ହୋଇଣ ।"*

ରାଜା ବୀରକିଶୋର ଦେବଙ୍କ ୨୯ ଅଙ୍କ ଅର୍ଥାତ୍ ୧୭୬୭ ଖ୍ରୀଷ୍ଟାବ୍ଦରେ ମୁସଲମାନ ଶାସକ କତୁଲ ଖାଁ ପୁରୀ ଓ ଅନ୍ୟାନ୍ୟ କେତେକ ହିନ୍ଦୁକୀର୍ତ୍ତି ଧ୍ୱଂସ କରିଥିଲେ । ଅଷ୍ଟାଦଶ ଶତାବ୍ଦୀର ଘଟଣା ଏହି ଗ୍ରନ୍ଥରେ ବର୍ଣ୍ଣିତ ହୋଇଥିବାରୁ ଏହାକୁ ମହାପୁରୁଷ ଅଚ୍ୟୁତାନନ୍ଦଙ୍କ ରଚନା ଭାବରେ ଗ୍ରହଣ କରିବାକୁ ନିରାପଦ ମନେହୁଏ ନାହିଁ । ହୁଏତ ଏସବୁ ପ୍ରକ୍ଷିପ୍ତାଂଶ । ପରବର୍ତ୍ତୀ କାଳରେ କୌଣସି ଶିଷ୍ୟ ଏସବୁକୁ ସଂଯୁକ୍ତ କରିଛି ।

**୩୫- ନିତ୍ୟରାସ-** ପାଞ୍ଚ ଅଧ୍ୟାୟ ବିଶିଷ୍ଟ ଏହି ରଚନାଟିରେ କବି ନିତ୍ୟରାସ ସ୍ଥଳୀ, ରାଧାକୃଷ୍ଣ ଯୁଗଳ ମୂର୍ତ୍ତି, ନିତ୍ୟରାସର ମାହାତ୍ମ୍ୟ, ଗୋଲାହାଟର ନିତ୍ୟଲୀଳା ପ୍ରସଙ୍ଗ ବିଶଦ ଭାବରେ ବର୍ଣ୍ଣନା କରିଛନ୍ତି । ବୈଷ୍ଣବ ଧର୍ମର ଗୂଢ଼ତତ୍ତ୍ୱ ଏହିଗ୍ରନ୍ଥରେ ପ୍ରକାଶ ପାଇଛି । ନିତ୍ୟରାସ ସ୍ଥଳୀରେ ବିଜେ କରିଥିବା ରାଧାକୃଷ୍ଣ ସ୍ୱରୂପ ବର୍ଣ୍ଣନା କରି କବି ଲେଖିଛନ୍ତି-

*"ରୂପରେଖ ବର୍ଣ୍ଣ ସେଠାରେ ନାହିଁ*
*ସିଂହାସନ ବେଢ଼ି ଅଛି ସେଠାଇଁ ।*
*ଚତୁର୍ଦ୍ଧା ମୂରତି ଏକଇ ରୂପ*
*ଅଣ ସାଧନାରେ ଦେଖ ଅଲେଖ ।"*

ଗୋଲାହାଟରେ ଥିବା ଚଉଷଠି ଅକ୍ଷରରେ ରାଧା ବିଶ୍ରାମ କରିଛନ୍ତି । ସେଠାରେ ଫୁଟିଥିବା ସହସ୍ର ଦଳ ପଦ୍ମ ପାଖୁଡ଼ାରୁ ରସ ଗଳୁଛି । ସେହି ପଦ୍ମ ଉପରେ ଥିବା କିଶୋରୀ ରାଧାଙ୍କର ବର୍ଣ୍ଣ ଅରୁଣ । ନୀଳବର୍ଣ୍ଣର ନବୀନ କିଶୋର ଶ୍ରୀକୃଷ୍ଣ ତାଙ୍କ ସହିତ ରହି ଲୀଳା କରୁଛନ୍ତି ।

**୩୬- ନିର୍ଘଣ୍ଟ-** ନଅ ସର୍ଗ ବିଶିଷ୍ଟ ଏହି କ୍ଷୁଦ୍ର ଗ୍ରନ୍ଥରେ ଶିଷ୍ୟ ରାମଦାସଙ୍କୁ ଗୁରୁ ଅଚ୍ୟୁତାନନ୍ଦ ଆଗତ ଭବିଷ୍ୟତ କଥା ଶୁଣାଇଛନ୍ତି । କଳିଯୁଗରେ କିପରି ନାନାପ୍ରକାର ଦୁର୍ଘଟଣା ଘଟିବ, ବିପଦ ମାଡ଼ି ଆସିବ ତାର ବିବରଣୀ ଏଥିରେ ପ୍ରକାଶ ପାଇଛି । ଚବିଶ ଅଙ୍କରୁ ଅଣଚାଶ ଅଙ୍କ ପର୍ଯ୍ୟନ୍ତ ମହାଗୋଳ ହେବ, ଛତିଆବଟରେ ଦେବୀଗଣ ଜାତ ହେବେ, ବଉଧ ରୂପରେ ପ୍ରଭୁ ଛତିଆ ବଟରେ ଲୀଳା କରିବେ, ୪୪ ଅଙ୍କରେ ବାଟଘାଟରେ ଗୋଳଯୁଦ୍ଧ ହେବ, ପ୍ରଭୁ କଳ୍କୀ ରୂପ ଧାରଣ କରି ଦୁଷ୍ଟମାନଙ୍କୁ ସଂହାର କରିବେ ଇତ୍ୟାଦି । ହେଲେ ଏଥିରେ ଥିବା ଅଙ୍କ କେଉଁ ରାଜାଙ୍କର ତାହା ଜଣା ପଡ଼େନାହିଁ । ଏପରି ବହୁ ଉଦ୍‌ଭଟ ପରିକଳ୍ପନା ଓ ପରବର୍ତ୍ତୀ ଘଟଣା ଏହି ଗ୍ରନ୍ଥରେ ସ୍ଥାନ ପାଇଛି । ତେଣୁ ଏହି ଗ୍ରନ୍ଥରେ ଅଚ୍ୟୁତାନନ୍ଦଙ୍କ ପରବର୍ତ୍ତୀ କାଳର ଭକ୍ତଜନ ପ୍ରକ୍ଷିପ୍ତ ଅଂଶ ସଂଯୋଗ କରିଥିବା ମନେହୁଏ ।

**୩୭- ପରମ ଜ୍ଞାନ ଗୀତା-** ଏହି କ୍ଷୁଦ୍ର ରଚନାଟିରେ କବି ପିଣ୍ଡ ବ୍ରହ୍ମାଣ୍ଡ ତତ୍ତ୍ୱ ଉପରେ ଗୁରୁତ୍ୱାରୋପ କରିଛନ୍ତି । ଜୀବାତ୍ମା ଓ ପରମାତ୍ମାଙ୍କର ମିଳନ ପାଇଁ କାୟା ସାଧନାର ଆବଶ୍ୟକତା ରହିଛି । ଏହି ଶରୀର ରୂପୀ ଘଟ ହେଉଛି ପ୍ରକୃତରେ ବ୍ରହ୍ମ । ତେଣୁ କୌଣସି ପ୍ରକାର ପିତୁଳା ପୂଜା ନକରି କେବଳ ଘଟ ସାଧନା କଲେ ବ୍ରହ୍ମପ୍ରାପ୍ତି ହୋଇଥାଏ ବୋଲି କବିଙ୍କ ମତ । ସେଥିପାଇଁ ସେ ଲେଖିଛନ୍ତି-

*"ଦୁର୍ଲ୍ଲଭ ଏ ନରଘଟ ଏଥୁ ଶ୍ରେଷ୍ଠ ନାହିଁ*
*ଘଟକୁ ଛାଡ଼ିଲେ ମନ ପାଇବୁ ତୁ କାହିଁ ।*
*ଜଗତେ ପୂରିଛି ସେହି ନ ଦେଖନ୍ତି କେହି*
*ପ୍ରତିମା ପିତୁଳା ପୂଜି ହେଉଥାନ୍ତି ବାଇ ।"*

ଏହା ସହିତ ପଞ୍ଚମନ ଓ ପଞ୍ଚଭୂତ ସଂପର୍କରେ ମଧ୍ୟ କବି ଏହି ଗ୍ରନ୍ଥରେ ଆଲୋଚନା କରିଛନ୍ତି ।

**୩୮- ପରାର୍ଦ୍ଧ-** ଏହି ଗ୍ରନ୍ଥରେ ସମୁଦାୟ ସତରଟି ଅଧ୍ୟାୟ ବା ପରାର୍ଦ୍ଧ ରହିଛି । ପଞ୍ଚସଖାଙ୍କ ମଧ୍ୟରୁ ପ୍ରତ୍ୟେକ କବି ଯିଏ ଯେଉଁ ପରାର୍ଦ୍ଧଟି ରଚନା କରିଛନ୍ତି, ସେଇଟି ତାଙ୍କ ନାମରେ ଭଣିତା କରାଯାଇଛି । ବଳରାମ ଦାସ ପାଞ୍ଚଟି, ଅଚ୍ୟୁତାନନ୍ଦ ଦାସ ଦୁଇଟି, ଜଗନ୍ନାଥ ଦାସ ଗୋଟିଏ, ଯଶୋବନ୍ତ ଦାସ ଚାରୋଟି ଓ ଅନନ୍ତ ଦାସ ପାଞ୍ଚଟି ପରାର୍ଦ୍ଧ ରଚନା କରିଛନ୍ତି । ଅଚ୍ୟୁତାନନ୍ଦ ଲେଖିଥିବା ଦୁଇଟି ପରାର୍ଦ୍ଧ ମଧ୍ୟରୁ ପଞ୍ଚମ ପରାର୍ଦ୍ଧରେ ଭବିଷ୍ୟତବାଣୀ ଶୁଣାଇ କୁହାଯାଇଛି ଯେ-

*''ଗୋରା ଜଣେ କେହି ଚହିଁ ନଥିବ*
*କଳା ମନୁଷ୍ୟ ରାଜୁଟି କରିବ ।''*

ଗୋରା ଓ କଳା ଶବ୍ଦ ପ୍ରୟୋଗ ସହ ଭାଷାର ସାବଲୀଳତା ପରବର୍ତ୍ତୀ କାଳର ରଚନା ବୋଲି ପାଠକ ମନରେ ଭ୍ରମ ଜନ୍ମାଏ । ତେଣୁ ଏହା ପରବର୍ତ୍ତୀ ସମୟର ଅନ୍ୟଜଣେ ଅଚ୍ୟୁତାନନ୍ଦଙ୍କ ରଚନା ବୋଲି କୁହାଯାଇପାରେ ।

**୩୯- ପଦ୍ମକଳ୍ପ-** ଏହି ଗ୍ରନ୍ଥରେ ଅଚ୍ୟୁତାନନ୍ଦ ତାଙ୍କର ଶିଷ୍ୟ ରାମଚନ୍ଦ୍ରଙ୍କୁ କଳିଯୁଗ ସଂପର୍କରେ ଭବିଷ୍ୟବାଣୀ ଶୁଣାଇଛନ୍ତି । ଏହା ଏକ ମାଳିକା ଜାତୀୟ ରଚନା । ତିନି ଅଧ୍ୟାୟ ବିଶିଷ୍ଟ ଉକ୍ତ ଗ୍ରନ୍ଥର ପ୍ରଥମ ଅଧ୍ୟାୟରେ ଆଧୁନିକ ଯୁଗର ଚାଲିଚଳଣିକୁ ନିନ୍ଦା କରାଯାଇଛି ଓ ପ୍ରଭୁ ଛତିଆବଟରେ ଲୀଳା କରିବେ ବୋଲି ଉଲ୍ଲେଖ ଅଛି । ଦ୍ୱିତୀୟ ଅଧ୍ୟାୟରେ ଦିବ୍ୟସିଂହ ଦେବଙ୍କୁ ଫିରିଙ୍ଗି ଧରି ନେଇ ବନ୍ଦୀ କରି କଟକରେ ରଖିବା କଥା ବର୍ଣ୍ଣିତ ହୋଇଛି । ତୃତୀୟ ଅଧ୍ୟାୟରେ କବି ଭକ୍ତମାନଙ୍କର ବିବରଣୀ ପ୍ରଦାନ କରିଛନ୍ତି । ଏପରିକି ଏହି ଗ୍ରନ୍ଥରେ ମହାନଦୀର ହୀରାକୁଦ ବନ୍ଧ କଥା ମଧ୍ୟ କୁହାଯାଇଛି ।

*''ଯେତେବେଳେ ଦେଖିବୁ ହେ ମହାନଦୀ ବନ୍ଧ*
*କୁଦହୀରା ନାମେ ଏକ ହୋଇବ ଯେ ବନ୍ଧ ।''*

ଆଧୁନିକ ଭାଷା, ଇଂରାଜୀ ଶବ୍ଦର ବ୍ୟବହାର ଓ ପରବର୍ତ୍ତୀ ସମୟର ଐତିହାସିକ ଘଟଣାର ପରିପ୍ରକାଶ ଯୋଗୁଁ ହିଁ ଗ୍ରନ୍ଥକୁ ଅଚ୍ୟୁତାନନ୍ଦଙ୍କ ରଚନା ରୂପେ ଗ୍ରହଣ କରାଯିବା ସନ୍ଦେହଜନକ ।

**୪୦- ପଦ୍ମବନ ରାସ-** ଏହି ଗ୍ରନ୍ଥରେ ରାଧାକୃଷ୍ଣଙ୍କର ରାସଲୀଳା ବର୍ଣ୍ଣନା କରିବାକୁ ଯାଇ କବି ଚତୁର୍ଦ୍ଧା ମୂର୍ତ୍ତି ଓ ରାସ ମଣ୍ଡଳର ବିଶଦ ବର୍ଣ୍ଣନା କରିଛନ୍ତି । ଶରୀର ମଧ୍ୟରେ ଥିବା ପଦ୍ମବନରେ ନିତ୍ୟ ରାସଲୀଳା ଲାଗିଛି ଜୀବ ଆଉ ପରମଙ୍କର । ସହସ୍ରାର ପଦ୍ମରେ ସେହି ଜୀବ ପରମ ରୂପୀ ରାଧାକୃଷ୍ଣ ଲୀଳା କରୁଛନ୍ତି । ଅନ୍ୟାନ୍ୟ ରାସ ପରି ଶରୀର ଭେଦ ବ୍ରହ୍ମଜ୍ଞାନ ମୂଳକ ନିତ୍ୟରାସ ଲୀଳାର ବର୍ଣ୍ଣନା କବି ଏଥିରେ କରିଛନ୍ତି ।

*"ସପ୍ତଫେଣୀ ପରେ ସେ ସିଂହାସନ*
*ଅର୍ଦ୍ଧ ଅଗନାମ ଧାମରେ ଚିହ୍ନ ।*
*ସୁଦର୍ଶନ ବୋଲି ତାହାକୁ କହି*
*ବଟ ଭଇରବୀ ଅଟନ୍ତି ସେହି*
*ସଖୀଗୋ ! ଗଙ୍କ ସୁଦୟା ହେଲେ*
*ପଦ୍ମବନ ରାସ ଦେଖିବୁ ଭଲେ ।"*

**୪୧- ବଟ ସଂହିତା-** ଏହି କ୍ଷୁଦ୍ର ଗ୍ରନ୍ଥରେ ଅଚ୍ୟୁତାନନ୍ଦ କେଉଁ ବଟର କି କି ଗୁଣ ତାହା ପ୍ରକାଶ କରିଛନ୍ତି । ବିଭିନ୍ନ ବଟର ପରିଚୟ ଦେଇକେଉଁ ବଟଠାରେ କେଉଁ କେଉଁ ସିଦ୍ଧସାଧକ ମାନେ ଅଛନ୍ତି ତାହା ମଧ୍ୟ ଗ୍ରନ୍ଥରେ ସ୍ଥାନ ପାଇଛି । କବି ଲେଖିଛନ୍ତି-

*"ବଟେକ ଅଛି କାଠହାର ପରେ । ମାହାଳ ବନ ପଶ୍ଚିମ ଭାଗରେ ।*
*କହ୍ଲାବର ବୋଲି ବଟର ନାମ । ସିଦ୍ଧ ଜଣେକ କରିଛି ବିଶ୍ରାମ ।*
*ମାହାଳ ମୂଳେ ଏକ ଭକ୍ତ ଅଛି । କଳ୍କୀ ରୂପକୁ ଧ୍ୟାନ କରୁଛି ।*
*ପରମ ହଂସଙ୍କ ପୂର୍ବ ଭାଗରେ । ବଟେକ ଅଛଇ ସେହି ଠାବରେ ।"*

ପୂଣ୍ୟପୀଠ 'ତମାଳ କୁଦ', ଭଗବତୀଙ୍କ ପୂର୍ବଭାଗରେ ଥିବା ବଟ ଓ ସିଦ୍ଧବଟ ଥିଲା ବହୁ ମୁନିଋଷିଙ୍କର ସାଧନା ସ୍ଥଳ । ନେମାଳଠାରେ ଥିବା ଅଚ୍ୟୁତାନନ୍ଦଙ୍କ ବଟ ସଂପର୍କରେ କୁହାଯାଇଛି-

*"ନେମାଳ ଗ୍ରାମରେ ଅଚ୍ୟୁତ ବଟ*
*ସର୍ବବଟ ପରେ ଅଟଇ ଶ୍ରେଷ୍ଠ ।"*

ଶିଷ୍ୟ ରାମଚନ୍ଦ୍ର ଓ ଗୁରୁ ଅଚ୍ୟୁତାନନ୍ଦଙ୍କ କଥୋପକଥନ ଛଳରେ ବିଭିନ୍ନ ଭକ୍ତମାନଙ୍କ ପ୍ରସଙ୍ଗ ସହିତ ପଞ୍ଚସଖାଙ୍କର ଜନ୍ମ ବୃତ୍ତାନ୍ତ ମଧ୍ୟ ଗ୍ରନ୍ଥରେ ସ୍ଥାନ ପାଇଛି ।

**୪୨- ବରଣ ଚରିତ ଗୀତା-** ଉକ୍ତ ଗ୍ରନ୍ଥଟି ଡଃ ରତ୍ନାକର ଚଇନିଙ୍କ ଦ୍ୱାରା ସଂପାଦିତ ହୋଇ ପ୍ରକାଶ ପାଇଛି । ଶିଷ୍ୟ ରାମଦାସଙ୍କ ପ୍ରଶ୍ନର ଉତ୍ତର ଦେଉଛନ୍ତି ଗୁରୁ ଅଚ୍ୟୁତାନନ୍ଦ । କବି ଗ୍ରନ୍ଥ ଆରମ୍ଭରେ "ଓଁ ଜଗନ୍ନାଥଦେବାୟ ନମଃ" ଲେଖିଛନ୍ତି । ଏଥିରେ ଅତିଥି ବରଣ, ମୋକ୍ଷ ପଇତା, ବେଶରୂପ, ଗୁରୁପ୍ରଣାଳୀ ସଂପର୍କୀୟ ବହୁ ତଥ୍ୟ ସନ୍ନିବେଶିତ ହୋଇଛି । ଅଚ୍ୟୁତାନନ୍ଦଙ୍କ ଶ୍ରୀକ୍ଷେତ୍ର ଅବସ୍ଥାନ କାଳରେ ଶ୍ରୀଚୈତନ୍ୟ ମଧ୍ୟ ସେଠାରେ ଅବସ୍ଥାନ କରୁଥିବା କଥା ଗ୍ରନ୍ଥରୁ ଜଣାପଡ଼େ । ଗୋପ ଓ ନଦିଆରେ ରାସଲୀଳା ଅନୁଷ୍ଠିତ ହୋଇଥିଲା । କିନ୍ତୁ ଓଡ଼ିଶାରେ ପ୍ରଥମେ ସାରଳା ପୀଠରେ ରାସଲୀଳା ଆରମ୍ଭ କରିଥିଲେ ଅଚ୍ୟୁତାନନ୍ଦ । ଗ୍ରନ୍ଥରେ ଅଛି-

*"ଗୋପରେ ରାହାସ ନଦୀଆରେ କୀରିତନ*
*ଏଥି ଉଦେ କଲୁ ଏବେ ରାହାସ କୀର୍ତ୍ତନ ।*
*ତିନି ଥାନୁଂ ଚାରିଥାନ ନାହିଁଟି ରାହାସ*
*ଏ ମଞ୍ଚ ମଣ୍ଡଳେ ଯେତେ ବଇଷ୍ଣମ ଦାସ ।*
*କଳିରେ ରାହାସ ଥାନ ଅଟଇ କଂଖେର*
*ସଂକୀର୍ତ୍ତନ ଆରମ୍ଭ ଯେ ନଦୀଯା ନଗର ।"*

ସାରଳା ପୀଠରେ ଅନୁଷ୍ଠିତ ହେଉଥିବା ରାହାସ ଓ ସଂକୀର୍ତ୍ତନରେ ସାରଳା ଦାସଙ୍କ ନାତି ଅଂଶ ଗ୍ରହଣ କରିଥିଲେ ବୋଲି କବି ଲେଖିଛନ୍ତି ।

*"ବହୁତ ଗୋପାଳ ମେଳ ଗୁରୁବାର ଦିନ*
*ସାରୋଳ ଦାସ ନାତି ଆସନ୍ତି ସେ ଥାନ ।"*

ଗ୍ରନ୍ଥର ଶେଷ ଭାଗରେ ମାଳିକା ପରି ଆଗତ ଭବିଷ୍ୟ କଥା ବର୍ଣ୍ଣିତ ହୋଇଛି । ଇନ୍ଦ୍ରରାଜା ଜଳଦାନ କରିବେ ନାହିଁ, ଭାର୍ଯ୍ୟା ପତିକୁ ବିଶ୍ୱାସ କରିବ ନାହିଁ, ମାତା ପୁତ୍ର ଅପେକ୍ଷା କନ୍ୟାକୁ ଅଧିକ ଭଲ ପାଇବ, କଳିଯୁଗର ଅବସାନ ପରେ ପୁଣି ସତ୍ୟଯୁଗର ଆଗମନ ହେବ ଇତ୍ୟାଦି ଏହାର ଅନ୍ତର୍ଭୁକ୍ତ । ୧୧୨୬ ପଦ ବିଶିଷ୍ଟ ଏହି ରଚନାଟିର ଭାଷା ସହଜ ଓ ସରଳ ।

**୪୩- ବର୍ଣ୍ଣଟୀକା ପୁରାଣ-** କବି ଏହି ଗ୍ରନ୍ଥରେ ନିଜର ଜନ୍ମ, ବିବାହ, ବଂଶବୃକ୍ଷ ଆଦି ବିଷୟ ବିଶଦ ଭାବରେ ବର୍ଣ୍ଣନା କରିଛନ୍ତି । ଏଥିରେ ଅଛି, ତାଙ୍କର ପିତାମହ ଗୋପୀନାଥ ଶ୍ରୀକ୍ଷେତ୍ରରେ ଛାମୁକରଣ କାର୍ଯ୍ୟ କରୁଥିଲେ । କିନ୍ତୁ ତାଙ୍କର ପିତା ଦୀନବନ୍ଧୁ,

ଖୁଣ୍ଟିଆ କର୍ମକରି ରାଜା ପ୍ରତାପରୁଦ୍ର ଦେବଙ୍କ ଠାରୁ ଖୁଣ୍ଟିଆ ଉପାଧି ପ୍ରାପ୍ତ ହୋଇଥିଲେ । ତାଙ୍କ ମାତାଙ୍କ ନାମ ପଦ୍ମାବତୀ । ଅଚ୍ୟୁତାନନ୍ଦ ଏହି ଗ୍ରନ୍ଥରେ ତାଙ୍କର ପୂର୍ବଜନ୍ମ ବୃତ୍ତାନ୍ତ ବର୍ଣ୍ଣନା କରିଛନ୍ତି । ସେଥିରୁ ଜଣାଯାଏ ଯେ ସତ୍ୟଯୁଗରେ କୃପାଜଳ ବ୍ରାହ୍ମଣ, ତ୍ରେତୟା ଯୁଗରେ ନଳ ଓ ଦ୍ୱାପର ଯୁଗରେ ସୁଦାମ ଭାବରେ ଜନ୍ମ ଗ୍ରହଣ କରିଥିଲେ । ସେଥିଲେ ଜାତିଭେଦର ଘୋର ବିରୋଧୀ । ଶୂଦ୍ର ଅନ୍ୟର ସେବାରେ ନିଜକୁ ସଂପୂର୍ଣ୍ଣ ଭାବରେ ଉତ୍ସର୍ଗ କରିଥାଏ । ଏହି ସେବାଭାବ ହିଁ ପ୍ରକୃତରେ ଭକ୍ତିଭାବ । ସେଥିପାଇଁ ଅଚ୍ୟୁତାନନ୍ଦ ନିଜକୁ ଶୂଦ୍ର ଭାବରେ ପରିଚିତ କରାଇଛନ୍ତି ।

*"ଶୂଦ୍ର ବର୍ଣ୍ଣରେ ସେବା ପ୍ରାପ୍ତ ହୁଏ*
*ଅହଂକାର ନାହିଁ ଶୂଦ୍ରର ଦେହେ ।*
*ସେବା ଭକ୍ତିରେ ଗୋଲୋକ ମିଳଇ*
*ଯେଉଁ ପାଦେ ଚତୁର୍ବର୍ଗ ଯେ ଥାଇ ।"*

କବିଙ୍କ ଜୀବନୀ ସଂପର୍କିତ ବହୁ ତଥ୍ୟ ଏହି ଗ୍ରନ୍ଥରେ ସନ୍ନିବେଶିତ ହୋଇଥିବା ଦୃଷ୍ଟିରୁ ଗ୍ରନ୍ଥଟି ବେଶ ଗୁରୁତ୍ୱପୂର୍ଣ୍ଣ ।

**୪୪- ବିପ୍ରଚାଳକ-** ଏଗାର ଅକ୍ଷରୀ ବୃତ୍ତରେ ରଚିତ ଏହି କ୍ଷୁଦ୍ର ଗ୍ରନ୍ଥଟି ମାତ୍ର ପଚାଶ ପଦ ବିଶିଷ୍ଟ । ଅଚ୍ୟୁତାନନ୍ଦଙ୍କ ଲୋକପ୍ରିୟତା ବୃଦ୍ଧି ପାଇବାରୁ ଏଥିରେ ଈର୍ଷା କରି ବ୍ରାହ୍ମଣମାନେ ତାଙ୍କୁ କେତେଗୁଡ଼ିଏ ଜଟିଳ ପ୍ରଶ୍ନ ପଚାରିଥିଲେ । ଅଚ୍ୟୁତାନନ୍ଦ ସେସବୁ ପ୍ରଶ୍ନର ଉତ୍ତର ଦେବା ସଙ୍ଗେ ସଙ୍ଗେ ନିଜେ ବ୍ରାହ୍ମଣମାନଙ୍କୁ କେତେକ ପ୍ରଶ୍ନ ପଚାରିବାରୁ ସେମାନେ ତାହାର ଉତ୍ତର ଦେଇପାରି ନଥିଲେ । ଅଚ୍ୟୁତାନନ୍ଦଙ୍କର ଗୋଟିଏ ପ୍ରଶ୍ନ ଥିଲା ଅଷ୍ଟାଦଶ ପୁରାଣ ମଧ୍ୟରେ କେଉଁ ପୁରାଣ ପ୍ରଥମେ ଲେଖା ଯାଇଛି ଓ ତା'ପରେ କେଉଁ ପୁରାଣ ମାନ ଲେଖା ହୋଇଛି ଏବଂ ସେମାନଙ୍କର ଶ୍ଳୋକ ସଂଖ୍ୟା କେତେ ? ଏହି ପ୍ରଶ୍ନ କବିଙ୍କ ଭାଷାରେ-

*"ଅଷ୍ଟାଦଶ ଆଦି ପୁରାଣ ଯେହୁ*
*ଜାହା ପଛେ ଉଦେ ହୋଇଲା କେହୁ ।*
*ଏକଥା ବିଚାରି କହିବ ମୋତେ*
*କେଉଁ ପୁରାଣର ଶ୍ଳୋକ ଯେ କେତେ ।"*

ପ୍ରଶ୍ନର ଉତ୍ତର ଦେଇ ନପାରି ବ୍ରାହ୍ମଣମାନେ ଅଚ୍ୟୁତାନନ୍ଦଙ୍କ ଶରଣାପନ୍ନ ହୋଇ ତାଙ୍କର ଶିଷ୍ୟତ୍ୱ ଗ୍ରହଣ କରିଥିଲେ । ଶ୍ରୀକୃଷ୍ଣଙ୍କୁ ଉପାସନା କରିବା ପାଇଁ ଅଚ୍ୟୁତାନନ୍ଦ ସେମାନଙ୍କୁ ପରାମର୍ଶ ଦେଇଥିଲେ । ଗ୍ରନ୍ଥଟି ସରଳ ଭାଷାରେ ରଚିତ ହୋଇଥିଲେ ହେଁ ଏହାର ପ୍ରକାଶଭଙ୍ଗୀ ଜଟିଳ । ଏହି ଗ୍ରନ୍ଥଟି 'ବିପ୍ରବୋଧ' ନାମରେ ମଧ୍ୟ ପ୍ରଚଳିତ ।

**୪୫- ବେଦତତ୍ତ୍ୱ ବ୍ରହ୍ମଜ୍ଞାନ କଳ୍ପ-** ଏହି କ୍ଷୁଦ୍ର ରଚନାଟିରେ ଯୋଗ-ସାଧନର ମାର୍ଗ, ଜୀବାତ୍ମା ଓ ପରମାତ୍ମାର ଏକତ୍ୱ ସଂପର୍କରେ ଆଲୋକପାତ କରାଯାଇଛି । ଶିବ ମାତୃହରଣ ଦୋଷ ଓ ବ୍ରହ୍ମହତ୍ୟା ଦୋଷରୁ ମୁକ୍ତି ପାଇବା ପାଇଁ ଏକାକ୍ଷର ବ୍ରହ୍ମ ସାଧନା କଲେ । ଫଳରେ ସେ ଏସବୁ ପାପରୁ ମୁକ୍ତିଲାଭ କରିବା ସଙ୍ଗେ ସଙ୍ଗେ ବ୍ରହ୍ମଜ୍ଞାନୀ ମଧ୍ୟ ହୋଇ ପାରିଥିଲେ । ଏହି ଏକାକ୍ଷର ବ୍ରହ୍ମ ସାଧନା କଥା ହେଉଛି ଉତ୍କଳୀୟ ବୈଷ୍ଣବ ଧର୍ମର ମୂଳତତ୍ତ୍ୱ । ଯୋଗମାର୍ଗର ତତ୍ତ୍ୱ ସବୁ ସାଙ୍କେତିକ ଭାଷାରେ ଏହି ଗ୍ରନ୍ଥରେ ପ୍ରକାଶ ପାଇଥିବାରୁ ଏହା ସହଜରେ ବୋଧଗମ୍ୟ ହୁଏ ନାହିଁ । କିନ୍ତୁ ଉତ୍କଳୀୟ ବୈଷ୍ଣବ ଧର୍ମର ସ୍ୱରୂପ ସଂପର୍କରେ ପାଠକଙ୍କ ମନରେ ସ୍ଥୂଳ ଧାରଣା ସୃଷ୍ଟି ହୁଏ । ଯୋଗ ସାଧନର ପନ୍ଥା ନିର୍ଦ୍ଦେଶ କରି କବି କହିଛନ୍ତି-

*"ଯୋଗସାଧନାରେ ଦଶଦ୍ୱାର ନ ଫିଟଇ*
*ଉନମୁଖ ଧ୍ୟାନେ ବେନି ପାଦ ଲେଉଟାଇ ।*
*ମୂଳ କମଳକୁ ଜିଣି ଟେକିବ ଉଜାଣି*
*ସିଷୁମ୍ନା ଦ୍ୱାରକୁ ନେଇ ପୂରାଇବ ପାଣି ।*
*ତ୍ରିବେଣୀ ଘାଟ ଉପରେ ଜାଳନ୍ଧରୀ ମଣ୍ଡଳ*
*ଅଷ୍ଟଗିରି ମଧ୍ୟ ବସି ଜାଳିବ ଅନଳ ।*
*ଇଥିଁଳା ପିଥିଁଳା ବେନି ପାଡ଼ିବ କବାଟ*
*ନିରଞ୍ଜନ ଗୃହେ ଯେ ପରମହଂସ ଭେଟ ।"*

**୪୬- ବ୍ରହ୍ମଶାଙ୍କୁଳି-** ବ୍ରହ୍ମଙ୍କ ପାଦରେ ନିଜକୁ ଶାଙ୍କୁଳିରେ ଆବଦ୍ଧ କରି ରଖିବା ଜୀବର ପ୍ରଧାନ କର୍ତ୍ତବ୍ୟ । ସେହିପରି ସାଧନାର ମାର୍ଗ ଦର୍ଶନ କରାଯାଇଥିବାରୁ ଏହାର ନାମକରଣ ଏପରି କରାଯାଇଛି । 'ବ୍ରହ୍ମ ଶାଙ୍କୁଳି' ଓ 'ଅଣାକାର ସଂହିତା' ଡ଼ଃ ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ଦ୍ୱାରା ସଂପାଦିତ ହୋଇ ଉତ୍କଳ ବିଶ୍ୱବିଦ୍ୟାଳୟ ଦ୍ୱାରା ପ୍ରକାଶ ପାଇଛି । ୧୩ ଗୋଟି କଳ୍ପ ବା ଅଧ୍ୟାୟରେ ବିଭକ୍ତ ଏହି ଗ୍ରନ୍ଥଟି 'ଚନ୍ଦ୍ରକଳ୍ପ ବ୍ରହ୍ମଶାଙ୍କୁଳି' ନାମରେ ମଧ୍ୟ

ପରିଚିତ । ଏହାର ପ୍ରଥମ କଚ୍ଛରେ ତୀର୍ଥ, ବ୍ରତ ଓ ତପର ଅସାରତା ସହିତ ବ୍ରହ୍ମଜ୍ଞାନ ପ୍ରାପ୍ତି ପାଇଁ ମନର ଆବଶ୍ୟକତା ଉପରେ ଗୁରୁତ୍ୱ ଦିଆଯାଇଛି । ତାଙ୍କ ମତରେ ସକଳ କର୍ମତ୍ୟାଗ ପୂର୍ବକ ଅକର୍ମ ପଥକୁ ଆଶ୍ରୟ କଲେ ମନରେ ନିଶ୍ଚଳତା ଆସେ ।

*"ଯେତେ ଏ ତୀର୍ଥ ବ୍ରତ ତପ । କ୍ରିୟା ସମ୍ଭବ ମନ୍ତ୍ର ଜପ ।*
*ଏ ସର୍ବ ଧର୍ମ ନୋହେ କିଛି । ସଂସାର ହିତେ ବେଦ ଅଛି ।*
*ସକଳ କର୍ମ କରି ନାଶ । ଅକର୍ମ ପଥେ କଲେ ଆଶ ।"*

ଗ୍ରନ୍ଥଟିର ବିଭିନ୍ନ କଚ୍ଛରେ ହଠଯୋଗ, ଅଷ୍ଟାଙ୍ଗ ଯୋଗ, ଯନ୍ତ୍ର-ମନ୍ତ୍ର-ତନ୍ତ୍ର, ସପ୍ତାଙ୍ଗଯୋଗ ସଂପର୍କରେ ବିଶଦ ଆଲୋଚନା କରାଯାଇଛି । ଅଚ୍ୟୁତାନନ୍ଦ 'ଆତ୍ମଯୋଗ'କୁ ସର୍ବଶ୍ରେଷ୍ଠ ଯୋଗ ଭାବରେ ସ୍ୱୀକାର କରିଛନ୍ତି । ଶୂନ୍ୟ ସାଧନାରେ ଅଲେଖ ଦର୍ଶନ ଓ ବ୍ରହ୍ମଜ୍ଞାନ ପ୍ରାପ୍ତି ହେଉଛି ଏହି ଗ୍ରନ୍ଥର ପ୍ରଧାନ ଲକ୍ଷ୍ୟ ।

**୪୭- ବୃନ୍ଦାରାସ-** ଆଠ ଅଧ୍ୟାୟ ବିଶିଷ୍ଟ ଏହା ଏକ ତତ୍ତ୍ୱମୂଳକ ଗ୍ରନ୍ଥ । ଲଳିତାଙ୍କ ଅନୁରୋଧରେ ଶ୍ରୀରାଧା ବୃନ୍ଦାବନକୁ ଯାତ୍ରା କରିଛନ୍ତି ଓ ସେଠାରେ ଶ୍ରୀମତୀଙ୍କୁ ବେଢ଼ି ସଖୀମାନେ ବସିଛନ୍ତି । ଗ୍ରନ୍ଥରେ ବୃନ୍ଦାବନର ମାହାତ୍ମ୍ୟ, ଶ୍ରୀକୃଷ୍ଣଙ୍କ ଲୀଳା ମାହାତ୍ମ୍ୟ, ଶରୀରରେ ଯନ୍ତ୍ର ବସାଣ, ଓଁକାର ତତ୍ତ୍ୱ, ଅଙ୍ଗ ମଧ୍ୟରେ ଜଗନ୍ନାଥ ବଳଭଦ୍ରଙ୍କ ସ୍ଥାନ ନିରୂପଣ ଆଦି ପ୍ରସଙ୍ଗ ବିଶଦ ଭାବରେ ବର୍ଣ୍ଣିତ ହୋଇଛି । ଏହି ଶରୀରକୁ ଶ୍ରୀମନ୍ଦିର ଓ ଶୂନ୍ୟଗୁମ୍ଫା ଭାବରେ ଚିହ୍ନିତ କରି ବୃନ୍ଦା ଯେଉଁ ତତ୍ତ୍ୱ ବର୍ଣ୍ଣନା କରିଛନ୍ତି ତାହା ଅତ୍ୟନ୍ତ ହୃଦୟଗ୍ରାହୀ ହୋଇ ପାରିଛି । ନିତ୍ୟ ସ୍ଥଳରେ ଚାଲିଥିବା ଜୀବ ପରମଙ୍କର ଶୂନ୍ୟ ରାସଲୀଳା କବିଙ୍କ ଲେଖନୀରେ ବେଶ ସୁନ୍ଦର ଭାବରେ ପ୍ରକାଶ ପାଇଛି ।

*"ନିତ୍ୟସ୍ଥାନ ଗୋଟି ଅଟଇ ସେହି*
*ସେହି ସ୍ଥାନରୁ କ୍ଷରିଣ ଆସଇ ।*
*ଏକଇ ବିନ୍ଦୁ ହେଲା ବେନିଫାଳ*
*ଦେଖ ନାସାରେ ଚୁଟିବ ଜଞ୍ଜାଳ ।*
*ରାଧେ ଗୋ ସେହି ଜୀବ ପରମ*
*ହଂକ୍ଷଂ ବେନି ଅକ୍ଷର ଜାଣ ।"*

**୪୮- ଭକ୍ତଲୀଳା ଗୀତା-** ସମାଜରୁ ସଂସ୍କୃତ ଭାଷା ତଥା ପଣ୍ଡିତମାନଙ୍କର ପ୍ରାଧାନ୍ୟକୁ ପରାହତ କରିବା ପାଇଁ ଓଡ଼ିଶାର ପଞ୍ଚସଖା ଓଡ଼ିଆ ସହିତ ସଂସ୍କୃତ ଓ ପ୍ରାକୃତର ଏକ ମିଶ୍ରିତ ଭାଷାରେ ଅନେକ ଗ୍ରନ୍ଥ ରଚନା କରିଥିଲେ । ନିଜର ଧର୍ମ ଦର୍ଶନକୁ ସାଧାରଣ ଲୋକଙ୍କ ନିକଟରେ ପହଞ୍ଚାଇବା ପାଇଁ ସେମାନେ ଓଡ଼ିଆ ଭାଷାରେ ଯେପରି ଅଗଣିତ

ଗ୍ରନ୍ଥ ସୃଷ୍ଟି କରିଥିଲେ ସେହିପରି ସଂସ୍କୃତ ଭାଷାକୁ ବିଦ୍ରୂପ କରି ବିକୃତ ସଂସ୍କୃତରେ ବହୁ ଗ୍ରନ୍ଥ ଲେଖିଥିଲେ । ଭକ୍ତଲୀଳା ଗୀତାଟି ସେହି ଧରଣର ଏକ ଗ୍ରନ୍ଥ । ଏଥିରେ ଭକ୍ତମାନଙ୍କର ବିଶଦ ବିବରଣୀ ସ୍ଥାନ ପାଇଛି । ଭକ୍ତ ତଥା ସିଦ୍ଧ ସାଧକମାନେ କିଏ କେଉଁଠାରେ କେଉଁକୁଳରେ ଜନ୍ମ ଗ୍ରହଣ କରିଛନ୍ତି ତାହା ବର୍ଣ୍ଣିତ ହୋଇଛି । ବୈଷ୍ଣବମାନଙ୍କର ବେଶ ବର୍ଣ୍ଣନାରେ ସେମାନେ ଚୂଡ଼ା, ଗୁଞ୍ଜମାଳ, ଚୋପର, କୁଣ୍ଡଳ, ନୂପୁର, କାଛଟା, ଶିଖିପୁଚ୍ଛ, ତୁଳସୀମାଳା, କନ୍ଧରେ ପଇତା ଆଦି ବ୍ୟବହାର କରୁଥିବା କୁହାଯାଇଛି । ବାଦ୍ୟ ମଧ୍ୟରେ ଶଂଖ, ବେଣୁ, ମୁରଲୀ, ତାଳ, କରତାଳ, ଖୋଳ, ମର୍ଦ୍ଦଳ ପ୍ରଭୃତି ବ୍ୟବହୃତ ହେଉଥିଲା । ବାସ୍ତବରେ ୧୫ଶ ଓ ୧୬ଶ ଶତାବ୍ଦୀରେ ପ୍ରସିଦ୍ଧ ତୀର୍ଥସ୍ଥାନ ଓ ଅସଂଖ୍ୟ ଭକ୍ତଙ୍କ ପରିଚୟ ଗ୍ରନ୍ଥଟିରେ ଯେପରି ପ୍ରଦତ୍ତ ହୋଇଛି ସେଥିରୁ କବିଙ୍କର ସେ ସମୟର ଓଡ଼ିଶା ସଂପର୍କରେ ବିଶଦ ଜ୍ଞାନ ଥିଲା ବୋଲି କହିବାକୁ ହେବ । କବି ଲେଖିଛନ୍ତି-

*''କୁମ୍ଭିକା ନଦୀଯା ସ୍ଥାନେ ଧୀବରଂ ଜନ୍ମୟଂ ନାଥ*
*ପଟିଚ ବୁଜ ଚାରଣଂ ଜବିତା ଗାୟନଂ ରଚ ।*
*ଜରଥଂ ଜନ୍ମୟଂ ଯସ୍ୟ ତସ୍ୟ ନାମ ନାଥୟଂ*
*ସମଗ୍ରାମେ ବିହାରଙ୍କ ସାରୋଳେ ଦଟ ପୂର୍ଣ୍ଣେୟଂ ।''*

ତେଇଶି ଅଧ୍ୟାୟ ବିଶିଷ୍ଟ ଏହି ଗ୍ରନ୍ଥଟି ଧର୍ମ-ସାହିତ୍ୟର ଇତିହାସ ଦୃଷ୍ଟିରୁ ବେଶ ଗୁରୁତ୍ୱପୂର୍ଣ୍ଣ ।

**୪୯- ଭଜନ-** ପଞ୍ଚସଖାଙ୍କ ମଧ୍ୟରୁ ପ୍ରତ୍ୟେକ ଶତାଧିକ ଭଜନ ରଚନା କରି ଓଡ଼ିଆ ଭକ୍ତି ସାହିତ୍ୟକୁ ସୁସମୃଦ୍ଧ କରିଛନ୍ତି । ନାନାପ୍ରକାର ମେଳା, ଯାତ୍ରା, ମହୋତ୍ସବ, ପୂଜା ପାର୍ବଣ ପ୍ରଭୃତିରେ ଭକ୍ତମାନେ ଭଜନ ଗାଇ ଶ୍ରୋତାମାନଙ୍କୁ ମନ୍ତ୍ରମୁଗ୍ଧ କରି ପକାନ୍ତି । ଖଞ୍ଜଣି, ଗିନି, କାଠତାଳି ବା ରାମତାଳି ବଜାଇ ତାଳମାନ ଲୟରେ ସୁମଧୁର ଭଜନ ସଂଗୀତ ପରିବେଷଣ କରନ୍ତି ଭଜନ ଗୋଷ୍ଠୀର ଭକ୍ତମାନେ । ଓଡ଼ିଶାରେ ଏହା ନିତିଦିନିଆ ଘଟଣା ଓ ଏପରି ଲୋକପ୍ରିୟ ପରମ୍ପରାର ପ୍ରତିଷ୍ଠାତା ହେଉଛନ୍ତି ପଞ୍ଚସଖା ।

ସେମାନେ ଶୂନ୍ୟ ସାଧନା, ପିଣ୍ଡ ବ୍ରହ୍ମାଣ୍ଡ ତତ୍ତ୍ୱ, ସଗୁଣ ଓ ନିର୍ଗୁଣ ବ୍ରହ୍ମ ଉପାସନା, ଗୁରୁବାଦକୁ ଭିତ୍ତିକରି ଶରୀର ଭେଦ ବ୍ରହ୍ମଜ୍ଞାନ ମୂଳକ ବହୁ ଭଜନ ସୃଷ୍ଟି କରିଛନ୍ତି । ସୁପରିଚିତ ପ୍ରତୀକ ଓ ଚିତ୍ରକଳ୍ପ ମାଧ୍ୟମରେ ପୁରାଣ ଶାସ୍ତ୍ର ଅନ୍ତର୍ଗତ ବହୁ ଉପାଖ୍ୟାନର ଉଦାହରଣ ଦେଇ ସେମାନେ ସରଳ-ସାବଲୀଳ ଭାଷାରେ ଯେଉଁ ହୃଦୟସ୍ପର୍ଶୀ ଭଜନ ସବୁ ରଚନା କରିଛନ୍ତି, ତାହା ସେମାନଙ୍କୁ ଯୁଗେଯୁଗେ ଅମର କରି ରଖିଛି । ଅଚ୍ୟୁତାନନ୍ଦଙ୍କ ରଚିତ ଭଜନଗୁଡ଼ିକ ସାଧାରଣତଃ ବ୍ରହ୍ମଜ୍ଞାନ ମୂଳକ । ସେଥିମଧ୍ୟରୁ

କେତେକରେ ମଧ ଆଗତ ଭବିଷ୍ୟବାଣୀ ପ୍ରକାଶ ପାଇଛି । ତାଙ୍କର ଲୋକପ୍ରିୟ ଭଜନ ସବୁର ତାଲିକା 'କ୍ଷୁଦ୍ର ରଚନା' ମଧ୍ୟରେ ଦିଆଯାଇଛି ଓ ଏଠାରେ ସାମାନ୍ୟ କେତୋଟିର ଉଦାହରଣ ଦିଆଗଲା ।

*୧) ଅନାମରୁ ନାମ ଜନମ ହୋଇ । ଅଣ ଅକ୍ଷରକୁ ଅନାମ କହି ।*
*୨) କର ଧରି ରାଧା ଦୂତୀର ପୁଣି । କୋମଳ କରି କହନ୍ତି ସେ ବାଣୀ ।*
*କର ଗୋ ଦୂତୀ ତାହାର ଧାନ । କମଳ ମଧ୍ୟରେ ନନ୍ଦନନ୍ଦନ ।*
*୩) କହୁଅଛି ମନ ଚଇତନ ମୋର ବିନୟ ଘେନ*
*ଖେଳୁଅଛି ହଂସ ସ୍ୱରୂପରେ ରଖ ସେଠାରେ ମନ ।*
*୪) ବାଇମନ ହୋ ବସି ଅବନାବନ*
*ଅବନା ବନିଲେ ଅମିଣା ମିଶିବ ଅମାପରେ ମପା ହେବ ତୋ ଧନ ।*
*୫) ଦୀନବନ୍ଧୁ ହେ, ମୋ ଦୁଃଖ ନଗଲା ଯେ*
*ତୁମେ ଦୀନବନ୍ଧୁ ମୋ ବନ୍ଧୁ ନୋହିଲେ ମୋ ବନ୍ଧୁ ହୋଇବ କେ ।*
*୬) ଆରେ ଭଜମନ, ଭଜି ପାଇଲେ ପାଇବୁ ଦରଶନ ।*
*୭) ଅକ୍ଷରବ୍ରହ୍ମ ମାଳା ହାର ଧରଧର ସଖୀ ଦୂତୀ ତୋ କର ଗୋ ।*
*୮) ମନ ହୋ ବସି ହଂସକୁ ଖେଳା*
*ହଂସ ଉଡ଼ିଗଲେ ବୁଡ଼ିବ ଭେଳା ।*
*୯) ଏହି ମନ ସିନା ଚତୁର୍ଦ୍ଧା ମୂରତି ହେ ମୂଢ଼ମତି ।*

ବହୁ ଗୂଢ଼ତତ୍ତ୍ୱକୁ ରୂପକ, ଚିତ୍ରକଳ୍ପ ତଥା ସାଂକେତିକ ଭାଷା ମାଧ୍ୟମରେ ପ୍ରକାଶ କରିଥିଲେ ହେଁ ଅଚ୍ୟୁତାନନ୍ଦଙ୍କ ଭଜନର ସାଙ୍ଗୀତିକ ମୂଲ୍ୟ ଯଥେଷ୍ଟ ବେଶି ।

**୫୦- ଭାବନାବର-** ଏହି କ୍ଷୁଦ୍ର ଗ୍ରନ୍ଥଟିରେ କବିଙ୍କର ଶ୍ରେଷ୍ଠ ଭାବନା ପ୍ରକାଶ ପାଇଥିବାରୁ ଏହାର ଏପରି ନାମକରଣ କରାଯାଇଛି । ଏଥିରେ କବିଙ୍କର ବାଲ୍ୟଜୀବନ ଓ ସାଧକ ଜୀବନର କେତେକ ତଥ୍ୟ ପରିବେଶିତ ହୋଇଥିବା ସଙ୍ଗେସଙ୍ଗେ ବ୍ରହ୍ମଜ୍ଞାନ ତତ୍ତ୍ୱ ମଧ ସ୍ଥାନ ପାଇଛି । ଗ୍ରନ୍ଥର ଚତୁର୍ଥ ବୋଲିରେ କବି ନିଜର ପରିଚୟ ଦେବାକୁ ଯାଇ କହିଛନ୍ତି ଯେ, ସେ ଚମ୍ପାପୁର ଗ୍ରାମର କମାର କୁଳରେ ଜନ୍ମ ହୋଇଥିଲେ ଓ ଛତିଆରେ ବାସ କରୁଥିଲେ । ସେଥିପାଇଁ ଏ ଗ୍ରନ୍ଥଟି ହାଡ଼ିଦାସଙ୍କ ରଚନା ରୂପେ ଗ୍ରହଣ କରାଯାଇପାରେ । କାରଣ ସିଦ୍ଧ ହାଡ଼ିଦାସଙ୍କ ସାଧନା ପୀଠ ଥିଲା ଛତିଆ ଓ ସେ ନିଜକୁ ଅଚ୍ୟୁତାନନ୍ଦଙ୍କ ଅବତାର ବୋଲି ପ୍ରକାଶ କରିଛନ୍ତି । ଏସବୁ ଦୃଷ୍ଟିରୁ ଗ୍ରନ୍ଥଟି ଅଧିକ ଗବେଷଣା ମୂଳକ ଆଲୋଚନାର ଅପେକ୍ଷା ରଖେ ।

**୫୧- ମଣିବନ୍ଧ ଗୀତା-** ସାତଗୋଟି ଅଧ୍ୟାୟ ବା ପଟଳ ବିଶିଷ୍ଟ ଏହି ଗ୍ରନ୍ଥଟି ଏକାଦଶାକ୍ଷରୀ ବୃତ୍ତରେ ରଚିତ ହୋଇଛି । ଏଥିରେ ଅଚ୍ୟୁତାନନ୍ଦ ନିଜର ପୂର୍ବଜନ୍ମ ଓ ପରଜନ୍ମ ବୃତ୍ତାନ୍ତ, ଶ୍ରୀଚୈତନ୍ୟଙ୍କ ସହ ସାକ୍ଷାତ, ଗୁରୁବାଦ, ଶରୀରର ନଶ୍ୱରତା, ମଣିବନ୍ଧରେ ଭଗବାନଙ୍କର ସ୍ୱରୂପ, ନିତ୍ୟସ୍ଥଳର ବର୍ଣ୍ଣନା ଆଦି ପ୍ରସଙ୍ଗ ବିଶଦ ଭାବରେ ସ୍ଥାନ ପାଇଛି । ନିତ୍ୟସ୍ଥଳ ପାଇବା ପାଇଁ ମଣିଷ ସଂସାରର ମାୟାମୋହରୁ ମୁକ୍ତ ହୋଇ ଭଗବତ୍ ପ୍ରାପ୍ତି ନିମନ୍ତେ ଚେଷ୍ଟା କରିବା ଉଚିତ । କବିଙ୍କ ମତରେ-

*"ରାତ୍ର ପାହିବ ଦିବସ ହୋଇବ । ଦୀପ ଦିହୁଡ଼ି ହୁଳା ଯେ ଜଳିବ ।*
*ବେଳୁ ବେଳୁ କରି ବଳାଅ ମନ । ବେଳ ବୁଡ଼ିଲେ ଧରିନେବ ଯମ ।*
*ବଡ଼ ନିର୍ଦ୍ଦୟା ଅଟେ ଜନ୍ତୁରାଯେ । ବିଜଳ ନବସେ ତାହାର କାଯେ ।"*

ଅଚ୍ୟୁତାନନ୍ଦ ନିଜର ଭକ୍ତମାନଙ୍କ ନାମ, ବିଭିନ୍ନ ମନ୍ତ୍ର ଓ ବସାଣ କଥା ମଧ ବର୍ଣ୍ଣନା କରିଛନ୍ତି । ଶେଷରେ ନେମାଳର ସିଦ୍ଧବଟ ପ୍ରସଙ୍ଗ ଉଲ୍ଲେଖ କରି ଏକାକ୍ଷର ମନ୍ତ୍ର ଜପ କଲେ ମଣିଷ ମୁକ୍ତିଲାଭ କରିବ ବୋଲି କହିଛନ୍ତି ।

**୫୨- ମଣିବରଣ ଗୀତା-** ଏହି ଗ୍ରନ୍ଥରେ ପଞ୍ଚସଖା ତ୍ରିପୁରସୁନ୍ଦରୀ ଜଗଦମ୍ବା 'କାମାକ୍ଷୀ'ଙ୍କୁ ଦର୍ଶନ କରିବା ବିଷୟ ବର୍ଣ୍ଣିତ ହୋଇଛି । ଜଗନ୍ନାଥ, ଯଶୋବନ୍ତ, ଅଚ୍ୟୁତ ଓ ଅନନ୍ତ କଲିକତା ଠାରେ କାଳୀଙ୍କୁ ଦର୍ଶନ କରିବା ପରେ କାମାକ୍ଷା ପୀଠ ଯାତ୍ରା କରିଛନ୍ତି । ସେଠାରେ ପହଞ୍ଚିବା ପୂର୍ବରୁ ସେମାନେ ଅବଶ ହୋଇ ପଡ଼ିଛନ୍ତି ଓ ବଳରାମ ଅନୁଭବ କରିଛନ୍ତି ଯେ ତାଙ୍କ ଶରୀରରୁ ସତେ ଯେପରି କିଏ ରକ୍ତ ଶୋଷି ନେଉଛି । ଏପରି ଅଲୌକିକ ଘଟଣାର କାରଣ ଜାଣିବା ପାଇଁ ଅଚ୍ୟୁତାନନ୍ଦ ଧ୍ୟାନରେ ବସିଛନ୍ତି ଓ ଜାଣିଛନ୍ତି ଯେ କେହି ଜଣେ ତନ୍ତ୍ର ସାଧକ ସେମାନଙ୍କୁ ମେଣ୍ଢା କରିଦେବା ପାଇଁ ଚେଷ୍ଟା କରୁଛି । ଏହାର ପ୍ରତିକାର ସ୍ୱରୂପ ଅଚ୍ୟୁତାନନ୍ଦ ଅନନ୍ତ କଳାତ୍ମିକା ବୈଷ୍ଣବୀ ଶକ୍ତି ପ୍ରୟୋଗ କରିବା ଦ୍ୱାରା କାମାକ୍ଷା ମୂର୍ତ୍ତିଟି ଗୋଟିଏ ମେଣ୍ଢାରେ ପରିଣତ ହୋଇଯାଇଛି । ସେଠାକାର ତନ୍ତ୍ର ସାଧକ ଓ ପୂଜକମାନେ ତନ୍ତ୍ରସାଧନା କରି ଦେବୀଙ୍କୁ ପୂର୍ବରୂପ ଫେରାଇ ଆଣିବାକୁ ଚେଷ୍ଟା କରି ବିଫଳ ହେବା ପରେ ଅଚ୍ୟୁତାନନ୍ଦଙ୍କର ଶରଣାପନ୍ନ ହୋଇଛନ୍ତି । ଶେଷରେ ଅଚ୍ୟୁତାନନ୍ଦ କହିଛନ୍ତି ଯେ, ଦେବୀ ଯଦି ପୀଠ ପ୍ରବେଶ ସମୟରେ ନବାଗତ ବ୍ୟକ୍ତିର ରକ୍ତପାନ କରିବା ପ୍ରୟାସ ପରିତ୍ୟାଗ କରିବେ ତେବେ ତାଙ୍କୁ ପୂର୍ବାବସ୍ଥା ଫେରାଇ ଦିଆଯିବ । ତା'ପରେ ଦେବୀ ପଞ୍ଚସଖାଙ୍କ ଉପରେ ସନ୍ତୁଷ୍ଟ ହୋଇ ଦର୍ଶନ ଦେଇଛନ୍ତି ଓ ସେମାନଙ୍କର ଇଚ୍ଛା ପୂରଣ କରିଛନ୍ତି ।

**୫୩- ମହାନିତ୍ୟ ରାସ-** ପାଞ୍ଚ ଅଧ୍ୟାୟ ବିଶିଷ୍ଟ ଏହି ଗ୍ରନ୍ଥରେ ଗୋଲୋକ, ନିତ୍ୟ, ମହାନିତ୍ୟ, ଗୋଲୋକ ଧାମରେ ମୁନିଋଷିମାନଙ୍କର ସ୍ଥାନ, ପ୍ରଳୟ ବଳରେ ମାର୍କଣ୍ଡ ଋଷି ଭାସିଯିବା, ପଦ୍ମବନରେ ରାସଲୀଳା ସଂଘଟିତ ହେବା, ନିତ୍ୟରାସ ଓ ମହାନିତ୍ୟରାସର ଗୁପ୍ତକଥା ଆଦି ପ୍ରସଙ୍ଗ ବର୍ଣ୍ଣିତ ହୋଇଛି । କବି ଏଥିରେ ଶ୍ରୀକ୍ଷେତ୍ରକୁ ଗୋଲୋକ ଓ ନୀଳଗିରିକୁ ମହାନିତ୍ୟ ଭାବରେ ବର୍ଣ୍ଣନା କରିଛନ୍ତି । ତାଙ୍କ ମତରେ-

''ଅଠରନଳା ସିଂହଦ୍ୱାର ଯାଏ, ନିତ୍ୟ ଗୋଲୋକ ଏଥି ମଧ୍ୟେ ରହେ ।
ପାବଚ୍ଛଠାରୁ ଖମ୍ଭଯାଏ ଘେନି, ମହାନିତ୍ୟ ଏଥି ମଧ୍ୟରେ ମଣ୍ଡଣି ।
ଖମ୍ଭଠାରୁ ଅଠରଗଳି ଯାଏ, ମହାନିତ୍ୟ ଏଥି ମଧ୍ୟେ ହୁଏ ।
ଅନିତ୍ୟ ଗୋଲୋକ ଏଥି ଉର୍ଦ୍ଧ୍ୱରେ, ଉପମା ଦେବା ନାହିଁ ତିନିପୁରେ ।''

ଶ୍ରୀକୃଷ୍ଣଙ୍କ ନିର୍ଦ୍ଦେଶରେ କବି ସୁଦାମ ରୂପରେ ଅବତୀର୍ଣ୍ଣ ହୋଇଥିବା କଥା ଗ୍ରନ୍ଥରେ ବର୍ଣ୍ଣିତ ହୋଇଛି ।

**୫୪- ମୋହକଳ୍ପ-** ଶିଷ୍ୟ ରାମଦାସ ଓ ଗୁରୁ ଅଚ୍ୟୁତାନନ୍ଦଙ୍କ କଥୋପକଥନ ଛଳରେ ରଚିତ ଏହି ଗ୍ରନ୍ଥଟି ଏକ ଆଗତ ଭବିଷ୍ୟ ମାଳିକା । କିନ୍ତୁ ଏଥିରେ ବହୁ ପରବର୍ତ୍ତୀ ଘଟଣା ଯେପରି ଭାବରେ ବର୍ଣ୍ଣିତ ହୋଇଛି ସେଥିରୁ ଗ୍ରନ୍ଥଟି ଅଚ୍ୟୁତାନନ୍ଦଙ୍କ ରଚନା ନୁହେଁ ବୋଲି ମନେହୁଏ । ସମ୍ଭବତଃ ପରବର୍ତ୍ତୀ କାଳରେ କୌଣସି କବି ଏହାକୁ ରଚନା କରି ଅଚ୍ୟୁତାନନ୍ଦଙ୍କ ନାମରେ ଭଣିତା କରିଛନ୍ତି ।

*''ସେହି କାରଣରୁ ରେଳପଥ ଜାଣ*
*କ୍ଷେତ୍ରକୁ ହୋଇଣ ଥିବ*
*ଧନ୍ୟ ସେ କମ୍ପାନୀ ବଡ଼ ସାହେବଟି*
*ପ୍ରଭୁଙ୍କୁ ପାରି କରିବ ।''*

ଏଥିରେ ଇଂରେଜ ସରକାରଙ୍କ ଅମଳରେ ନିର୍ମିତ ହୋଇଥିବା ରେଳପଥ ନିର୍ମାଣ କଥା କୁହାଯାଇଛି । ଏହା ବ୍ୟତୀତ ଜର୍ମାନୀ ଦେଶର ହିଟଲରଙ୍କ କଥା ମଧ୍ୟ ଗ୍ରନ୍ଥରେ ସ୍ଥାନ ପାଇଛି ।

**୫୫- ଯନ୍ତ୍ର ବଖାଣ-** ଅଚ୍ୟୁତାନନ୍ଦଙ୍କର ଯନ୍ତ୍ର-ମନ୍ତ୍ର ଓ ତନ୍ତ୍ର ସଂପର୍କରେ ଗଭୀର ଜ୍ଞାନ ଥିଲା । ଅନ୍ୟାନ୍ୟ ଗ୍ରନ୍ଥ ପରି ଏହି କ୍ଷୁଦ୍ର ରଚନାରେ ସେ ଚଉରାଶି ଯନ୍ତ୍ର, ବିଭିନ୍ନ ପଦ୍ମର

ଚିତ୍ର, ଶଙ୍ଖନାଭି ମଣ୍ଡଳ, ବାରମାତ୍ରା, ସପ୍ତଫେଣା, ଚଉଷଠି ଯନ୍ତ୍ର, ନୟନ ଯନ୍ତ୍ର, କଣ୍ଠ କମଳ ଯନ୍ତ୍ର ପ୍ରଭୃତିର ସୁନ୍ଦର ଚିତ୍ର ଦିଆଯାଇଛି । ବିଭିନ୍ନ ଯନ୍ତ୍ରର ଚିତ୍ର ସହିତ ପ୍ରଦତ୍ତ ବିବରଣୀରୁ ଅଚ୍ୟୁତାନନ୍ଦଙ୍କ ସାଧନ ମାର୍ଗର ସ୍ପଷ୍ଟ ପରିଚୟ ମିଳିଥାଏ ।

**୫୬- ଯନ୍ତ୍ରବିଧି-** ଏହି କ୍ଷୁଦ୍ର ରଚନାଟି ପ୍ରାଚୀନ ଓଡ଼ିଆ ଗଦ୍ୟରେ ଲେଖାଯାଇଛି । ପ୍ରଥମେ ବିକୃତ ସଂସ୍କୃତ ଶ୍ଳୋକ ଓ ତା'ପରେ ରହିଛି ଓଡ଼ିଆ ଗଦ୍ୟ । ଏଥିରେ ଷଡ଼ଚକ୍ର ଯନ୍ତ୍ରର ବିଶଦ ବିବରଣୀ ସହିତ ଚିତ୍ର ମଧ୍ୟ ସ୍ଥାନ ପାଇଛି । ଏହାର ଗଦ୍ୟ ଏହିପରି- ''ଏତେକ ସ୍ମରଣ କରି ଯନ୍ତ୍ର କାଟିବ । ପ୍ରଥମେ ଅଣାକ୍ଷର ଛାପିବ । ଏ ଅନାଦି ଶବ୍ଦଯେ ସ୍ଥାନ ବ୍ରହ୍ମ ତାଳୁକା । ତହିଁ ପରେ ଏକାକ୍ଷର ବ୍ରହ୍ମ ଠୁଳଶୂନ୍ୟ । ଯେ ଜ୍ୟୋତିବ୍ରହ୍ମ ସେ ସ୍ଥାନ ବ୍ରହ୍ମ କପାଳ । ପ୍ରକାଶ ଚକ୍ଷୁରେ ତହିଁ ତଳେ କାମବୀଜ । ସ୍ଥାନ ଭୃରୁ ମଧ୍ୟରେ ।''

**୫୭- ରାଧାରାସ-** ରାସଲୀଳା ସଂପର୍କୀୟ ଅନେକ ଗ୍ରନ୍ଥ ଅଚ୍ୟୁତାନନ୍ଦଙ୍କ ନାମରେ ପ୍ରଚଳିତ ଥିଲେ ମଧ୍ୟ ଏହି ଗ୍ରନ୍ଥର ଭୂମିକା ବେଶ ଗୁରୁତ୍ୱପୂର୍ଣ୍ଣ । ଚଉଦ ଗୋଟି ଗୁଜ୍ଜରୀ ବିଶିଷ୍ଟ ଉକ୍ତ ଗ୍ରନ୍ଥର ପ୍ରଥମ ଗୁଜ୍ଜରୀରେ କବି ନୀଳାଚଳ କ୍ଷେତ୍ରକୁ ଗୋଲୋକ ଧାମ ଭାବରେ ବର୍ଣ୍ଣନା କରିଛନ୍ତି । ଶ୍ରୀକୃଷ୍ଣଙ୍କ ବିରହରେ ଶ୍ରୀରାଧାଙ୍କ ଆତୁରତା, ଦୂତୀର ଭୂମିକା ଓ ଶ୍ରୀରାଧାକୃଷ୍ଣଙ୍କ ମିଳନ ଏହି ରାସଲୀଳାର ପ୍ରଧାନ ଉପଜୀବ୍ୟ । ଶ୍ରୀକୃଷ୍ଣଙ୍କ ନିକଟରେ ଶ୍ରୀରାଧାଙ୍କର ବିରହ ବେଦନା ପ୍ରକାଶ କରିବା ଓ ଶ୍ରୀକୃଷ୍ଣଙ୍କୁ ନେଇ ଶ୍ରୀରାଧାଙ୍କ ସହିତ ମିଳିତ କରିବାରେ ଦୂତୀ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଛି । ଶ୍ରୀରାଧା କୃଷ୍ଣଙ୍କୁ ବ୍ରହ୍ମଜ୍ଞାନ ସଂପର୍କୀୟ କେତେକ ପ୍ରଶ୍ନ ପଚାରିଛନ୍ତି ଓ ଶ୍ରୀକୃଷ୍ଣ ସେସବୁ ପ୍ରଶ୍ନର ଉତ୍ତର ଦେଇ ପାରିଲେ ତାଙ୍କ ସହିତ ମିଳିତ ହେବେ ବୋଲି ରାଧା ସର୍ତ୍ତ ରଖିଛନ୍ତି । ତା ନହେଲେ ଶ୍ରୀକୃଷ୍ଣ ତାଙ୍କୁ ବଂଶୀଟି ଦେଇ ସେ ସ୍ଥାନ ପରିତ୍ୟାଗ କରିବେ । ଶେଷରେ ଶ୍ରୀକୃଷ୍ଣ ପ୍ରଶ୍ନଗୁଡ଼ିକର ସନ୍ତୋଷଜନକ ଉତ୍ତର ଦେବା ପରେ ଉଭୟଙ୍କର ମିଳନ ସମ୍ଭବ ହୋଇଛି । ଅଭିନବ ନାଟକୀୟ ଢ଼ଙ୍ଗରେ ଏହି ରାସଲୀଳାକୁ କବି ବର୍ଣ୍ଣନା କରିଛନ୍ତି ।

ରାସଲୀଳାର ବିସ୍ତୃତ ବର୍ଣ୍ଣନା ପରେ କବି ଆଗତ ଭବିଷ୍ୟ ମାଳିକା ପରି କେତେକ କଥା କହିଛନ୍ତି । ଶିଷ୍ୟ ରାମଦାସ ଓ ଗୁରୁ ଅଚ୍ୟୁତାନନ୍ଦଙ୍କ ପ୍ରଶ୍ନୋତ୍ତର ଛଳରେ ଗ୍ରନ୍ଥଟି ରଚିତ ହୋଇଛି । ବ୍ରହ୍ମଜ୍ଞାନ ମୂଳକ ଗୂଢ଼ ତତ୍ତ୍ୱକୁ କବି ଅତ୍ୟନ୍ତ ସରଳ ରୀତିରେ ପ୍ରକାଶ କରିଛନ୍ତି । କବିଙ୍କ ବର୍ଣ୍ଣନା ଚାତୁରୀ ବେଶ ହୃଦୟସ୍ପର୍ଶୀ ।

**୫୮- ରାସ ଗୋପ ପଞ୍ଚାମୃତ-** ଏହା ଅଚ୍ୟୁତାନନ୍ଦଙ୍କର ଏକ ଅପ୍ରକାଶିତ ଗ୍ରନ୍ଥ । କୃଷ୍ଣଲୀଳା ସଂପର୍କୀୟ ବିଷୟବସ୍ତୁକୁ ନେଇ ଗ୍ରନ୍ଥଟି ରଚିତ ।

**୫୯- ଶବ୍ଦବ୍ରହ୍ମ ସଂହିତା-** ଚାରୋଟି ଅଧାୟ ବା ଖାନି ବିଶିଷ୍ଟ ଏହି ଗ୍ରନ୍ଥଟି ଶବ୍ଦବ୍ରହ୍ମ ସଂହିତା ଓ ଶବ୍ଦବ୍ରହ୍ମ ଗୀତା ନାମରେ ମଧ ପ୍ରଚଳିତ ଅଛି । ମହାରାଜା ପ୍ରତାପରୁଦ୍ରଙ୍କ ପଚିଶ ଅଙ୍କ ଅର୍ଥାତ ୧୫୧୬ ଖ୍ରୀଷ୍ଟାବ୍ଦରେ ଏହି ଗ୍ରନ୍ଥଟି ରଚିତ ହୋଇଥିବା କଥା କବି ଉଲ୍ଲେଖ କରିଛନ୍ତି ।

*''ସେ ମହାରାଜାଙ୍କ ପଚିଶ ଅଙ୍କେ*
*ଶବଦ ବ୍ରହ୍ମ ମୁଁ କଲି ନିଶଙ୍କେ ।''*

*-୧ମ ଖାନି- ୧୨୪ ପଦ*

ଭଣ୍ଡତା ଓ ବାହ୍ୟାଚାର ବିରୁଦ୍ଧରେ ଅଚ୍ୟୁତାନନ୍ଦ ସ୍ୱର ଉତ୍ତୋଳନ କରିଛନ୍ତି ଏହି ଗ୍ରନ୍ଥରେ । ତାଙ୍କ ମତରେ ବ୍ରତ, ଉପାସନା ଓ ତୀର୍ଥ ପର୍ଯ୍ୟଟନ କରି ଶରୀରକୁ କଷ୍ଟ ଦେବା ଉଚିତ ନୁହେଁ । ସେ ମୂର୍ତ୍ତିପୂଜାକୁ ବିରୋଧ କରିଛନ୍ତି ଓ ସଂସାରରେ ଥିବା ସବୁ ଗ୍ରନ୍ଥ ଏବଂ ବିଦ୍ୟା ମୂଲ୍ୟହୀନ ବୋଲି କହିଛନ୍ତି । ସର୍ବାପେକ୍ଷା ସାରବସ୍ତୁ ହେଉଛି ବ୍ରହ୍ମଜ୍ଞାନ । ମାନବ ଜନ୍ମର ସାର୍ଥକତା ଜନ୍ମରେ ନୁହେଁ କର୍ମରେ । ସେଥିପାଇଁ ସେ କର୍ମ ଉପରେ ଗୁରୁତ୍ୱାରୋପ କରିଛନ୍ତି । ସବୁ ଇନ୍ଦ୍ରିୟ ମଧରେ ମନ ଶ୍ରେଷ୍ଠ ଓ ଏହି ମନ ପାଇଁ ସେ ସାଧନା, ଜ୍ଞାନ, ଶରୀର ଏବଂ ବିଦ୍ୟା ପ୍ରଭୃତିକୁ ବିଶ୍ଳେଷଣ କରିଛନ୍ତି । ସଂସାରର ଅନିତ୍ୟତା ସଂପର୍କରେ କବି କୁହନ୍ତି-

*''ଜନ୍ମ ହିଁ ଏକା ମରଣ ହିଁ ଏକା*
*ବନ୍ଧୁବାନ୍ଧବ ଯେ କାହା ସଖା ।*
*ଅର୍ଥ ଲୁବ୍ଧେ କଥା ଭାବେ ସଙ୍ଗ*
*ଯେ ଯାହା କରମ ତାହାରି ଅଙ୍ଗ ।''*

*- ୨ୟ ଖାନି*

ଶରୀର ଅନିତ୍ୟ ହେଲେ ମଧ ସାଧନା ପାଇଁ ଏହାର ଏକାନ୍ତ ଆବଶ୍ୟକତା ରହିଛି । ତେଣୁ ସେ ଶରୀରକୁ ସ୍ୱର୍ଗ, ମର୍ତ୍ତ୍ୟ ଓ ପାତାଳ ବୋଲି କହିଛନ୍ତି । ଉର୍ମ, ଧୂର୍ମ, ଜ୍ୟୋତି ଜ୍ୱାଳା ଆଦି ସଂସାରର ସବୁ ସୃଷ୍ଟି ଏଇ ଦେହ ପାଇଁ । ସାଧକର ପ୍ରକୃତ ମାର୍ଗ ପ୍ରଦର୍ଶକ ହେଉଛନ୍ତି ଗୁରୁ । ଗୁରୁଙ୍କ ମହିମା ସଂପର୍କରେ ତାଙ୍କର ମତ ହେଲା-

*''ବିଚାରି ହେଳା ନ କରିବ ପୁଣ*
*ସାଧନା ବିଧି ଗୁରୁ ମୁଖେ ଶୁଣ ।*
*ବିନା ସାଧନା ସିଦ୍ଧି ପୁଣ ନାହିଁ*
*ବିନା ଉଦ୍‌ଯୋଗେ କର୍ମ ହିଁ ନାହିଁ ।''*

*(୪ର୍ଥ ଖାନି)*

ଅଚ୍ୟୁତାନନ୍ଦ ଜ୍ଞାନ ମାର୍ଗୀୟ ସାଧକ ଥିଲେ ହେଁ ଭକ୍ତି ମାର୍ଗର ମହତ୍ତ୍ୱକୁ ଅସ୍ୱୀକାର କରି ନାହାନ୍ତି । ସେ ଷଡ଼ଚକ୍ର ସାଧନା ବା ହଠଯୋଗ ମାଧମରେ ଶରୀର ସାଧନା କରିବା ଉପରେ ଅଧିକ ଗୁରୁତ୍ୱାରୋପ କରିଛନ୍ତି ଏହି ଗ୍ରନ୍ଥରେ ।

**୬୦- ଶିଶୁବେଦ-** ବିକୃତ ସଂସ୍କୃତ ଭାଷାରେ ରଚିତ ଏହି ଶିଶୁବେଦ ଗ୍ରନ୍ଥଟି ପାଞ୍ଚ ଅଧାୟ ବିଶିଷ୍ଟ । ଏଥିରେ ପଞ୍ଚସଖା ଧର୍ମଦର୍ଶନ ବିଶଦ ଭାବରେ ଆଲୋଚିତ ହୋଇଛି । ସେସବୁ ମଧରେ ରହିଛି ବିଶ୍ୱବ୍ରହ୍ମାଣ୍ଡର ସ୍ୱରୂପ, ଷଡ଼ଚକ୍ର, ନିର୍ବାଣ, ଶୂନ୍ୟବାଦ, ରାଧାକୃଷ୍ଣ ପ୍ରେମତତ୍ତ୍ୱ, ବ୍ରହ୍ମାଣ୍ଡ ସୃଷ୍ଟି, ବୈଷ୍ଣବ-ସାଧୁ-ସନ୍ଥ-ବୈରାଗୀ ଲକ୍ଷଣ, ଅବନା ଆଠ ଅକ୍ଷର, ଅଷ୍ଟାଙ୍ଗ ଯୋଗ, ନୀଳାଦ୍ରି ବୈକୁଣ୍ଠର ପଞ୍ଚମୂର୍ତ୍ତି ତତ୍ତ୍ୱ, ପଞ୍ଚତତ୍ତ୍ୱ, ପଞ୍ଚାତ୍ମା, ପଞ୍ଚବାୟୁ, ପଞ୍ଚ ମଣ୍ଡଳ, ପଞ୍ଚମାତ୍ରା, ପଞ୍ଚଶାଖା, ପଞ୍ଚମଠ ପ୍ରଭୃତି ପ୍ରସଙ୍ଗ । ନୀଳାଦ୍ରିର ଜଗନ୍ନାଥ ହିଁ ନିରାକାର । ସେ ପୁଣି ଅଶେଷ ଜ୍ୟୋତିରେ ଉଦ୍‌ଭାସିତ । ଶରୀର ମଧରେ ନୀଳାଦ୍ରିର ସ୍ଥିତିକୁ ପରିକଳ୍ପନା କରି କବି ନୀଳାଦ୍ରି ସଂପର୍କରେ କହିଛନ୍ତି-

*''କୋଟି କୋଟି ଚନ୍ଦ୍ର ସୂର୍ଯ୍ୟ ଉଦୟଂ ମହା ମଣ୍ଡଳଂ*
*ନିର୍ମଳ ନୀଳାଦ୍ରି କାନ୍ତି ଅଖିଳ ଜନ ମୋହନଂ ।*
*ନିର୍ଲେପ ନିରଞ୍ଜନସ୍ୟ ପ୍ରେମମୟ ବେନି ରୂପଂ*
*ନୀପ ମୂଳେ ବାସୁଦେବ ନିତ୍ୟ ତ୍ରିଭଙ୍ଗୀ ମୋହନମ୍ ।''*

ନାନା ପ୍ରକାର ନିଗୂଢ଼ ଧର୍ମତତ୍ତ୍ୱ ଏହି ଗ୍ରନ୍ଥରେ ଆଲୋଚିତ ହୋଇଥିବାରୁ ଧର୍ମ ସାହିତ୍ୟ କ୍ଷେତ୍ରରେ ଏହାର ସ୍ୱତନ୍ତ୍ର ସ୍ଥାନ ରହିଛି ।

**୬୧- ଶୂନ୍ୟ ଗୀତା-** ଅଚ୍ୟୁତାନନ୍ଦଙ୍କ ବିଭିନ୍ନ ଗ୍ରନ୍ଥରେ ଶୂନ୍ୟବାଦ ପ୍ରସଙ୍ଗ ରହିଥିବା ସ୍ଥଳେ ଏହି ଗ୍ରନ୍ଥରେ ଯେପରି ତାତ୍ତ୍ୱିକ ଓ କବିତ୍ୱ ପୂର୍ଣ୍ଣ ବର୍ଣ୍ଣନା ଦିଆଯାଇଛି ତାହାର ପଟାନ୍ତର ନାହିଁ । ଶୂନ୍ୟ ପୁରୁଷଙ୍କ ଇଙ୍ଗିତରେ ଚନ୍ଦ୍ର ସୂର୍ଯ୍ୟ କୋଟି କୋଟି ବ୍ରହ୍ମାଣ୍ଡ ସୃଷ୍ଟି ହୋଇଛି ଓ ସବୁଠାରେ ସେଇ ହିଁ ବିଦ୍ୟମାନ ଅଛନ୍ତି । ସେ ହେଉଛନ୍ତି ଅଲେଖ, ନିରାକାର, ଅରୂପ, ଅଦେହ । ତୀର୍ଥ ପର୍ଯ୍ୟଟନ ଓ ବୈଷ୍ଣବ ଭେକ ଗ୍ରହଣ ଉପରେ ଅଚ୍ୟୁତାନନ୍ଦ ଗୁରୁତ୍ୱ ଦେଇ ନାହାନ୍ତି । ତାଙ୍କ ମତରେ ସାଧନାରେ ଶୂନ୍ୟ ପୁରୁଷଙ୍କୁ ଦର୍ଶନ କରିବା ହେଉଛି ସାଧକର ପ୍ରଧାନ କର୍ତ୍ତବ୍ୟ । ସେଥିପାଇଁ ଆବଶ୍ୟକ ସଦ୍‌ଗୁରୁ ସେବା, ସତ୍ୟ, ଶାନ୍ତି, ଦୟା ଓ କ୍ଷମା ଆଚରଣ । ସେହି ଶୂନ୍ୟ ବ୍ରହ୍ମଙ୍କ ସ୍ୱରୂପ ବର୍ଣ୍ଣନା କରିବାକୁ ଯାଇ କବି କହିଛନ୍ତି-

*''ଖିଳ ଅଖିଳ ସର୍ବଦେହେ ଅଛି । ବିଳଗେ ଥାଇ ସର୍ବ ଦେଖୁଅଛି ।*
*କାହୁଁ ଅଇଲା କାହୁଁ ତାର ଠଣା । ହର ବ୍ରହ୍ମାଙ୍କୁ କରିଅଛି ବଣା ।''*

ସରଳ ଓ ସାବଲୀଳ ଭାଷାରେ ରଚିତ ଏହି ଗ୍ରନ୍ଥଟି ତତ୍ତ୍ୱ ଓ ସାହିତ୍ୟ ଉଭୟ ଦୃଷ୍ଟିରୁ ସ୍ୱତନ୍ତ୍ର ଆସନର ଅଧିକାରୀ ଅଟେ ।

**୬୨- ଶୂନ୍ୟରାସ-** ଦୁଇ ଅଧ୍ୟାୟ ବିଶିଷ୍ଟ ଏହି ଗ୍ରନ୍ଥରେ ଶୂନ୍ୟରାସର ତାତ୍ପର୍ଯ୍ୟ ବର୍ଣ୍ଣନା କରାଯାଇଛି । ନାମର ମହତ୍ତ୍ୱ, ବୀଜର ପ୍ରାଧାନ୍ୟ, ଅଣାକାର ତତ୍ତ୍ୱ, ଶୂନ୍ୟ ପୁରୁଷ ତତ୍ତ୍ୱ ପ୍ରଭୃତି ପ୍ରସଙ୍ଗ ଆଲୋଚିତ ହୋଇଛି । ଶୂନ୍ୟ ପୁରୁଷଙ୍କ ସଂପର୍କରେ କବି କହିଛନ୍ତି-

*''ଶୂନ୍ୟ ପୁରୁଷ ଜନ୍ମମୃତ୍ୟୁ ନାହିଁ*
*ନମରି ନଜୀଇଁ ସହଜେ ଥାଇ ।*
*ସଖୀ ଗୋ ! ମହାଶୂନ୍ୟରେ ଅଛି*
*ଶୂନ୍ୟରେ ରହି ସେ ରାସ କରୁଛି ।''*

**୬୩- ଶୂନ୍ୟସଂହିତା-** ଅଚ୍ୟୁତାନନ୍ଦଙ୍କ ଲୋକପ୍ରିୟ ରଚନା ମଧ୍ୟରୁ ଏହା ଅନ୍ୟତମ ଗ୍ରନ୍ଥ । ଅଚ୍ୟୁତ ଭକ୍ତମଣ୍ଡଳୀ ଏହାକୁ ବେଦର ମାନ୍ୟତା ପ୍ରଦାନ କରିଥାନ୍ତି । ଓଡ଼ିଆ ଶୂନ୍ୟ ସଂହିତାର ବହୁ ସଂସ୍କରଣ ମିଳୁଥିଲେ ହେଁ ସେସବୁ ମଧ୍ୟରେ କେତେକ ପାର୍ଥକ୍ୟ ପରିଲକ୍ଷିତ ହୁଏ । ସାଧାରଣତଃ 'ଭବିଷ୍ୟତବାଣୀ' ଅଂଶଗୁଡ଼ିକରେ ଲିପିକାରମାନେ ସ୍ୱରଚିତ ପଦମାନ ଯୋଡ଼ି ଦେଇ ତାହାକୁ ପରିବର୍ତ୍ତିତ କରିଦେଇଛନ୍ତି । ତୁରୁଖ, ଅଲେଫ, ହକିକତ୍, ମରହଟ୍ଟା, ଗୋହିରାଟିକିରୀ, କଲମ ଆଦି ଯାବନିକ ଶବ୍ଦ ଏଥିରେ ବ୍ୟବହୃତ ହୋଇଛି । ଏହାକୁ ସମକାଳୀନ ଯବନ ଶାସକଙ୍କ ପ୍ରଭାବ ବା ପ୍ରକ୍ଷେପ ବୋଲି କୁହାଯାଇପାରେ । ସେହିପରି ଏହି ଗ୍ରନ୍ଥରେ ଯବନ ପରେ ମରହଟ୍ଟା ଓଡ଼ିଶାକୁ ଶାସନ କରିବେ ବୋଲି ଉଲ୍ଲେଖ ଅଛି । ଅଚ୍ୟୁତାନନ୍ଦଙ୍କ ପ୍ରାୟ ଦୁଇଶହ ବର୍ଷପରେ ମରହଟ୍ଟାମାନେ ଓଡ଼ିଶାକୁ ଆସିଲେ । ଅଥଚ 'ଶୂନ୍ୟ ସଂହିତା'ରେ କିପରି ଏକଥା ରହିଲା ? ଶୂନ୍ୟ ସଂହିତାର ବହୁ ଅଂଶରେ ନାନା ଐତିହାସିକ ତଥ୍ୟଗତ ତ୍ରୁଟି ଓ ଅର୍ବାଚୀନ ଭାଷାର ବ୍ୟବହାର ରହିଛି । ସେଥିପାଇଁ ଏହି ଗ୍ରନ୍ଥର ଏକ ଶୁଦ୍ଧ ସଂପାଦନା ଆବଶ୍ୟକ ହେଉଛି । ନାନାପ୍ରକାର ପ୍ରମାଦ ସତ୍ତ୍ୱେ ପଞ୍ଚସଖା ଧର୍ମଦର୍ଶନ, ସିଦ୍ଧ ସାଧକମାନଙ୍କ ବିବରଣୀ ଓ ପ୍ରଦତ୍ତ ଐତିହାସିକ ତଥ୍ୟ ଦୃଷ୍ଟିରୁ ଗ୍ରନ୍ଥଟି ଅତ୍ୟନ୍ତ ମହତ୍ତ୍ୱପୂର୍ଣ୍ଣ ।

ଏଥିରେ ଶ୍ରୀଚୈତନ୍ୟ ଓ ପଞ୍ଚସଖା ପ୍ରସଙ୍ଗ ବିଶଦ ଭାବରେ ବର୍ଣ୍ଣିତ ହୋଇଛି । ଶ୍ରୀଚୈତନ୍ୟଙ୍କ ଆଗମନର ବିବରଣୀ ଦିଆଯିବା ସଙ୍ଗେ ସଙ୍ଗେ ତାଙ୍କୁ ଶ୍ରୀକୃଷ୍ଣଙ୍କର ଅବତାର ଭାବରେ ପରିକଳ୍ପନା କରାଯାଇଛି । ଶୂନ୍ୟ ଭଜନ ସଂପର୍କରେ ରାଜା ପ୍ରତାପରୁଦ୍ର ଦେବ ଓ ବ୍ରାହ୍ମଣମାନଙ୍କ ସମ୍ମୁଖରେ ଅଚ୍ୟୁତାନନ୍ଦଙ୍କୁ କଠିନ ପରୀକ୍ଷା ଦେବାକୁ ପଡ଼ିଥିଲା । ସେ ଲେଖିଛନ୍ତି-

*"ଏମନ୍ତ ପ୍ରହରେ ଗୋଳ ଲାଗିଲା । ରାଜନ ମୋତେ ଧରି ଘେନି ଗଲା ।*
*ବଡ଼ ଦାଣ୍ଡରେଣ ହୋଇଲା ଗୋଳ । ଠେଲାଠେଲି ଲୋକେ ଅତି ଗହଳ ।*
*ବାଜି ମୁହାଣୀ ଶୂନ୍ୟବାମିଠାରେ । ଭଜନ କର ଦାସେ ଏହିଠାରେ ।*
*ଦେଖନ୍ତୁ ଯେତେକେ ଏ ଦ୍ୱିଜବର । ପ୍ରଚ୍ଛନ୍ନେ ପରୀକ୍ଷା ଆମ୍ଭ ଛାମୁର ।"*

ନିଜ ଶରୀରରେ ୩୨ ଅକ୍ଷର ସ୍ଥାପନ କରି ମହାପୁରୁଷ ଅଚ୍ୟୁତାନନ୍ଦ ଶୂନ୍ୟ ସମାଧିରେ ବସି ସାଧନା କଲେ । ରାଜା ଓ ଉପସ୍ଥିତ ଥିବା ବ୍ରାହ୍ମଣ ପଣ୍ଡିତମାନେ ବିସ୍ମିତ ହୋଇ ତାଙ୍କ ପାଖରେ ପରାଜୟ ସ୍ୱୀକାର କରିଥିଲେ । ପଞ୍ଚସଖା ଓ ଶ୍ରୀଚୈତନ୍ୟ ଜଗନ୍ନାଥଙ୍କର ଅଂଶବିଶେଷ । ସନ୍ଥସାଧକ ମାଧୁରୀ ଦାସଙ୍କର ଶ୍ରୀଚୈତନ୍ୟଙ୍କ ସହ ଭେଟ ହେବା ପ୍ରସଙ୍ଗ କବି ଅତି ସୁନ୍ଦର ଭାବରେ ଗ୍ରନ୍ଥରେ ବର୍ଣ୍ଣନା କରିଛନ୍ତି ।

ପ୍ରାଚୀ ତୀରରେ ସାଧନା ରତ ଥିବା ବହୁ ଯୋଗୀ-ସାଧକ-ମାନଙ୍କର ବିବରଣୀ ଏଥିରେ ପ୍ରକାଶ ପାଇଛି । ସେମାନଙ୍କ ମଧ୍ୟରେ ଅଛନ୍ତି ମାଧୁରୀ, ମଲ୍ଲିକାନାଥ, ବୀରସିଂହ, ଲୋହି ଦାସ, ଗୋରେଖନାଥ, ବାଲିଗାଁ ଦାସ ପ୍ରମୁଖ । ଶୂନ୍ୟବାଦର ଉପସ୍ଥାପନା କରିବା ହେଉଛି ଏହି ଗ୍ରନ୍ଥର ମୌଳିକ ଲକ୍ଷ୍ୟ । ଏଥିରେ ଶୂନ୍ୟ, ମହାଶୂନ୍ୟ, ଅଲେଖ, ନିରଞ୍ଜନ, ଅରୂପ, ଅଣାକାର ପ୍ରଭୃତି ଶୂନ୍ୟବାଚକ ଶବ୍ଦ ପ୍ରୟୋଗ ହୋଇଛି । ଶିଷ୍ୟ ରାମଚନ୍ଦ୍ରଙ୍କୁ ଶୂନ୍ୟପୁରୁଷ କଥା ବୁଝାଇବାକୁ ଯାଇ କବି ବର୍ଣ୍ଣନା କରିଛନ୍ତି-

*"ଭଲା ପଚାରିଲୁ ଗୁପତ ସନ୍ଧି । ଶୂନ୍ୟ ପୁରୁଷ ଶୂନ୍ୟ ପରେ ବନ୍ଦୀ ।*
*ଶୂନ୍ୟ ପୁରୁଷ ଉଦାସରେ ରହେ । ଶୂନ୍ୟ ପୁରୁଷ ସବୁ ମାୟା ବହେ ।"*

ଏହି ଶରୀର ହେଉଛି ଗଡ଼ ସଦୃଶ ଓ ଏହାକୁ ଜଗି ରହିଛନ୍ତି ଏକାଦଶ ଇନ୍ଦ୍ରିୟ, ପାଞ୍ଚମନ, ପଚିଶ ପ୍ରକୃତି, ଷଡ଼ଚକ୍ର ଓ ବାସ୍ତରି ନାଡ଼ି । ନିରାକାର ମନ୍ତ୍ର ସାଧନ ଓ ଶୂନ୍ୟ ଭଜନ ଦ୍ୱାରା ଶୂନ୍ୟ ରୂପୀ ଶରୀର ମଧ୍ୟରେ ଥିବା ଶୂନ୍ୟ ପୁରୁଷଙ୍କୁ ସାଧକ ଦର୍ଶନ କରିପାରିବ । ଏହି ଶୂନ୍ୟକୁ ଉପଲବ୍ଧି କରିବା ସଂପର୍କରେ ସେ କହିଛନ୍ତି-

*"ଅଚଳେ ସୁମନ ନିଶ୍ଚଳେ ଧର । ଶୂନ୍ୟ ପୁରୁଷଙ୍କୁ ତୁ ଭଯେ କର ।*
*ଦିଶିବ ଶୂନ୍ୟ ଦିବ୍ୟମାନ କାୟା । ନିରାକାର ରୂପ ଅରୂପ ଦେହା ।"*

ଏହି ଗ୍ରନ୍ଥରେ ସଦ୍‌ଗୁରୁଙ୍କୁ ସେବା କରିବା ଉପରେ ଗୁରୁତ୍ୱ ଦିଆଯାଇଛି ।

ସଂସ୍କୃତ ଭାଷାରେ ଅନ୍ୟ ଏକ ଶୂନ୍ୟ ସଂହିତା ଅଚ୍ୟୁତାନନ୍ଦଙ୍କ ନାମରେ ପ୍ରଚଳିତ ଅଛି । ଶିଷ୍ୟ ରାମଚନ୍ଦ୍ର ଓ ଗୁରୁ ଅଚ୍ୟୁତାନନ୍ଦଙ୍କ କଥୋପକଥନ ଛଳରେ ଗ୍ରନ୍ଥଟି ରଚିତ ।

**୬୪- ହରିବଂଶ-** ସାରଳା ଦାସଙ୍କ 'ମହାଭାରତ', ବଳରାମ ଦାସଙ୍କ 'ଜଗମୋହନ ରାାମୟଣ' ଓ ଜଗନ୍ନାଥ ଦାସଙ୍କ 'ଭାଗବତ' ପରି ଅତ୍ୟନ୍ତ ଲୋକପ୍ରିୟ ଗ୍ରନ୍ଥ ହେଉଛି, 'ହରିବଂଶ' । ସାତଖଣ୍ଡରେ ବିଭକ୍ତ ହୋଇଥିବାରୁ ଏହାକୁ ମଧ୍ୟ 'ସାତଖଣ୍ଡିଆ ହରିବଂଶ' କୁହାଯାଏ । ରଣପୁର ସାମନ୍ତ ରାଜା ପଦ୍ମନାଭ ନରେନ୍ଦ୍ରଙ୍କ ପୃଷ୍ଠପୋଷକତା ଲାଭ କରି ଅଚ୍ୟୁତାନନ୍ଦ ମଝିଆଖଣ୍ଡ ଗ୍ରାମରେ ଥିବାବେଳେ ଏହି ଗ୍ରନ୍ଥ ରଚନା କରିଥିଲେ ।

ଶ୍ରୀ ହରିଜନ୍ମ ବା ଜନ୍ମାଷ୍ଟମୀ ଦିନ ଘରେ ଘରେ ହରିବଂଶ ପାଠ କରାଯାଏ । ଦାଣ୍ଡୀ ବୃତ୍ତରେ ରଚିତ ଏପରି ଏକ ଅମୂଲ୍ୟ ଗ୍ରନ୍ଥ ଡ଼ଃ କୃଷ୍ଣ ଚରଣ ସାହୁଙ୍କ ଦ୍ୱାରା ସଂପାଦିତ ହୋଇ ଉତ୍କଳ ବିଶ୍ୱବିଦ୍ୟାଦଳୟ ଦ୍ୱାରା ପ୍ରକାଶିତ ହୋଇଛି ।

ପ୍ରଥମ ଖଣ୍ଡରେ କଂସର ଜନ୍ମ, ରାଜତ୍ୱ ପ୍ରାପ୍ତି, ଦିଗ୍‌ବିଜୟ, ସ୍ୱର୍ଗପୁର ଆକ୍ରମଣ, ଦେବତାମାନଙ୍କର ବିଷ୍ଣୁଙ୍କୁ ସ୍ତୁତି ଓ ବସୁଧାର ବିଷ୍ଣୁଙ୍କ ନିକଟରେ ଦୁଃଖ ନିବେଦନ ଆଦି ପ୍ରସଙ୍ଗ ସ୍ଥାନ ପାଇଛି । ଦ୍ୱିତୀୟ ଖଣ୍ଡରେ ବଳରାମଙ୍କ ଜନ୍ମ, ବିଜୁଳି କନ୍ୟା ଦ୍ୱାରା କଂସର ମୃତ୍ୟୁଭେଦ କଥନ, ଦର୍ପଣ ଶିଳା ବୃତ୍ତାନ୍ତ, ଶ୍ରୀକୃଷ୍ଣଙ୍କ ଜନ୍ମ ଓ ବାଲ୍ୟଲୀଳା, ଶକଟାସୁର ବଧ, ଯାମଳାର୍ଜ୍ଜୁନ ଭଞ୍ଜନ, ଯଶୋଦାଙ୍କର ବିଶ୍ୱରୂପ ଦର୍ଶନ ପ୍ରଭୃତି ବିଷୟ ବର୍ଣ୍ଣିତ ହୋଇଛି । ତୃତୀୟ ଖଣ୍ଡର ବିଷୟବସ୍ତୁ ହେଲା- ଶ୍ରୀରାଧାକୃଷ୍ଣ ଲୀଳା, ରାସଲୀଳା, ବକାସୁର ବଧ, ବୃନ୍ଦାବତୀ ଚରିତ, ବସ୍ତ୍ରହରଣ, ମନ୍ଦରଗିରି ଧାରଣ, କେଶୀ-କଦମ୍ବାସୁର ବଧ, କଂସର ଧନୁଯାତ୍ରା, ରାମକୃଷ୍ଣଙ୍କ ମଥୁରା ଗମନ, ମଥୁରାଲୀଳା ଏବଂ କଂସବଧ ପ୍ରଭୃତି । ଚତୁର୍ଥ ଖଣ୍ଡରେ ଉଗ୍ରସେନଙ୍କ ରାଜ୍ୟାଭିଷେକ, ରାମକୃଷ୍ଣଙ୍କ ବିଦ୍ୟାପଠନ, ରୁକ୍ମିଣୀ ସ୍ୱୟମ୍ବର, ରାମକୃଷ୍ଣଙ୍କର ଇନ୍ଦ୍ରଭୁବନ ପ୍ରବେଶ ଓ ବ୍ରହ୍ମଲୋକ ଯାତ୍ରା, ଉଗ୍ରସେନଙ୍କ ସହିତ ରାମକୃଷ୍ଣଙ୍କର ମଥୁରା ପ୍ରବେଶ ଆଦି ପ୍ରସଙ୍ଗ ବର୍ଣ୍ଣିତ ହୋଇଛି । ପଞ୍ଚମ ଖଣ୍ଡରେ ଜରାସନ୍ଧ ସହିତ ରାମକୃଷ୍ଣଙ୍କର ଯୁଦ୍ଧ, କୃଷ୍ଣଙ୍କର ଗୋପୀଚିନ୍ତା ଓ ସେମାନଙ୍କ ନିକଟକୁ ଉଦ୍ଧବଙ୍କୁ

ପ୍ରେରଣ, ଦ୍ୱାରକା ପୁରୀ ନିର୍ମାଣ ଆଦି କଥାବସ୍ତୁ ସ୍ଥାନ ପାଇଛି । ଷଷ୍ଠ ଖଣ୍ଡର ବିଷୟବସ୍ତୁ ହେଲା- ରୁକ୍ମିଣୀ ହରଣ, ଶିଶୁପାଳ ଅପମାନ, କାର୍ତ୍ତିକେୟ ଜନ୍ମ, ତାରକାସୁର ବଧ, ସମ୍ବରାସୁର ବଧ, ସତ୍ୟବତୀ-କମଳା ଓ ତୁଳସୀ ସହିତ ଶ୍ରୀକୃଷ୍ଣଙ୍କ ବିବାହ, ଜାମ୍ବବତୀ ବିବାହ, ସତ୍ୟଭାମା ପରିଣୟ, ଦ୍ରୌପଦୀ ସ୍ୱୟମ୍ବର, ନରକାସୁର ବଧ, ପାରିଜାତ ହରଣ, ଶିଶୁପାଳ ବଧ, ଜରାସନ୍ଧ ବଧ, ଭୃଗୁ ଉପାଖ୍ୟାନ ପ୍ରଭୃତି । ଗୋବତ୍ସା ହରଣ, ରାଧା ଓ ଗୋପୀମାନଙ୍କ ଜନ୍ମ ବୃତ୍ତାନ୍ତ, ଅଷ୍ଟପାଟବଂଶୀଙ୍କୁ ଶ୍ରୀକୃଷ୍ଣଙ୍କ ମାୟା ପ୍ରଦର୍ଶନ, ସୁଭଦ୍ରା ପରିଣୟ, କୃଷ୍ଣଙ୍କ ପୁତ୍ରମାନଙ୍କୁ ଦୁର୍ବାସାଙ୍କ ଅଭିଶାପ, ଅକ୍ରୂର ଓ ଉଦ୍ଧବଙ୍କର ବଦ୍ରିକା ଗମନ, ଯଦୁବଂଶ ଧ୍ୱଂସ, ଶ୍ରୀକୃଷ୍ଣଙ୍କ ଦେହତ୍ୟାଗ, ସମୁଦ୍ର ଜଳରେ ଦ୍ୱାରକା ନିମଗ୍ନ, ଅଷ୍ଟପାଟ ବଂଶୀଙ୍କ ଦେହତ୍ୟାଗ, ନୀଳାଚଳରେ ଶବରର ବିଷ୍ଣୁ ପ୍ରତିମା ପୂଜା, ଦାରୁବ୍ରହ୍ମ ଜଗନ୍ନାଥଙ୍କ ଅବସ୍ଥିତି ପ୍ରଭୃତି ପ୍ରସଙ୍ଗ ସପ୍ତମ ଖଣ୍ଡରେ ବର୍ଣ୍ଣନା କରାଯାଇଛି ।

ସାରଳା ଦାସଙ୍କ ମହାଭାରତରେ ଯେପରି ନିଜକୁ ମୂର୍ଖ, ଅଜ୍ଞାନ କହି ସାରଳାଙ୍କ କୃପାରୁ ଗ୍ରନ୍ଥ ଲେଖିଥିବା କଥା ମହାଭାରତର ବିଭିନ୍ନ ସ୍ଥାନରେ ପ୍ରକାଶ କରିଛନ୍ତି, ଅଚ୍ୟୁତାନନ୍ଦ ସେହିପରି ନିଜକୁ ମୂର୍ଖ, ବାଳକମତି, ଜ୍ଞାନହୀନ ଇତ୍ୟାଦି କହି ସାରଦାଙ୍କ କୃପାରୁ ଗ୍ରନ୍ଥ ରଚନା କରିଥିବା କଥା ହରିବଂଶର ବିଭିନ୍ନ ସ୍ଥାନରେ ବର୍ଣ୍ଣନା କରିଛନ୍ତି ।

*"ନ ପଢ଼ିଲି କାବ୍ୟଗ୍ରନ୍ଥ ପୁରାଣର ବାଟ*
*କେବଳ ମୋ ପୂର୍ବଭାଗ୍ୟେ ହେଲା ଜ୍ଞାନ ଭେଟ ।*
*ଚଞ୍ଚଳ ଚିତ୍ତ ମୋହର ବାଳଭାବ ବୁଦ୍ଧି*
*ପଣ୍ଡିତ ସଙ୍ଗେ ବସିବା ପାଇଁ ନାହିଁ ସିଦ୍ଧି ।"*

ଜଣେ ସମାଜ ସଚେତନ କବି ଭାବରେ ରାଜା, ପ୍ରଜା, ବୈଷ୍ଣବ, କ୍ଷତ୍ରିୟ, କୁଳସ୍ତ୍ରୀ, ଗୁରୁ, ଶିଷ୍ୟ ଓ ବୈଦ୍ୟ ପ୍ରଭୃତି କି ପ୍ରକାର ଧର୍ମ ଆଚରଣ କରିବା ଉଚିତ ତାହା ସେ ଗ୍ରନ୍ଥରେ ବର୍ଣ୍ଣନା କରିଛନ୍ତି । ରାଜସଭାରେ ଓ ଇନ୍ଦ୍ରଙ୍କ ସଭାରେ ପ୍ରସଙ୍ଗ କ୍ରମେ ଯେପରି ନୃତ୍ୟଗୀତର ବର୍ଣ୍ଣନା କରାଯାଇଛି, ସେଥିରୁ କବିଙ୍କର ସଂଗୀତ ଶାସ୍ତ୍ରରେ ଗଭୀର ଜ୍ଞାନ ଥିବା ଜଣାଯାଏ । ପ୍ରସଙ୍ଗକ୍ରମେ ତତ୍‌କାଳୀନ ଓଡ଼ିଶାର ରାଜନୀତି, ଚାଲିଚଳନ, ପର୍ବପର୍ବାଣୀ, ବିବାହ ଉତ୍ସବ, ଶିକ୍ଷା, ଖାଦ୍ୟପେୟ, ସାଜସଜ୍ଜା ଓ ସାଂସ୍କୃତିକ ଜୀବନର ଜୀବନ୍ତ ଚିତ୍ର ହରିବଂଶରେ ପ୍ରକାଶ ପାଇଛି । ତନ୍ତ୍ର ବିଦ୍ୟା, ଜ୍ୟୋତିଷ ଶାସ୍ତ୍ର ଓ ଯୁଦ୍ଧବିଦ୍ୟା

ଆଦି ସଂପର୍କରେ କବି ଯେପରି ବର୍ଣ୍ଣନା କରିଛନ୍ତି ସେଥିରୁ ଏ ସବୁରେ କବିଙ୍କର ଗଭୀର ଜ୍ଞାନଥିବା ଅନୁମିତ ହୁଏ ।

କବିଙ୍କର ବର୍ଣ୍ଣନା ଚାତୁରୀ ଅତ୍ୟନ୍ତ ହୃଦୟସ୍ପର୍ଶୀ । ଏହି ଗ୍ରନ୍ଥଟି ସଂସ୍କୃତ ହରିବଂଶର ଅବିକଳ ଅନୁବାଦ ନୁହେଁ ଓ ଏଥିରେ କବିଙ୍କର ମୌଳିକତା ଯଥେଷ୍ଟ ପରିମାଣରେ ପ୍ରକାଶ ପାଇଛି । ଶ୍ରୀକୃଷ୍ଣଙ୍କ ଚରିତ ମୁଖ୍ୟ ଆଧାର ହୋଇଥିବାରୁ ଏହା ଏକ ପବିତ୍ର ଗ୍ରନ୍ଥ । ଶୁଦ୍ଧପୂତ ଭାବରେ ଏହି ଗ୍ରନ୍ଥକୁ ପାଠ କଲେ ଅଶେଷ ପୁଣ୍ୟଲାଭ ହୁଏ ବୋଲି ସମସ୍ତଙ୍କର ବିଶ୍ୱାସ । ସେଥିପାଇଁ ଓଡ଼ିଶାର ଅଗଣିତ ରସପିପାସୁ ଜନସାଧାରଣ ଓ ଭକ୍ତମଣ୍ଡଳୀ ପାଇଁ ଏହା ଏକ ଅମୂଲ୍ୟ ଗ୍ରନ୍ଥ ।

ଆଲୋଚିତ ଗ୍ରନ୍ଥମାନଙ୍କ ପ୍ରସଙ୍ଗ ବିଭିନ୍ନ ସୂତ୍ରରୁ ଏଠାରେ ଉଦ୍ଧାର କରାଯାଇଛି । କିନ୍ତୁ ଅଚ୍ୟୁତାନନ୍ଦଙ୍କ ରଚନା ତାଲିକାଭୁକ୍ତ ହୋଇଥିବା କେତେକ ଗ୍ରନ୍ଥର ନାମ କେବଳ ବିଭିନ୍ନ ଗ୍ରନ୍ଥରେ ଉଲ୍ଲେଖ ହୋଇଛି । ସେଥିମଧ୍ୟରୁ ଅନେକ କେବଳ ତାଳପତ୍ର ପୋଥି ଅଥବା ପାଣ୍ଡୁଲିପି ଆକାରରେ ରହିଛି । ଏପରି ସ୍ଥଳେ କବିଙ୍କର ସବୁ ଗ୍ରନ୍ଥ ସଂପର୍କରେ ଆଲୋଚନା କରିବା ସମ୍ଭବ ନୁହେଁ କି ବୈଜ୍ଞାନିକ ଦୃଷ୍ଟିକୋଣରୁ ସେ ସମସ୍ତ ଗ୍ରନ୍ଥକୁ ପଞ୍ଚସଖା ଅନ୍ତର୍ଗତ ଅଚ୍ୟୁତାନନ୍ଦଙ୍କର ବୋଲି କହିବା ମଧ୍ୟ ଉଚିତ ନୁହେଁ । କାରଣ ଏ ସଂପର୍କରେ ଅଧ୍ୟାପକ ଡ଼ଃ ଦେବେନ୍ଦ୍ର ମହାନ୍ତିଙ୍କ ମନ୍ତବ୍ୟ ବିଶେଷ ପ୍ରଣିଧାନଯୋଗ୍ୟ । ସେ ଲେଖିଛନ୍ତି, ''ଅଚ୍ୟୁତାନନ୍ଦଙ୍କ ଗାଦି ବର୍ତ୍ତମାନ ଯେଉଁଠାରେ ଅଛି, ସେଠାରେକୌଣସି ପୋଥିପତ୍ର ନାହିଁ । ତାଙ୍କ ଗାଦିର ଅଦୂରରେ ମହିମା ଗାଦି ନାମକ ଏକ ଗାଦି ଅଛି, ଯେଉଁଠାରେ କି କେତେକ ପୋଥି ସଂରକ୍ଷିତ ହୋଇଅଛି । ସେଠାରେ ଏକ ଗୃହ ମଧ୍ୟରେ କାଠପେଟି ଭିତରେ ପୋଥିଗୁଡ଼ିକ ରଖାଯାଇ ପୂଜା କରାଯାଉଅଛି । ଲୋକମୁଖରୁ ଶୁଣାଯାଏ ଯେ ସେହି ପୋଥିଗୁଡ଼ିକ ଅଚ୍ୟୁତାନନ୍ଦଙ୍କ ଗାଦିରୁ ଅଣାଯାଇ ସେଠାରେ ରଖାଯାଇଅଛି ।'' (ପଞ୍ଚସଖା ଓଡ଼ିଆ ସାହିତ୍ୟ-୧୯୭୩)

ଅବଶ୍ୟ ଅଚ୍ୟୁତାନନ୍ଦ ଦାସଙ୍କ ମୌଳିକ ପୋଥିଗୁଡ଼ିକ ତାଙ୍କର ପଟ୍ଟଶିଷ୍ୟ ରାମଦାସଙ୍କ ବଂଶଧରଙ୍କ ଘରେ ସୁରକ୍ଷିତ ରହିଛି । ସେସବୁ ଜନସାଧାରଣଙ୍କ ପଠନ ସୁବିଧାରୁ ବଞ୍ଚିତ ।



# ମଣ୍ଡଳ ପ୍ରତିଷ୍ଠା ଓ ଧର୍ମ ପ୍ରଚାର

ଶ୍ରୀକ୍ଷେତ୍ରରେ ଦୀକ୍ଷା ଗ୍ରହଣ କରିବାବେଳକୁ ଅଚ୍ୟୁତାନନ୍ଦ ନାନା ପୁରାଣ ଶାସ୍ତ୍ର ଅଧ୍ୟୟନ କରି ବିଶେଷ ଜ୍ଞାନ ଅର୍ଜନ କରିପାରିଥିଲେ । ତାଙ୍କର ଭଗବତ ପ୍ରୀତି ଯୋଗୁଁ ସେ ଜଣେ ପରମ ଭକ୍ତରେ ପରିଗଣିତ ହୋଇଥିଲେ । ନୃତ୍ୟଗୀତ ଓ କୀର୍ତ୍ତନ ଆଦିରେ ତାଙ୍କର ଅଶେଷ ଶ୍ରଦ୍ଧା ଦେଖି ଶ୍ରୀଚୈତନ୍ୟ ମଧ୍ୟ ଅଭିଭୂତ ହୋଇ ସନାତନ ଗୋସ୍ୱାମୀଙ୍କୁ ଆଦେଶ ଦେଲେ ତାଙ୍କୁ ଦୀକ୍ଷା ପ୍ରଦାନ କରିବାକୁ । ଦୀକ୍ଷା ଗ୍ରହଣ ପରେ ସେ ଖୋଳ କରତାଳ ଧରି ମଧୁର କଣ୍ଠରେ ଗୀତ ଗାଇ ଗାଇ ନୃତ୍ୟ କରିବାକୁ ଲାଗିଲେ । ଗୁରୁଙ୍କ ନିର୍ଦ୍ଦେଶରେ ସେ ଧର୍ମ ପ୍ରଚାର କରିବାକୁ ଲାଗିଲେ ଓ କାଳକ୍ରମେ ତାଙ୍କର ଲୋକପ୍ରିୟତା ବଢ଼ିବାକୁ ଲାଗିଲା । ସେ ଶୂଦ୍ରହୋଇ ପୁରାଣ ଶାସ୍ତ୍ର ଚର୍ଚ୍ଚା ଓ ଧର୍ମ ପ୍ରଚାର କରୁଥିବାରୁ ବ୍ରାହ୍ମଣମାନଙ୍କର ରୋଷର ପାତ୍ର ହୋଇଥିଲେ । ତେଣୁ ରାଜା ପ୍ରତାପରୁଦ୍ରଙ୍କ ଆଦେଶାନୁସାରେ ଅଚ୍ୟୁତାନନ୍ଦ ଶୂନ୍ୟବାମ୍ଫିରେ ଭଜନ କରି ପରୀକ୍ଷାରେ ଉତ୍ତୀର୍ଣ୍ଣ ହେବା ସଙ୍ଗେ ସଙ୍ଗେ ରାଜା ଓ ବ୍ରାହ୍ମଣମାନଙ୍କର ସମ୍ମାନର ପାତ୍ର ହୋଇ ପାରିଥିଲେ । ଶୂନ୍ୟ ସଂହିତାରେ ଅଛି ଯେ, ଅଚ୍ୟୁତାନନ୍ଦଙ୍କୁ ପ୍ରାଚୀକ୍ଷେତ୍ର ନିକଟବର୍ତ୍ତୀ ଋଷି ଆଶ୍ରମରେ ଥିବା ଗୋରେଖନାଥ, ବୀରସିଂହ, ବାଲୁଗାଁ ଦାସ, ସିଦ୍ଧ ବାରଙ୍ଗ ଦାସ ପ୍ରମୁଖଙ୍କ ସହିତ ପ୍ରତିଦ୍ୱନ୍ଦ୍ୱିତା କରିବାକୁ ପଡ଼ିଥିଲା । କିନ୍ତୁ ଯୋଗସାଧନା କ୍ଷେତ୍ରରେ ଅଚ୍ୟୁତାନନ୍ଦଙ୍କ ନୂତନ ଦିଗଦର୍ଶନ ନିକଟରେ ସେମାନେ ସମସ୍ତେ ପରାସ୍ତ ହୋଇଥିଲେ । ଏସବୁ ଦୃଷ୍ଟିରୁ ଜଣେ ବିଶିଷ୍ଟ ଯୋଗସାଧକ ତଥା ଧର୍ମପ୍ରଚାରକ ଭାବରେ ଅଚ୍ୟୁତାନନ୍ଦଙ୍କର ଖ୍ୟାତି ବିଶେଷ ଭାବରେ ବଢ଼ିଗଲା । ତତ୍ପରେ ସେ ପଦ୍ମବନ ନେମାଳକୁ ନିଜର ସାଧନା ପୀଠ ଭାବରେ ଗ୍ରହଣ କଲେ । ନିଜକୁ ଗୋପାଳ ଜାତିର ଗୁରୁ ତଥା ମୁକ୍ତିଦାତା, ରାସଲୀଳାର ସ୍ରଷ୍ଟା ଓ ଜଣେ ବ୍ରହ୍ମଜ୍ଞାନୀ ସାଧକ ଭାବରେ ସେ ପ୍ରସିଦ୍ଧି ଅର୍ଜନ କଲେ । ଫଳରେ ତାଙ୍କର ଜ୍ଞାନ, ଭକ୍ତି ଓ ସର୍ବୋପରି ବ୍ୟକ୍ତିତ୍ୱ ଦ୍ୱାରା ଆକୃଷ୍ଟ ହୋଇ ଅଗଣିତ ଭକ୍ତ ତାଙ୍କର ଶିଷ୍ୟତ୍ୱ ଗ୍ରହଣ କଲେ ।

ଅଚ୍ୟୁତାନନ୍ଦଙ୍କ ରଚିତ ବିଭିନ୍ନ ଗ୍ରନ୍ଥରେ ତାଙ୍କର ଶିଷ୍ୟମାନଙ୍କ ପ୍ରସଙ୍ଗ ବିଶଦ ଭାବରେ ବର୍ଣ୍ଣିତ ହୋଇଛି । ଭାଗବତକାର ଜଗନ୍ନାଥ ଦାସଙ୍କ ଅତିବଡ଼ି ସଂପ୍ରଦାୟ

ପରି ସେ ନିଜେ କୌଣସି ବୈଷ୍ଣବ ସଂପ୍ରଦାୟ ସୃଷ୍ଟି କରି ନଥିଲେ । କିନ୍ତୁ ସେ ନିଜେ ଦୀକ୍ଷା ଗ୍ରହଣ କରିଥିବା ସଂପ୍ରଦାୟର ନାମ ହେଉଛି 'ନିମାନନ୍ଦ ସଂପ୍ରଦାୟ' । ବିଭିନ୍ନ ଗ୍ରନ୍ଥରେ ଶିଷ୍ୟମାନେ ନାନା ପ୍ରକାର ପ୍ରଶ୍ନମାନ ପଚାରିଛନ୍ତି ଓ ସେସବୁ ପ୍ରଶ୍ନର ଉତ୍ତର ଦେଉଛନ୍ତି ଗୁରୁ ଅଚ୍ୟୁତାନନ୍ଦ ।

ତାଙ୍କର ଅଗଣିତ ଶିଷ୍ୟମାନଙ୍କ ମଧ୍ୟରୁ କେତେକଙ୍କର ନାମ ବିଭିନ୍ନ ଗ୍ରନ୍ଥରେ ଉଲ୍ଲେଖ ହୋଇଛି । 'ଗୁରୁଭକ୍ତି ଗୀତା'ରେ ଥିବା ଶିଷ୍ୟମାନଙ୍କ ନାମ ହେଉଛି- ରାମଚନ୍ଦ୍ର, ଉଦ୍‌ଥାନ, ପବନ, ମୁକୁନ୍ଦ, ଅନନ୍ତ, ବସ୍ତ, ଯାଦବ, ଆନନ୍ଦ, ବାଳକ, ମଧୁ, ମଥୁରୀ, ଭ୍ରଥ, ବିଷ୍ଣୁ, ସୁଦାମ, ଗୋବିନ୍ଦ, ବକ୍ର ଦାସ, ଯଦୁ, ବୃନ୍ଦାବନ, ମୁରାରି, ଧର୍ମଦାସ, ନିରଞ୍ଜନ, ନନ୍ଦ, କନ୍ଦ, ଦକ୍ଷିଣଚନ୍ଦ୍ର, ଚନ୍ଦ୍ରଦାସ, ଚକ୍ରୀରାମ, ଲୋହରାମ ଓ ଗୋପରାମ । ଶିଷ୍ୟମାନଙ୍କୁ ଗ୍ରନ୍ଥର ବିଭିନ୍ନ ସ୍ଥାନରେ ଅଚ୍ୟୁତାନନ୍ଦ ଯେପରି ସମ୍ବୋଧନ କରି ଅଛନ୍ତି ସେଥିରୁ ଅନେକ ଶିଷ୍ୟଙ୍କର ଜାତିକୁଳ ଜାଣିହୁଏ । ଅଧିକାଂଶ ସ୍ଥାନରେ ବରଜ ଗୋପାଳ, ଗୋପାଳ ସୁତ, 'ବ୍ରଜକୁଳ ସାର' ଆଦିରୁ ସେମାନେ ଗୋପାଳ ଥିବା ଅନୁମିତ ହୁଏ । ଏପରିକି ତାଙ୍କର ୨୪ଜଣ ଶିଷ୍ୟଙ୍କୁ ଗୋପାଳ ଭାବରେ ପରିଚିତ କରାଇ ସେ ଲେଖିଛନ୍ତି-

*''ରାମଚନ୍ଦ୍ର ବାକ୍ୟ ଶୁଣି କହି ହରଷେଣ*
*ଚବିଶ ଗୋପାଳ ତୁମ୍ଭେ ସାବଧାନେ ଶୁଣ ।''*

*ଗୁରୁଭକ୍ତି ଗୀତା-୨/୧୧ ପଟଳ*

ତାଙ୍କ ଶିଷ୍ୟମାନଙ୍କ ମଧ୍ୟରୁ ଅଧିକାଂଶ ଗୋପାଳ ଜାତିର ହୋଇଥିଲେ ମଧ୍ୟ ଅନ୍ୟାନ୍ୟ ଜାତିର ଲୋକଙ୍କୁ ସେ ଶିଷ୍ୟଭାବରେ ଗ୍ରହଣ କରିଥିଲେ । ତାଙ୍କ ଶିଷ୍ୟମାନଙ୍କ ମଧ୍ୟରେ ବାରଜଣ ଥିଲେ ପ୍ରଧାନ ଶିଷ୍ୟ । ସେମାନେ ହେଲେ ମୁକୁନ୍ଦ, ଅନନ୍ତ, ବସ୍ତ, ପବନ, ସୁଦାମ, ଯାଦବ, ବାଳକ, ମଧୁ, ମଥୁରୀ, ଉଦ୍‌ଥାନ, ଗୋବିନ୍ଦ ଓ ବୃନ୍ଦାବନ । ଏହି ବାରଜଣଙ୍କ ମଧ୍ୟରୁ ରାମଚନ୍ଦ୍ର ଦାସ ଅଚ୍ୟୁତାନନ୍ଦଙ୍କ ଠାରୁ ପ୍ରଥମେ ଶିଷ୍ୟତ୍ୱ ଗ୍ରହଣ କରି ପ୍ରଧାନ ଶିଷ୍ୟର ଆସନ ଅଳଙ୍କୃତ କରିଥିଲେ । ଏ ସଂପର୍କରେ କୁହାଯାଇଛି-

*''ବ୍ରଜକୁଳେ ଅଧିକାରୀ ରାମଚନ୍ଦ୍ର ଦାସ*
*ସକଳ ଶିଷ୍ୟରେ ସେହୁ ଆଗ ଉପଦେଶ ।''*

*ଗୁରୁଭକ୍ତି ଗୀତା-୨/୧୫ ପଟଳ*

ଶିଷ୍ୟମାନେ ଚାରିଆଡ଼େ ବୁଲି ଅଚ୍ୟୁତାନନ୍ଦଙ୍କ ଧର୍ମ ମତବାଦ ପ୍ରଚାର କରିଥିଲେ । ସେଥିପାଇଁ ଅଚ୍ୟୁତାନନ୍ଦ ତାଙ୍କ ଶିଷ୍ୟମାନଙ୍କୁ ନେଇ ପଞ୍ଚଶାଖା ଗଠନ କରିଥିଲେ ।

ସେମାନଙ୍କ ପାଇଁ ଆଶ୍ରମ ମଧ୍ୟ ପ୍ରତିଷ୍ଠା ହୋଇଥିଲା । ସେସବୁ ଆଶ୍ରମର ରକ୍ଷକ ତଥା ପରିଚାଳକ ଥିଲେ ଜଣେ ଜଣେ ଶିଷ୍ୟ ଓ ସେମାନେ ସଂପୃକ୍ତ ଆଶ୍ରମକୁ କେନ୍ଦ୍ରକରି ତାର ନିକଟବର୍ତ୍ତୀ ଅଞ୍ଚଳରେ ଧର୍ମ ପ୍ରଚାର କରୁଥିଲେ । ସେହିପରି ପଞ୍ଚଶାଖାର ପରିଚୟ ଏଠାରେ ପ୍ରଦାନ କରାଗଲା ।

**ପ୍ରଥମ ଶାଖା-** ପରିଚାଳକ ଥିଲେ ଶିଷ୍ୟ ରାମଚନ୍ଦ୍ର ଦାସ । ସ୍ଥାନ- ନେମ୍ୟାଳ, ଲବଣା ତଟସ୍ଥିତ ବରଗ୍ରାମ ଓ କାନ୍ୟେଶରି ବନ ।

**ଦ୍ୱିତୀୟ ଶାଖା-** ପରିଚାଳକ ଥିଲେ ଶିଷ୍ୟ ଭ୍ରଥବୀର । ସ୍ଥାନ- ଖଦିରବନ ।

**ତୃତୀୟ ଶାଖା-** ପରିଚାଳକ ଥିଲେ ଶିଷ୍ୟ ବକ୍ରୁଦାସ । ସ୍ଥାନ- ଚନ୍ଦ୍ରଭାଗା, ସଙ୍ଗରସ ଗ୍ରାମ । ଏହି ସଙ୍ଗରସ ଗ୍ରାମରେ ଥିବା ପୁଷ୍କରିଣୀ ପୂର୍ବଦିଗରେ ଏକ ପବିତ୍ର ତୀର୍ଥ ରହିଛି । ସେଠାରେ ପୁଣି ଅଛି ଲୋକନାଥଙ୍କ ବିଜେ ସ୍ଥଳୀ ନନ୍ଦନବନ ।

**ଚତୁର୍ଥ ଶାଖା-** ପରିଚାଳକ ଥିଲେ ଶିଷ୍ୟ ଧର୍ମୁଦାସ । ସ୍ଥାନ- କୁଶଭଦ୍ରା ନଦୀକୂଳ, ଏକାମ୍ର କାନନ, ବିନ୍ଦୁସାଗର ଓ ସାଇଲୋ ।

**ପଞ୍ଚମ ଶାଖା-** ପରିଚାଳକ ଥିଲେ ଶିଷ୍ୟ ବିଷ୍ଣୁଦାସ । ସ୍ଥାନ- ସୁନପୁର, ବନାଖଣ୍ଡି ଓ ହେମବନ । ଏସବୁ ଅଞ୍ଚଳକୁ ସୋନପୁର ଓ ଫୁଲବାଣୀ ଜିଲ୍ଲା ଅନ୍ତର୍ଗତ ବୋଲି ଚିହ୍ନିତ କରାଯାଇଛି ।

ଏହି ପଞ୍ଚଶାଖା ସଂପର୍କରେ ଅଚ୍ୟୁତାନନ୍ଦ କହିଛନ୍ତି-

*"ଏହୁ ପଞ୍ଚଶାଖା ମୋର ଅଟେ ନିଜ ଅଂଶ*
*ତାରିବ ଗୋପାଳ କୁଳ ଓଡ଼ିଶା ଯେ ଦେଶ ।"*

*ଗୁରୁଭକ୍ତି ଗୀତା- ୨/୧୬ ପଟଳ*

ନିଜର ପ୍ରିୟ ଶିଷ୍ୟମାନଙ୍କୁ ନେଇ ଅଚ୍ୟୁତାନନ୍ଦ ଏକ ବଳିଷ୍ଠ ଧର୍ମ-ସଂସ୍ଥା ଗଠନ କରିଥିଲେ ଓ ସମଗ୍ର ଓଡ଼ିଶାରେ ତାଙ୍କର ଧର୍ମଗତ ପ୍ରଭାବ ଦ୍ୱାରା ସମାଜର ଅଶେଷ ହିତ ସାଧିତ ହୋଇଥିଲା । ଧର୍ମପ୍ରଚାର ଦୃଷ୍ଟିରୁ ସେ ସମଗ୍ର ଓଡ଼ିଶାକୁ ଷୋଳଗୋଟି ମଣ୍ଡଳରେ ବିଭକ୍ତ କରିଥିବା କଥା ପଣ୍ଡିତ କୁରାମଣି ପାଠୀଶର୍ମା ପ୍ରକାଶ କରିଛନ୍ତି । (କୋଣାର୍କ-ପଞ୍ଚସଖା ବିଶେଷାଙ୍କ) । ତଦନୁଯାୟୀ- (୧) ଋଷିମାଳ ମଣ୍ଡଳ- ଗଞ୍ଜାମ, (୨) ଶଙ୍ଖନାଭି ମଣ୍ଡଳ- ପୁରୀ, (୩) ଅର୍କ ମଣ୍ଡଳ-କୋଣାର୍କ, (୪) ବିନ୍ଦୁସାଗର ମଣ୍ଡଳ- ଭୁବନେଶ୍ୱର, (୫) କଟକ ମଣ୍ଡଳ- କଟକ ନଗର, (୬) ଭଗବତୀ ମଣ୍ଡଳ- ସାଲେପୁର, (୭) ହରିହରପୁର

ମଣ୍ଡଳ- ଜଗତସିଂହପୁର, (୮) ତୁଳସୀ ମଣ୍ଡଳ- କେନ୍ଦ୍ରାପଡ଼ା, (୯) ବରାହନାଥ ମଣ୍ଡଳ- ଆଳି, କନିକା, (୧୦) ଭଦ୍ରକ ମଣ୍ଡଳ- ଭଦ୍ରଖ, (୧୧) ବିରଜା ମଣ୍ଡଳ- ଯାଜପୁର. (୧୨) ସାରଳା ମଣ୍ଡଳ- ଝଙ୍କଡ଼, କନକପୁର, (୧୩) ପାରେଶ୍ୱର ମଣ୍ଡଳ- ପାରାଦ୍ୱୀପ, (୧୪) କାନେଶ୍ୱରୀ ବନ- ନେମ୍ବାଳ, (୧୫) ଅସୁରେଶ୍ୱର ମଣ୍ଡଳ- ଅସୁରେଶ୍ୱର, (୧୬) ସମ୍ବଲେଶ୍ୱରୀ ମଣ୍ଡଳ- ସମ୍ବଲପୁର (ସୋନପୁର, ଫୁଲବାଣୀ) ।

ଅଚ୍ୟୁତାନନ୍ଦ ତାଙ୍କର ଶିଷ୍ୟମାନଙ୍କ ମଧ୍ୟରୁ ରାମଦାସ, ଧର୍ମଦାସ, ଭ୍ରଥଦାସ, ବକ୍ରଦାସ ଓ ବିଷ୍ଣୁଦାସ ପ୍ରମୁଖ ପାଞ୍ଚଜଣଙ୍କ ଉପରେ ଧର୍ମ ସଂସ୍ଥାପନାର ଦାୟିତ୍ୱ ପ୍ରଦାନ କରିଥିଲେ । ଏମାନେ ଥିଲେ ଅଚ୍ୟୁତଙ୍କ ଶିଷ୍ୟ ପରଂପରାର ପଞ୍ଚସଖା । ପୁଣି ମୁକୁନ୍ଦ, ବସ, ଅନନ୍ତ, ପବନ, ସୁଦାମ, ଯାଦବ, ବାଳକ, ମଧୁ, ମଥୁରୀ, ଉତ୍‌ଥାନ, ଗୋବିନ୍ଦ ଓ ବୃନ୍ଦାବନ ପ୍ରଭୃତି ବାରଜଣ ଶିଷ୍ୟଙ୍କୁ ନେଇ ସେ ସଭାମଣ୍ଡଳ ଗଠନ କରିଥିଲେ । ସମସ୍ତ ପ୍ରକାର ମଣ୍ଡଳ ଓ ଆଶ୍ରମର କେନ୍ଦ୍ରସ୍ଥଳ ଥିଲା ନେମାଳ ଏବଂ ଏଠାରୁ ଗୁରୁଦେବଙ୍କ ନିର୍ଦ୍ଦେଶ ଅନୁଯାୟୀ କାର୍ଯ୍ୟ ହେଉଥିଲା ।

ଅଚ୍ୟୁତାନନ୍ଦଙ୍କର ଷୋଳସହସ୍ର ଶିଷ୍ୟ ଥିବା କଥା ତାଙ୍କର ନିମ୍ନୋକ୍ତ ଉକ୍ତିରୁ ଜଣାପଡ଼େ ।

*"ଜନ୍ମିବ ସେ ବାରସହସ୍ରେ ବାରଟିଆ ସାର*
*ଚାରି ସହସ୍ର ଯୋଗାରୂଢ଼ ପଞ୍ଚସଖାଙ୍କର ।*
*ଏଣୁକରି ଅଚ୍ୟୁତର ଷୋଳସହସ୍ର ଶାଖା*
*ଯୁଗେ ଯୁଗେ ଅବତାର ଜଗତରେ ଲେଖା ।"*

*-ଗୁରୁଭକ୍ତି ଗୀତା- ୨/୧୭ ପଟଳ*

ଅଚ୍ୟୁତାନନ୍ଦଙ୍କ ରଚନାରୁ ତାଙ୍କ ଶିଷ୍ୟମାନଙ୍କ ସଂପର୍କରେ ଆହୁରି ଅନେକ ତଥ୍ୟ ଜଣାପଡ଼େ । ରାମଙ୍କର ବାରଜଣଙ୍କ ଶିଷ୍ୟଙ୍କ ମଧ୍ୟରୁ ଚାରିଜଣ ଥିଲେ ଭ୍ରଥଙ୍କର କୁମର । ଅଚ୍ୟୁତାନନ୍ଦଙ୍କ ବାରଜଣ ପ୍ରଧାନ ଶିଷ୍ୟଙ୍କର ନୀଳାଚଳ ଧାମରେ ଶ୍ରୀଚୈତନ୍ୟଙ୍କ ସହିତ ସାକ୍ଷାତ ହୋଇଥିବା କଥା କବି ବର୍ଣ୍ଣନା କରିଛନ୍ତି ।

*"ତୁମ୍ଭେ ବାର ଗୋପ ମୋର ରାହାସ ପ୍ରଧାନ*
*ଠାକୁର ଆଜ୍ଞାରେ ତୁମ୍ଭେ ଜାତ ବାରଜଣ ।*
*ସାକ୍ଷାତରେ ଶ୍ରୀଚୈତନ୍ୟ କଲ ଦରଶନ*
*ଚୈତନ୍ୟ ମଣ୍ଡଳୀ ନୀଳାଚଳ ଯେ ଭୁବନ ।"*

*-ଶ୍ରୀ ଗୁରୁଭକ୍ତି ଗୀତା- ୨/୧୦ ପଟଳ*

ରାମ, ଭ୍ରଥ, ମୁକୁନ୍ଦ ଓ ଅନନ୍ତ ପ୍ରମୁଖ ଚାରିଜଣ ଶିଷ୍ୟ ବୃନ୍ଦାବନରେ ସଖୀଅଙ୍ଗ ଧରି ଉପସ୍ଥିତ ଥିଲେ । ଶିଷ୍ୟମାନଙ୍କ ପରିବାର ସଂପର୍କରେ ଚମତ୍କାର କଥାବସ୍ତୁର ଅବତାରଣା କରିଛନ୍ତି ଅଚ୍ୟୁତାନନ୍ଦ । ବୃନ୍ଦାବନ, ରାହାସ, ମୁକୁନ୍ଦ, ଅନନ୍ତ, ମଥୁରୀ, ସୁଦାମ, ଗୋବିନ୍ଦ ଓ ବଳ ପ୍ରମୁଖ ଆଠଜଣ ଶିଷ୍ୟଙ୍କ ପିତା ମହାରାଜା ପ୍ରତାପରୁଦ୍ରଙ୍କ ସେବାରେ ନିଜକୁ ନିୟୋଜିତ କରିଥିଲେ । ସେମାନେ ଶ୍ରୀଚୈତନ୍ୟଙ୍କ ମାଧ୍ୟମରେ ରାଜା ପ୍ରତାପରୁଦ୍ରଙ୍କୁ କହିଲେ ଓ ରାଜା ସେମାନଙ୍କ ପିଲାମାନଙ୍କୁ ଖୋଳ କରତାଳ ପ୍ରଦାନ କଲେ । ତପ୍ପରେ ସେମାନେ ରାସବିଧି ଅନୁଯାୟୀ ଶୂନ୍ୟରାସ, ନିତ୍ୟରାସ ଓ ବୃନ୍ଦାରାସ କରି ଗୋପାଳକୁଳକୁ ଉଦ୍ଧାର କରିଥିଲେ ।

ଓଡ଼ିଶାରେ ରାସଲୀଳାର ସ୍ରଷ୍ଟାଥିଲେ ଅଚ୍ୟୁତାନନ୍ଦ । କିନ୍ତୁ ସେ ଜଗନ୍ନାଥ ଦାସଙ୍କୁ ରାସଲୀଳାର ଗୁରୁ ରୂପେ ସ୍ୱୀକାର କରିଛନ୍ତି । ଝଙ୍କଡ଼ ଠାରେ ସାରଳା ଠାକୁରାଣୀଙ୍କ ପୀଠରେ ରାସ କୀର୍ତ୍ତନ ହେବା ସମୟରେ ସେ ଜଗନ୍ନାଥ ଦାସଙ୍କୁ ଗୁରୁ ଭାବରେ ବରଣ କରିଛନ୍ତି ।

*"ଗୋପାଳ ବାଉଟି ଶିଷ୍ୟ ଜଗନ୍ନାଥ ଦାସ*
*ଭାଗବତ କହି ଜ୍ୟୋତି ଚହୁଁ ପରକାଶ ।*
*ଅଟାଅ ସୁଜ୍ଞାନୀ ଗୁରୁ ଭକତଙ୍କ ଶୀର୍ଷ*
*ଜଗନ୍ନାଥ ଦାସ ଶିଷ୍ୟ ମୁଁ ଅଚ୍ୟୁତ ଦାସ ।"*

*-ବରଣ ଚଉିତ ଗୀତା*

ନିଜର ଶିଷ୍ୟମାନଙ୍କୁ ନେଇ ରାସଲୀଳା ମଣ୍ଡଳ ଗଠନ କରିଥିଲେ ଅଚ୍ୟୁତାନନ୍ଦ । ସେତେବେଳେ ବିଭିନ୍ନ ମଠ ଓ ଗ୍ରାମମାନଙ୍କରେ ରାସଲୀଳା ହେଉଥିଲା । ଶ୍ରୀଗୁରୁଭକ୍ତି ଗୀତାରେ ଅଚ୍ୟୁତାନନ୍ଦ ରାସଲୀଳା ସଂପର୍କରେ ବିଶଦ ବିବରଣୀ ପ୍ରଦାନ କରିଛନ୍ତି । ରାସଲୀଳାର ବେଶ, ବାଦ୍ୟ, ଶିଷ୍ୟମାନଙ୍କ ଭୂମିକା, ରାସବିଧି ଆଦି ପ୍ରସଙ୍ଗ ଏହାର ଅନ୍ତର୍ଭୁକ୍ତ । ତାଙ୍କର ବାରଜଣ ପ୍ରଧାନ ଶିଷ୍ୟ ରାସଲୀଳାରେ ପ୍ରମୁଖ ଭୂମିକା ଗ୍ରହଣ କରୁଥିଲେ । ଖୋଳ, କରତାଳ, ଶିଂଘା, ବେଣୁ, ବଂଶୀ, ରୁଞ୍ଜଗୁଞ୍ଜ, ଗରଗଡ଼, ଚୂଳ, ତ୍ରାସ, ଶଙ୍ଖ, ବୀଣା, ଖଞ୍ଜଣି, ପଖାଉଜ, ମୟୂର ପୁଚ୍ଛ ଆଦି ଧାରଣରୁ ସେମାନଙ୍କର କମନୀୟ ବେଶ ପରିପାଟୀ ଓ ବାଦ୍ୟର ସୂଚନା ମିଳେ । ରାସ ସମୟରେ ଶିଷ୍ୟମାନଙ୍କର ଭୂମିକାର ଯେଉଁ ବର୍ଣ୍ଣନା କରାଯାଇଛି ସେଥିରୁ ରାସଲୀଳାର ପୂର୍ଣ୍ଣାଙ୍ଗ ଚିତ୍ର ମିଳିଥାଏ । ଏଥିରେ ମଧୁଦାସ-ଶଙ୍ଖ, ବାଳକ-ରନ୍ଧନ, ମୁକୁନ୍ଦ-ରାଧାସେବା, ଅନନ୍ତ-ସଖୀଅଙ୍ଗ ଓ ଦୂତୀ ସେବା, ପବନ-କୃଷ୍ଣସେବା, ଉଦ୍ଧାନ-ମୃଦଙ୍ଗ, ଗୋବିନ୍ଦ-ମୃଦଙ୍ଗ, ଆନନ୍ଦ-କଂସାଳ,

ବହ୍ନିଦାସ-କଂସାଳ, ମଥୁରୀ-କଂସାଳ, ବୃନ୍ଦାବନ ଦାସ-ପଙ୍ଖା ବିଞ୍ଚଣି ଇତ୍ୟାଦି ଦ୍ୱାରା ରାସ ସମୟରେ ନିଜର କର୍ତ୍ତବ୍ୟ ସଂପାଦନ କରୁଥିଲେ ।

ଶିଷ୍ୟମାନେ ଗୁରୁଙ୍କୁ ଦର୍ଶନ କରିବାର ନିର୍ଦ୍ଦିଷ୍ଟ ବିଧି ରହିଥିବା କଥା ଅଚ୍ୟୁତାନନ୍ଦ ପ୍ରକାଶ କରିଛନ୍ତି । ପ୍ରତ୍ୟେକ ମାସର ଦୁଇଟି ଏକାଦଶୀ, ସଂକ୍ରାନ୍ତି, ଅମାବାସ୍ୟା ଓ ପୂର୍ଣ୍ଣମୀ ତିଥି ଏପରି ପାଞ୍ଚଦିନ ସର୍ବମୋଟ ବର୍ଷକେ ଷାଠିଏ ଦିନ ଗୁରୁଙ୍କୁ ଦର୍ଶନ କରିବାର ବିଧି ରହିଛି । ସେଥିରେ ପୁଣି ଫଳେପୁଷ୍ପେ ଯାହା ମିଳିବ ଦକ୍ଷିଣା ସ୍ୱରୂପ ଗୁରୁଙ୍କ ପାଦତଳେ ସମର୍ପଣ କରିବ ।

ଅଚ୍ୟୁତାନନ୍ଦ ନିଜର ଭକ୍ତମାନଙ୍କର ପରିଚୟ 'ଶୂନ୍ୟ ସଂହିତା' ଗ୍ରନ୍ଥରେ ପ୍ରଦାନ କରିଛନ୍ତି । ତାହା ଅସ୍ପଷ୍ଟ ହେଲେ ହେଁ ସେଥିରୁ କେତେକ ତଥ୍ୟର ସୂଚନା ମିଳେ । ତାଙ୍କର ଶିଷ୍ୟ ଓ ଭକ୍ତମାନଙ୍କ ପରିଚୟରେ ପାର୍ଥକ୍ୟ ପରିଲକ୍ଷିତ ହୁଏ । ଉପରେ ଆଲୋଚିତ ପ୍ରିୟ ଶିଷ୍ୟମାନଙ୍କ ନାମ ସହିତ ଭକ୍ତମାନଙ୍କ ନାମର କୌଣସି ମେଳ ନାହିଁ । ପୁଣି ଯେଉଁଠାରେ ତାଙ୍କର ଭକ୍ତମାନେ ବାସ କରୁଛନ୍ତି ସେମାନଙ୍କ ମଧ୍ୟରେ ଅଳ୍ପ କେତେଜଣ 'ହେତୁ ଦିଆ' ଭକ୍ତ ଅଛନ୍ତି ବୋଲି ସେ ପ୍ରକାଶ କରିଛନ୍ତି । ସମ୍ଭବତଃ ଏହି 'ହେତୁଦିଆ' ଭକ୍ତମାନଙ୍କୁ ଦୀକ୍ଷା ନେଇଥିବା ଜ୍ଞାନୀଗୁଣୀ ଭକ୍ତଭାବରେ ଗ୍ରହଣ କରାଯାଇପାରେ । ତାଙ୍କର ତିନିସହସ୍ର ଭକ୍ତମାନଙ୍କ ମଧ୍ୟରେ ନାରୀଙ୍କ ସଂଖ୍ୟା ଥିଲା 'ତିନିଶତ' । ଏକଥା ସେ ଉଲ୍ଲେଖ କରିଛନ୍ତି-

*"ବୋଇଲ ତିନି ସସ୍ର ହେତୁ ଦିଅ । ନାରୀ ତିନିଶତ ତା ମଧ୍ୟେ ଯାଅ ।"*

*-ଶୂନ୍ୟ ସଂହିତା- ୩୫ ଅଧ୍ୟାୟ*

ଏହା ବ୍ୟତୀତ ଦ୍ୱିଜ, ଗଣକ, ମଧୁର ଆଦି ଜାତିର ଅନ୍ତର୍ଭୁକ୍ତ ଥିଲେ ତାଙ୍କର କେତେକ ଭକ୍ତ । ପୁଣି ଭକ୍ତମାନେ ଗୋପ ଅଂଶୀ ଅଂଶ, ମୁନି ଅଂଶ ଓ ଯଦୁଅଂଶରେ ଜାତ ହୋଇଥିଲେ । ସେମାନଙ୍କ ମଧ୍ୟରେ ଦୁଇଶତ ଗନ୍ଧର୍ବ ଥିଲେ ବୋଲି କୁହାଯାଇଛି । ଅନେକ ଭକ୍ତ ଗୃହୀ ତଥା ସଂସାରୀ ଥାଇ ଧର୍ମାଚାର ସାଧନାରେ ମନୋନିବେଶ କରିଥିଲେ । ଭକ୍ତ ପରିଚୟ ପ୍ରଦାନ କରିବାକୁ ଯାଇ 'ଶୂନ୍ୟ ସଂହିତା' ରେ କେତେକ ସ୍ଥାନର ନାମୋଲ୍ଲେଖ ହୋଇଛି ଯେଉଁଠାରେ କି ତାଙ୍କର ଭକ୍ତମାନେ ଅବସ୍ଥାନ କରୁଥିଲେ । ସେସବୁ ସ୍ଥାନ ମଧ୍ୟରେ ରହିଛି- ପ୍ରାଚୀକୂଳ, କୁଣ୍ଡିନଗ୍ର, ବଟେଶ୍ୱର ନିକଟ ରୁକୁଣା ଚଉରା, କାଶୀପୁର, ନେମାଳ, ଯାଜପୁର, ବ୍ରାହ୍ମଣୀ କୂଳ ଓ ବୈତରଣୀ କୂଳ ।

ମହାପୁରୁଷ ଅଚ୍ୟୁତାନନ୍ଦଙ୍କ ଷୋଳ ସହସ୍ର ଶିଷ୍ୟଙ୍କ ବ୍ୟତୀତ ତାଙ୍କର ମୁଖ୍ୟ ଗାଦି ନେମାଳର ମହନ୍ତ ପରମ୍ପରା ସମାଲୋଚକ ଡ଼କ୍ଟର ବଂଶୀଧର ମହାନ୍ତି ଉଦ୍ଧାର କରିଛନ୍ତି । ତାହା ହେଲା-



କିନ୍ତୁ ଆଲୋଚକ ଅଧ୍ୟାପକ ଆଶୁତୋଷ ନାୟକଙ୍କ ''ମହାପୁରୁଷ ଅଚ୍ୟୁତାନନ୍ଦ ସାହିତ୍ୟ ସମୀକ୍ଷା''ଗ୍ରନ୍ଥରେ ପ୍ରଦତ୍ତ ତାଲିକାରେ ସାମାନ୍ୟ ପରିବର୍ତ୍ତନ ଦେଖାଯାଏ । ସେ ଦୈତାରୀଙ୍କ ସ୍ଥାନରେ କୃଷ୍ଣାନନ୍ଦ ଗୋସ୍ୱାମୀ ତତ୍ପରେ ଗୋବିନ୍ଦ ବଲ୍ଲଭ ଗୋସ୍ୱାମୀ ଓ ଶେଷରେ ବିବେକାନନ୍ଦ ଗୋସ୍ୱାମୀଙ୍କୁ ନେମାଳ ଗାଦିର ମହନ୍ତ ରୂପେ ଉଲ୍ଲେଖ କରିଛନ୍ତି । ବର୍ତ୍ତମାନ ଏହି ଗାଦିର ମହନ୍ତ ଅଛନ୍ତି ଗଗନାନନ୍ଦ ଗୋସ୍ୱାମୀ ।

ଅଚ୍ୟୁତାନନ୍ଦଙ୍କ ଶିଷ୍ୟମାନେ ଓଡ଼ିଶାରେ ଅଗଣିତ ଗାଦି ପ୍ରତିଷ୍ଠା କରିଥିଲେ । ପ୍ରତ୍ୟେକ ମଣ୍ଡଳ ମଧ୍ୟରେ କେତେକ ଗାଦି ପ୍ରତିଷ୍ଠା ଲାଭ କରିଥିଲା ମଣ୍ଡଳ ଦାୟିତ୍ୱରେ ଥିବା ଶିଷ୍ୟମାନଙ୍କ ଦ୍ୱାରା । ପୁଣି ତାଙ୍କର ପଞ୍ଚଶାଖା ଓ ସପ୍ତଶାଖାର ଶିଷ୍ୟମାନେ ସେମାନଙ୍କ ପରିସୀମା ମଧ୍ୟରେ ଅନେକ ଗାଦି ପ୍ରତିଷ୍ଠା କରି ସେଥିରେ ଅଚ୍ୟୁତାନନ୍ଦଙ୍କ ଧର୍ମଦର୍ଶନ ପ୍ରଚାର କରୁଥିଲେ । ଏ ଗାଦି ବ୍ୟତୀତ ଅନେକ ସ୍ଥାନରେ ଗୋଷ୍ଠୀଘର ମଧ୍ୟ ପ୍ରତିଷ୍ଠା କରାଯାଇଥିଲା ଓ ତାହା ଥିଲା ଧର୍ମ ଚର୍ଚ୍ଚାର କେନ୍ଦ୍ରସ୍ଥଳ । ତେବେ ନେମାଳ ଗାଦି ଥିଲା ସବୁ ଗାଦି ଓ ପୀଠ ମଧ୍ୟରେ ପ୍ରଧାନ । ନେମାଳ ଗାଦି ସହିତ ସମସ୍ତ ଶିଷ୍ୟ ଗାଦିର ନିବିଡ଼ ସଂପର୍କ ଥିଲା ଓ ଏହା ଥିଲା ସେମାନଙ୍କର ଗୁରୁଗାଦି । ଆଜିକୁ ପାଞ୍ଚଶହ ବର୍ଷଧରି ହଜାର ହଜାର ଗାଦି ସୃଷ୍ଟି ହୋଇ ତନ୍ମଧ୍ୟରୁ ଅଧିକାଂଶ କାଳର କରାଳ ସ୍ରୋତରେ ବିଲୀନ ହୋଇଯାଇଛି । ତଥାପି ଏବେ ମଧ୍ୟ ଓଡ଼ିଶାର ବିଭିନ୍ନ ସ୍ଥାନରେ ନୂଆକରି ପ୍ରତିଷ୍ଠା ଲାଭ କରୁଥିବା ଅଚ୍ୟୁତାନନ୍ଦଙ୍କ ଗାଦି ତଥା ଆଶ୍ରମକୁ ଦେଖିଲେ ମନେହୁଏ ଅଚ୍ୟୁତାନନ୍ଦଙ୍କ ଧର୍ମଧାରଣା ଓଡ଼ିଶାର ଜନଜୀବନକୁ ଆଜି ମଧ୍ୟ ଆଚ୍ଛନ୍ନ କରି ରଖିଛି ।



# ଅଲୌକିକତା

ଆଦିମ ଯୁଗରୁ ବହୁ ଦେବଦେବୀଙ୍କ ସଂପର୍କରେ ନାନା ପ୍ରକାର ଅଲୌକିକ ପ୍ରସଂଗର ଅବତାରଣା ସମଗ୍ର ପୃଥିବୀର ପୁରାଣ ଶାସ୍ତ୍ରକୁ ଆଚ୍ଛନ୍ନ କରିଛି । ଦେବଦେବୀଙ୍କ ସଂପର୍କରେ ସଂଯୋଜିତ ଘଟଣାକୁ ଭକ୍ତମାନେ ଗୁରୁ ଓ ମହାପୁରୁଷଙ୍କ ନାମରେ ଯୋଗ କରୁଥିବାର ପରମ୍ପରା ଚଳିଆସୁଛି । ସାଧାରଣତଃ ଏପରି ଅଲୌକିକ ଘଟଣା ଉତ୍ପତ୍ତିର କେତେକ କାରଣ ନିରୂପଣ କରାଯାଇପାରେ । ପ୍ରଥମତଃ ତନ୍ତ୍ର ସାଧନା ଦ୍ୱାରା ସାଧକମାନେ କେତେକ ଅଲୌକିକ ଘଟଣା ପ୍ରଦର୍ଶନ କରି ପାରୁଥିଲେ । ଦ୍ୱିତୀୟତଃ ଭକ୍ତ ଓ ଶିଷ୍ୟମାନେ ନିଜ ଗୁରୁଙ୍କ ମହିମା ପ୍ରଚାର କରିବା ପାଇଁ ଅନେକ ଅଲୌକିକ କଥା କଳ୍ପନା କରୁଥିଲେ ଓ ସାଧାରଣ ଲୋକଙ୍କୁ ଆକୃଷ୍ଟ କରିବା ଥିଲା ଏହାର ଲକ୍ଷ୍ୟ । ତୃତୀୟତଃ ହାତ ସଫାଇ ବିଦ୍ୟା ସାହାଯ୍ୟରେ ସରଳ ବିଶ୍ୱାସୀ ଲୋକଙ୍କୁ ସାଧୁମାନେ ଭୁଲାଇ ପାରୁଥିଲେ । ଚତୁର୍ଥତଃ ସାମାନ୍ୟ ଅଲୌକିକ ଘଟଣା କାଳକ୍ରମେ ଲୋକମୁଖରେ ଅତିରଞ୍ଜିତ ହୋଇ ବଳିଷ୍ଠ ରୂପ ଧାରଣ କରୁଥିଲା ।

ସେ ଯାହା ହେଉନା କାହିଁକି, ମହାପୁରୁଷମାନଙ୍କ ନାମରେ ଏପରି ଅଲୌକିକ ଘଟଣା ଅବତାରଣାର ଅଭାବ ନାହିଁ । ଇହୁଦୀମାନଙ୍କ ମହାପୁରୁଷ ମୂଷା (Moses) ଜଳନ୍ତା ନିଆଁ ଭିତରେ ପ୍ରଭୁଙ୍କୁ ଦେଖି ତାଙ୍କଠାରୁ ଦଶଟି ଉପଦେଶ ଶୁଣିଥିଲେ । ଯୀଶୁଖ୍ରୀଷ୍ଟ ପାଞ୍ଚଖଣ୍ଡ ରୁଟିରେ ପାଞ୍ଚହଜାର ଲୋକଙ୍କୁ ପେଟପୂରା ଭୋଜନ ଦେଇ ପାରିଥିଲେ । ବାବାଲାଲ ନିଜର ଦୁଇ ଜଂଘ ଉପରେ ହାଣ୍ଡିରଖି ଓ ତାହା ମଝିରେ ଜାଳି ପାକକ୍ରିୟା ସଂପାଦନ କରୁଥିଲେ । ନାମଦେବ ବାଲିକୁ ପରଶ ପଥର କରିପାରୁଥିଲେ, ପୁଣି ପରଶ ପଥରକୁ ଶୂନ୍ୟକୁ ଫିଙ୍ଗିଲେ ସେ ଆଉ ତଳକୁ ଫେରୁନଥିଲା । ମୃତ ବ୍ୟକ୍ତିଙ୍କୁ ଜୀବଦାନ ଦେବା, ଖଣ୍ଡିଆ କାନ୍ଥରେ ବସି ଉଡ଼ିବା ଓ ଗୋଟିଏ ମଇଁଷି ମୁହଁରେ ବେଦପାଠ କରାଇବା ପ୍ରଭୃତି ଅଲୌକିକ ମହିମାର ଅଧିକାରୀ ହେଉଛନ୍ତି ସନ୍ଥ ଜ୍ଞାନେଶ୍ୱର । ତୁଳସୀ ଦାସ ସ୍ୱଚକ୍ଷୁରେ ପ୍ରଭୁ ରାମଚନ୍ଦ୍ରଙ୍କୁ ଦର୍ଶନ କରିଥିଲେ । ତୁକାରାମ ବିମାନରେ ବସି ସ୍ୱଦେହରେ ବୈକୁଣ୍ଠ ଗମନ କଲେ ଓ ଗୋଟିଏ ପାଲିଙ୍କିକୁ ଶୂନ୍ୟରେ ଅନ୍ତର୍ଦ୍ଧାନ କରାଇଥିଲେ । ଜୟଦେବଙ୍କ ବିରଚିତ ଗୀତ-ଗୋବିନ୍ଦର ଅସଂପୂର୍ଣ୍ଣ ପଦ ପୂର୍ଣ୍ଣ କରିଥିଲେ ସ୍ୱୟଂ ପ୍ରଭୁ ଶ୍ରୀକୃଷ୍ଣ । ବଳରାମ ଦାସ ପୂର୍ବଜନ୍ମରେ ମଶାଲ ଜାଳି ରାମୟଣର ସମସ୍ତ କଥାବସ୍ତୁ ଦେଖିଥିଲେ ବୋଲି ସ୍ୱରଚିତ 'ଜଗମୋହନ ରାମାୟଣ'ରେ ଉଲ୍ଲେଖ କରିଛନ୍ତି । ସେ ପୁଣି ମୂର୍ଖ ଓ ଜଡ଼ ମୁହଁରେ ବେଦାନ୍ତ ବଖାଣିଥିଲେ । ଯଶୋବନ୍ତ ଦାସ ଅଦିନରେ କଦମ୍ବ ଗଛରେ ଫୁଲ ଫୁଟାଇଥିଲେ । ତାଙ୍କ ଆଜ୍ଞାରେ ମାଟି ସୁନାରେ ଓ ଗୋଡ଼ି କ୍ଷୀରରେ

ପରିଣତ ହୋଇଥିଲା । ଅତିବଡ଼ୀ ଜଗନ୍ନାଥ ଦାସ ଅଷ୍ଟଭୁଜ ମୂର୍ତ୍ତି ପ୍ରଦର୍ଶନ କରିଥିଲେ ଓ ତାଙ୍କ ଆଜ୍ଞାରେ ସମୁଦ୍ର ସାତ ଲହଡ଼ି ପର୍ଯ୍ୟନ୍ତ ପଛକୁ ଘୁଞ୍ଚିଯାଇଥିଲା । ଶ୍ରୀଚୈତନ୍ୟ ନିଜ ଈଶ୍ୱରତ୍ୱର ପ୍ରମାଣ ପାଇଁ ସାର୍ବଭୌମଙ୍କୁ ପ୍ରଥମେ ଚତୁର୍ଭୁଜ ରୂପ ଓ ପରେ ଶ୍ୟାମ ବଂଶୀମୁଖ ଦେଖାଇଥିବା ପ୍ରସଙ୍ଗ 'ଶ୍ରୀଚୈତନ୍ୟ ଚରିତାମୃତ' ଗ୍ରନ୍ଥରେ ବର୍ଣ୍ଣିତ ହୋଇଛି ।

ଦେଖିବାକୁ ଗଲେ ଏହିପରି ଅଗଣିତ ଅଲୌକିକ ଘଟଣା ସମଗ୍ର ପୃଥିବୀର ଜନଜୀବନକୁ ଆଚ୍ଛନ୍ନ କରି ରଖିଛି । ତେବେ ଏହା ପଛରେ କେତେ ସତ୍ୟତା ଅଛି ତାହା ପରଖିବା ସ୍ୱତନ୍ତ୍ର ଗବେଷଣା ସାପେକ୍ଷ । କିନ୍ତୁ ଏତିକି କୁହାଯାଇପାରେ ଯେ କେତେକ ସିଦ୍ଧ ସାଧକ ତନ୍ତ୍ରବଳରେ ଅଦ୍ଭୁତ କ୍ରିୟା ସଂପାଦନ କରି ପାରୁଥିଲେ ଓ ଆଉ କେତେକ ଜ୍ଞାନୀ-ଯୋଗ ସାଧକ ଦିବ୍ୟ ଦୃଷ୍ଟି ଦ୍ୱାରା ଭବିଷ୍ୟତ ଦେଖିପାରୁଥିଲେ । କେହି କେହି ନିଜର ପ୍ରତିଭା ଓ ବ୍ୟକ୍ତିତ୍ୱ ବଳରେ ସମାଜରେ ଲୋକପ୍ରିୟ ହେବା ସଙ୍ଗେ ସଙ୍ଗେ ସମସ୍ତଙ୍କର ପୂଜାର ପାତ୍ର ହୋଇ ପାରିଥିଲେ । ବାସ୍ତବରେ ସେମାନେ ଥିଲେ ମହାଜ୍ଞାନୀ, ସିଦ୍ଧ ପୁରୁଷ, ଦିବ୍ୟଦ୍ରଷ୍ଟା ଓ ଅଦ୍ଭୁତ କର୍ମା ।

ମହାପୁରୁଷ ଅଚ୍ୟୁତାନନ୍ଦଙ୍କ ନାମରେ କେତେକ ଅଲୌକିକ ଘଟଣାର ଅବତାରଣା କରାଯାଇଛି । ତାଙ୍କ ରଚିତ ଗ୍ରନ୍ଥରାଜି, ଅନ୍ୟାନ୍ୟ ଭକ୍ତଙ୍କ କୃତି ଓ ଜନଶ୍ରୁତିରୁ ଏପରି କେତେକ ପ୍ରସଙ୍ଗ ଏଠାରେ ଉଦ୍ଧାର କରାଗଲା ।

**(୧) ଜନ୍ମ ପ୍ରସଙ୍ଗ-** ଅଚ୍ୟୁତାନନ୍ଦଙ୍କ ପିତା ଦୀନବନ୍ଧୁ ଖୁଣ୍ଟିଆ ଥିଲେ ପ୍ରଭୁ ଜଗନ୍ନାଥଙ୍କର ପରମ ଭକ୍ତ । ଶ୍ରୀକ୍ଷେତ୍ରରେ ଦିନେ ରାତିରେ ତାଙ୍କୁ ଜଗନ୍ନାଥଙ୍କର ସ୍ୱପ୍ନାଦେଶ ହେଲା ଯେ, ସେ ତାଙ୍କର ପୁତ୍ର ହୋଇ ଜନ୍ମଲାଭ କରିବେ । ତେଣୁ କାଲି ପ୍ରଭାତ ଅବକାଶ ସମୟରେ ଗରୁଡ଼ ପଛରେ ଥାଇ ଦେଖିବ ଯେଉଁ ପିଲାଟି ଖେଳୁଥିବ ସେହି ହେବ ତାଙ୍କର ପୁତ୍ର । ସ୍ୱପ୍ନାଦେଶାନୁଯାୟୀ ଦୀନବନ୍ଧୁ ଓ ପଦ୍ମାବତୀ ଦୁହେଁ ପ୍ରଭାତ ଧୂପ ସମୟରେ ମନ୍ଦିର ଭିତରକୁ ଗଲେ । ଗରୁଡ଼ ପଛରେ ରହି ସେମାନେ ଦେଖିଲେ ପ୍ରଭୁଙ୍କ ଆଗରେ ସତକୁ ସତ ଏକ ଦିବ୍ୟ ସୁନ୍ଦର ଶିଶୁ ଖେଳୁଛି । ଭକ୍ତିଭାବରେ ଶରୀର ତାଙ୍କର ରୋମାଞ୍ଚିତ ହେବା ସଙ୍ଗେ ସଙ୍ଗେ ଚକ୍ଷୁରେ ଭରିଗଲା ଭକ୍ତିପୂତ ଅଶ୍ରୁ । ଏତିକିବେଳେ ସେଇ ଶିଶୁଟି ଏକ ସ୍ଫୁଲିଙ୍ଗବତ୍ ଆସି ପଦ୍ମାବତୀଙ୍କ ଶରୀରରେ ପ୍ରବେଶ କରିଗଲା । ସ୍ୱୟଂ ଜଗନ୍ନାଥ ମହାପ୍ରଭୁଙ୍କ ଆଶୀର୍ବାଦରୁ ସେମାନେ ଯେଉଁ ପୁତ୍ରସନ୍ତାନ ଲାଭ କଲେ ସେ ହେଲେ ମହାପୁରୁଷ ଅଚ୍ୟୁତାନନ୍ଦ ।

**(୨) ଶୂନ୍ୟ ଭଜନ-** ଅଚ୍ୟୁତାନନ୍ଦଙ୍କ ଲୋକପ୍ରିୟତାରେ ଈର୍ଷାପରାୟଣ ହୋଇ ବ୍ରାହ୍ମଣମାନେ ତାଙ୍କ ଉପରେ ଦାଉ ସାଧିଲେ । ତାଙ୍କ ବିରୁଦ୍ଧରେ ରାଜାଙ୍କୁ ନାନାକଥା କହିବାରୁ ଦିନେ ରାଜା ଶ୍ରୀମନ୍ଦିର ମଧ୍ୟରେ ତାଙ୍କର ଇଷ୍ଟମନ୍ତ୍ର ଜ'ଣ ବୋଲି ପଚାରିଲେ ।

ବ୍ରାହ୍ମଣମାନେ ତ ମନ୍ତ୍ର ଯନ୍ତ୍ରରେ ଧୁରନ୍ଧର । ସେମାନେ ଅଚ୍ୟୁତାନନ୍ଦଙ୍କୁ ବେଢ଼ିଯାଇ ଅପମାନିତ କଲେ । ଏକଥା ଚାରିଆଡ଼େ ଚହଳ ପଡ଼ିଗଲା । ଏପରି ସଂକଟରେ ପଡ଼ି ଅଚ୍ୟୁତାନନ୍ଦ ପ୍ରଭୁ ଜଗନ୍ନାଥଙ୍କ ପାଦପଦ୍ମରେ ଶରଣାପନ୍ନ ହେଲେ । ପ୍ରଭୁ ତୁମେ କେବଳ ମୋତେ ଏ ମହାବିପଦରୁ ରକ୍ଷା କରିପାରିବ ବୋଲି ଆର୍ତ୍ତଭାବରେ ନିବେଦନ କଲେ । ଭକ୍ତର ମନକଥା ଜାଣିଲେ ଭଗବାନ । ତାଙ୍କ ହୃଦୟରେ ପ୍ରବେଶ କରି ଶୂନ୍ୟ ଭଜନ କଥା କହିବାକୁ ନିର୍ଦ୍ଦେଶ ଦେଲେ । ତାପରେ ଅଚ୍ୟୁତାନନ୍ଦ ଯନ୍ତ୍ର ଲେଖି ଶୂନ୍ୟଭଜନ କଥା ବୁଝାଇ ଦେଇଥିଲେ । କିନ୍ତୁ ଏଥିରେ ଉପସ୍ଥିତ ବ୍ରାହ୍ମଣମାନେ ସନ୍ତୁଷ୍ଟ ନ ହୋଇ ପୁଣି କହିଲେ-

*''ଏ ତ ଅସମ୍ଭବ ଅଲକ୍ଷ କଥା । ପୁରାଣ ଗ୍ରନ୍ଥେ ଶୁଣିନାହୁଁ ଯଥା ।*
*କାହୁଁ ଶିଖିଲେ ଦାସେ ଏହାପୁଣି । ଏହାକୁ କେଉଁ ଭଜନରେ ଗଣି ।*
*କେଉଁ ଭଜନ ଅଟେ ଏ ନାମର । ତତ୍ତ୍ୱବୋଧ ଦାସେ କହ ନିକର ।''*

*-ଶୂନ୍ୟ ସଂହିତା*

ବ୍ରାହ୍ମଣମାନଙ୍କ କଥାରେ ରାଜା ପ୍ରତାପରୁଦ୍ର ଶୂନ୍ୟ ଭଜନର ପରୀକ୍ଷା ଦେବା ପାଇଁ ତାଙ୍କୁ ନିର୍ଦ୍ଦେଶ ଦେବା ସଙ୍ଗେ ସଙ୍ଗେ ଏହାର ମନ୍ତ୍ର କ'ଣ ବୋଲି ପ୍ରଶ୍ନ କଲେ । ଜଣେ ବ୍ରାହ୍ମଣ କହିଲେ କୂପ କିମ୍ବା ବାମ୍ଫି ମଧ୍ୟରେ ଅଚ୍ୟୁତାନନ୍ଦ ଶୂନ୍ୟ ଭଜନର ପରୀକ୍ଷା ଦିଅନ୍ତୁ । ସେତେବେଳକୁ ଶ୍ରୀକ୍ଷେତ୍ରର ଚାରିଆଡ଼େ ଏକଥା ଚହଳ ପଡ଼ିଗଲାଣି । ଦାସେଙ୍କ ପରୀକ୍ଷା ଦେଖିବା ପାଇଁ ବଡ଼ଦାଣ୍ଡ ଲୋକାରଣ୍ୟ ହୋଇଉଠିଲା । ରାଜାଙ୍କ ନିର୍ଦ୍ଦେଶରେ ତାଙ୍କୁ ନିଆଗଲା ବାଙ୍କିମୁହାଣି ନିକଟସ୍ଥ ଶୂନ୍ୟବାମ୍ଫିକୁ । ସେଠାରେ ତାଙ୍କୁ ଶୂନ୍ୟବାମ୍ଫି ଉପରେ ଥାଇ ଶୂନ୍ୟ ଭଜନର ପ୍ରମାଣ ଦେବା ପାଇଁ କୁହାଗଲା । ଅଚ୍ୟୁତାନନ୍ଦ ବିଚଳିତ ହେଲେ ମଧ୍ୟ ମନ ସ୍ଥିର କରି ମହାପ୍ରଭୁଙ୍କଠାରେ ଲୟ କଲେ । ତା'ପରେ ତାଙ୍କର ସାଧନା ଆରମ୍ଭ ହେଲା । ତାଙ୍କର ଏପରି ସାଧନାରେ ରାଜା, ବ୍ରାହ୍ମଣଙ୍କ ସମେତ ଉପସ୍ଥିତ ଦର୍ଶକମାନେ ମଧ୍ୟ ବିସ୍ମିତ ହୋଇଗଲେ । ଆନନ୍ଦରେ ରାଜା ତାଙ୍କୁ ଆଲିଙ୍ଗନ କରି ସେହିଠାରେ ଭଜନ କୁଟୀର କରି ରହିବା ପାଇଁ ଅନୁରୋଧ କଲେ । ଏବେ ମଧ୍ୟ ସେହି ବାଙ୍କି ମୁହାଣିଠାରେ ଅଚ୍ୟୁତାନନ୍ଦଙ୍କ ଆଶ୍ରମ ରହିଛି ।

**(୩) ପଣସ ବୃକ୍ଷ ପ୍ରସଙ୍ଗ-** ଅଚ୍ୟୁତାନନ୍ଦଙ୍କ ଅଲୌକିକତାର ଅନ୍ୟତମ ଦୃଷ୍ଟାନ୍ତ ହେଉଛି ପଣସ ବୃକ୍ଷ ଉପାଖ୍ୟାନ । ଶ୍ରୀଚୈତନ୍ୟଙ୍କ ଆଦେଶରେ ଜଗନ୍ନାଥ ଦାସ ଗୋଟିଏ ପଣସ ମଞ୍ଜି ପୋତି ସଂଗେ ସଂଗେ ବାଳୁତ ବୃକ୍ଷରେ ପରିଣତ କଲେ । ତତ୍ପରେ ବଳରାମ ଦାସ ବୃକ୍ଷରେ ଡ଼ାଳପତ୍ର, ଯଶୋବନ୍ତ ବଉଳ ଓ ଫଳ ଫଳାଇଲେ । ଅଚ୍ୟୁତାନନ୍ଦଙ୍କ ଆଦେଶରେ ସେ ବୃକ୍ଷର ଫଳ ସଙ୍ଗେ ସଙ୍ଗେ ପାଚିଗଲା ଓ ଶିଶୁ ଅନନ୍ତ ଫଳ ତୋଳିବା କାର୍ଯ୍ୟ ସମାପନ କରିଥିଲେ । ଏହି ଉପାଖ୍ୟାନଟି ସୁଦର୍ଶନ ଦାସଙ୍କ ରଚିତ 'ଚୌରାଶୀ ଆଜ୍ଞା' ଗ୍ରନ୍ଥରେ ବର୍ଣ୍ଣିତ ହୋଇଛି ।

**(୪) ବଟପୁଟରେ ମହାପୁରୁଷ-** ଦେବୀ ଓ ଗୋବରୀ ନଦୀର ସଂଗମ ସ୍ଥଳରେ ଥିବା ଗାରୋଇଠାରେ ଗୋବର୍ଦ୍ଧନ ପୀଠ ପ୍ରତିଷ୍ଠିତ ହୋଇଛି । ମହାପୁରୁଷ ଅଚ୍ୟୁତାନନ୍ଦଙ୍କ ନିର୍ଦ୍ଦେଶମତେ ଏଠାରେ ସମସ୍ତ କାର୍ଯ୍ୟ ସମାପନ ହୁଏ । ପୀଠରେ ଥିବା ଶ୍ୱେତବଟର ମାହାତ୍ମ୍ୟ ହେଲା, ଏହି ଗଛରେ ଫଳ ପାଚିଲେ ଲାଲବର୍ଣ୍ଣ ଧାରଣ କରେନାହିଁ । ଅନ୍ୟ ବଟଗଛ ଠାରୁ ଏହି ଗଛର ପତ୍ରର ଆକୃତି ବଡ଼ ଓ ରଙ୍ଗ ମଧ ଫିକା ।

**(୫) ଶ୍ରୀଜଗନ୍ନାଥଙ୍କ ମାୟା-** ଦିନେ ଅଚ୍ୟୁତାନନ୍ଦ ଶ୍ରୀଜଗନ୍ନାଥଙ୍କୁ ଦର୍ଶନ କରିବାକୁ ଯାଇ ସିଂହଦ୍ୱାର ନିକଟରେ ପହଞ୍ଚି ଦେଖିଲେ ସିଂହଦ୍ୱାର ବନ୍ଦ ଅଛି । ତା'ପରେ ସେ ଭାବିଲେ ଉତ୍ତର ଦ୍ୱାରତ ଖୋଲା ଥିବ; ସେବାଟେ ମନ୍ଦିର ଭିତରକୁ ଚାଲିଯିବେ । ସେ ଦ୍ୱାର ମଧ ବନ୍ଦ ଥିଲା । ଏହିପରି ପଶ୍ଚିମ ଓ ଦକ୍ଷିଣ ଦ୍ୱାର ବନ୍ଦଥିବା ଦେଖି ସେ ସ୍ଥିର କଲେ ପେଜନଳା ବାଟଦେଇ ଭିତରକୁ ଚାଲିଯିବେ ଓ ପ୍ରଭୁଙ୍କୁ ଦର୍ଶନ କରିବେ । ଏହି ସମୟରେ ଗୋଟିଏ କାଳିଆ ଷଣ୍ଢ ଆସି ତାଙ୍କୁ ଆକ୍ରମଣ କରିବାରୁ ସେ ତଳେ ପଡ଼ିଗଲେ । ତା'ପରେ ଧାନରେ ବସି ଜାଣିଲେ ଯେ ଜଗନ୍ନାଥ ମହାପ୍ରଭୁ ଏପରି ମାୟା କରିଛନ୍ତି ଓ ତାଙ୍କୁ ଚାହିଁ ମୁରୁକି ମୁରୁକି ହସୁଛନ୍ତି ।

**(୬) ମା'ଙ୍କ ଜଗନ୍ନାଥ ଦର୍ଶନ-** ଧାନକୁଦ ଥିଲା ପଞ୍ଚସଖାଙ୍କ ଅନ୍ୟତମ ସାଧନା ପୀଠ । ଏଠାରେ ସେମାନେ ଧାନମଗ୍ନ ହୋଇ ସାଧନା କରୁଥିଲେ । ଯଶୋବନ୍ତ ଦାସଙ୍କ ରଚିତ 'ଠାରଗାର ଭବିଷ୍ୟତ' ଗ୍ରନ୍ଥରେ ପବିତ୍ର ଧାନକୁଦ ସଂପର୍କରେ ନିମ୍ନୋକ୍ତ ପ୍ରକାରେ ବର୍ଣ୍ଣନା କରାଯାଇଛି ।

*''ଦେବୀନଦୀ କୂଳ ସେ ସିଦ୍ଧବଟ । ହରିହରପୁର ଗ୍ରାମ ନିକଟ ।*
*ଆମ୍ଭେ ପଞ୍ଚସଖା ସେଠାରେ ମିଳି । ଧାନ କରିଯାଉ ଶୂନ୍ୟରେ ଚଳି ।*
*ଚାରିଯୁଗଯାଙ୍କ ସେଠାରେ ମିଳୁ । ଧାନକରି ମନ ଯାନରେ ଚଳୁ ।*
*ବ୍ରହ୍ମାଣ୍ଡ ଠାକୁର ଦର୍ଶନ ଦ୍ୟନ୍ତି । ସଖାମାନେ ଭେଟ ସେପରେ ହୋନ୍ତି ।''*

ଏହି ଧାନକୁଦରେ ଅଚ୍ୟୁତାନନ୍ଦଙ୍କ ସଂପର୍କରେ ଏକ ଚମତ୍କାର କିମ୍ବଦନ୍ତୀ ପ୍ରଚଳିତ ଅଛି । ତଦନୁଯାୟୀ ଅଚ୍ୟୁତାନନ୍ଦ ଏଠାରେ ତାଙ୍କ ମା' ପଦ୍ମାବତୀଙ୍କୁ ମହାପ୍ରଭୁ ଜଗନ୍ନାଥଙ୍କ ଦର୍ଶନ କରାଇଥିଲେ ।

**(୭) ଗୋରୁଖିଆ ଆଖୁକ୍ଷେତ ପୁଣି କଅଁଳିଲା-** ଥରେ ପୁରୀରୁ ଫେରିବା ବାଟରେ ମହାନଦୀ କୂଳସ୍ଥ ଏକ ବଟବୃକ୍ଷ ମୂଳରେ ଅଚ୍ୟୁତାନନ୍ଦ ବିଶ୍ରାମ ନେଉଥିଲେ । ସେହିବାଟ ଦେଇ ଜଣେ ଗୋପାଳ ବ୍ୟସ୍ତ-ବିବ୍ରତ ହୋଇ ଚାଲିଯାଉଥିଲେ । ଭୟ ଓ ଆଶଙ୍କାରେ ତାଙ୍କର ମୁହଁ କଳାକାଠ ପଡ଼ିଯାଇଥିଲା । ଅଚ୍ୟୁତାନନ୍ଦ ତାଙ୍କୁ ଏହାର କାରଣ ପଚାରିବାରୁ ଗୋପାଳ ଜଣକ କହିଲେ, ''ମୋର ଗାଈ ପଲ ରାଜାଙ୍କ କଅଁଳିଆ ଆଖୁ

କିଆରୀକୁ ଖାଇ ଦେଇଛନ୍ତି । ଜଗୁଆଳିମାନଙ୍କଠାରୁ ଏକଥା ଜାଣିବା ପରେ ରାଜା ମୋତେ ଡ଼କାଇଛନ୍ତି ।'' ମହାପୁରୁଷ ତାଙ୍କୁ ଆଶ୍ୱାସନା ଦେଇ କହିଲେ, ''ଏଇ କଥା ପାଇଁ ଏତେ ବ୍ୟତିବ୍ୟସ୍ତ ହେଉଛ ? ତୁମେ ଯାଇ ନଦୀରୁ ମାଠିଆଏ ପାଣି ଆଣ ।'' ତା'ପରେ ମହାପୁରୁଷ ଅଚ୍ୟୁତାନନ୍ଦଙ୍କ ନିର୍ଦ୍ଦେଶରେ ଗୋପାଳ ନଦୀରୁ ମାଠିଆଏ ପାଣି ଆଣିଲେ । ସେହି ପାଣିକୁ ମନ୍ତ୍ରପାଠ କରି ମନ୍ତୁରିବା ପରେ ଆଖୁକ୍ଷେତରେ ଛିଞ୍ଚିଦେବା ପାଇଁ ସେ କହିଲେ । ଆଖୁକ୍ଷେତରେ ସେଇ ମନ୍ତୁରାପାଣି ଛିଞ୍ଚାହେବା ପରେ ପୂର୍ବବତ ସବୁତକ ଗଛ କଅଁଳି ଗଲା । ଡ଼ଃ ଶ୍ରୀ ରାମଚନ୍ଦ୍ର ମିଶ୍ରଙ୍କ ଶ୍ରୀଶ୍ରୀ ଜଗନ୍ନାଥ ଭକ୍ତ ଚରିତମାଳା ଗ୍ରନ୍ଥରେ ଏହି କାହାଣୀଟି ସନ୍ନିବେଶିତ ହୋଇଛି ।

**(୮) ମହାପ୍ରସାଦ ସେବା-** ଯାଜପୁର ଠାରେ ଗୋପାଳମାନଙ୍କ ମେଳରେ ଅଚ୍ୟୁତାନନ୍ଦ ରାସଲୀଳା ପରିବେଷଣ କରୁଥିଲେ । ରାସଲୀଳାର ଗୁରୁ ଜଗନ୍ନାଥ ଦାସ ଓ ଅନ୍ୟ ସଖାମାନଙ୍କୁ ନିମନ୍ତ୍ରଣ କରିବା ଉଦ୍ଦେଶ୍ୟରେ ସେ ଶିଷ୍ୟଙ୍କୁ ପଠାଇଲେ । ନିମନ୍ତ୍ରଣ ପାଇବା ପରେ ଜଗନ୍ନାଥ ଦାସ ଖୁସିରେ ଅନ୍ୟ ସଖାମାନଙ୍କୁ ସଙ୍ଗରେ ନେଇ ଯାଜପୁରରେ ପହଞ୍ଚିଲେ ଓ ସେଠାରେ ରାହାସ କୀର୍ତ୍ତନର ସୁବନ୍ଦୋବସ୍ତ କରାଗଲା । ରାହାସ କୀର୍ତ୍ତନ ଶେଷ ହେବା ପରେ ସବୁ ସଖା ଓ ଭକ୍ତମାନଙ୍କର ମହାପ୍ରସାଦ ସେବନ କରିବା ପାଇଁ ଇଚ୍ଛା ହେଲା । ସେମାନଙ୍କ ମନକଥା ଜାଣିପାରି ଅଚ୍ୟୁତାନନ୍ଦ ମନଯାନରେ ଚଢ଼ି ଶ୍ରୀକ୍ଷେତ୍ର ଆସି ଶ୍ରୀମନ୍ଦିରରୁ ମହାପ୍ରସାଦ ନେଇ ସମସ୍ତଙ୍କୁ ପରଶି ଦେଲେ । ସମସ୍ତେ ମନଖୁସିରେ ଅଚ୍ୟୁତାନନ୍ଦଙ୍କୁ ପ୍ରଶଂସା କଲେ ।

**(୯) ମହାପ୍ରୟାଣ-** ମହାପୁରୁଷ ଅଚ୍ୟୁତାନନ୍ଦ ଶେଷ ଜୀବନରେ ଶରୀର ତ୍ୟାଗ କରିବାକୁ ଇଚ୍ଛା କରି ନିଜର ପ୍ରିୟ ଶିଷ୍ୟ ରାମଚନ୍ଦ୍ରଙ୍କୁ ଡ଼ାକି କହିଲେ । ତଦନୁଯାୟୀ ଏକ ସ୍ୱତନ୍ତ୍ର ସାଧନା କୁଟୀର ନିର୍ମାଣ କରାଗଲା । ସେହି ସାଧନା କୁଟୀର ମଧ୍ୟରେ ନିର୍ମିତ ପିଣ୍ଡି ଉପରେ ମହାପୁରୁଷ ଧ୍ୟାନସ୍ଥ ହେଲେ । ପ୍ରିୟ ଶିଷ୍ୟ ରାମଚନ୍ଦ୍ରଙ୍କୁ ନିର୍ଦ୍ଦେଶ ଦେଲେ ସାଧନା କୁଟୀରର ଦ୍ୱାର ବନ୍ଦ କରିଦେବା ପାଇଁ । ସେଦିନ ଥିଲା ଜ୍ୟେଷ୍ଠମାସ ଶୁକ୍ଳପକ୍ଷ ଏକାଦଶୀ ତିଥି । ଭକ୍ତମାନେ ତାଙ୍କୁ ଦର୍ଶନ କରିବାକୁ ଆସି ତାଙ୍କର ଦେଖା ନପାଇ ବ୍ୟତିବ୍ୟସ୍ତ ହୋଇପଡ଼ିଲେ । କେବଳ ନାମ ସଂକୀର୍ତ୍ତନ ଚାଲିଲା । ପଞ୍ଚମ ଦିନ ରାମଦାସ ଦ୍ୱାର ଖୋଲି ଦେଖନ୍ତି ତ ତା ଭିତରେ ଆଉ ଗୁରୁଦେବ ନାହାନ୍ତି । କେବଳ ସବୁ ଶୂନ୍ୟ-ଶୂନ୍ୟବ୍ରହ୍ମ ମିଶି ଯାଇଛନ୍ତି ମହାଶୂନ୍ୟରେ । ସଙ୍ଗେ ସଙ୍ଗେ ପ୍ରଚାର ହୋଇଗଲା ଯେ ମହାପୁରୁଷ ଅନ୍ତର୍ଦ୍ଧାନ ହୋଇଯାଇଛନ୍ତି । ଭଜନ-କୀର୍ତ୍ତନ ସବୁ ବନ୍ଦ ହୋଇଗଲା- ଭକ୍ତମାନଙ୍କ କରୁଣ କ୍ରନ୍ଦନରେ ଭାରାକ୍ରାନ୍ତ ହୋଇ ଉଠିଲା ନେମାଳର ମାଟି ଓ ଆକାଶ । ସେଦିନ ଥିଲା ଜ୍ୟେଷ୍ଠ ମାସର ପବିତ୍ର ଦେବସ୍ନାନ ପୂର୍ଣ୍ଣମୀ ତିଥି ।



# ଅଚ୍ୟୁତାନନ୍ଦଙ୍କ ଧର୍ମ ଦର୍ଶନର ସ୍ୱରୂପ

## ପୃଷ୍ଠଭୂମି-

ଓଡ଼ିଶାର ସନ୍ଥକବି ପରମ୍ପରାରେ ମହାପୁରୁଷ ଅଚ୍ୟୁତାନନ୍ଦଙ୍କ ସ୍ଥାନ ସ୍ୱତନ୍ତ୍ର । ଷୋଡ଼ଶ ଶତାବ୍ଦୀର ପଞ୍ଚସଖା ଧର୍ମ, ସାହିତ୍ୟ ଓ ସଂସ୍କୃତି କ୍ଷେତ୍ରରେ ଯେଉଁ ବିପ୍ଳବର ସୂତ୍ରପାତ କରିଥିଲେ ତାଦ୍ୱାରା ସାମାଜିକ ଜୀବନରେ ଘୋର ପରିବର୍ତ୍ତନ ଆସିଥିଲା । ସେ ପରିବର୍ତ୍ତନ ପାଇଁ ବଳରାମ ଦାସ, ଜଗନ୍ନାଥ ଦାସ ଓ ଅଚ୍ୟୁତାନନ୍ଦ ମୁଖ୍ୟତଃ ଦାୟୀ । ସେମାନଙ୍କ ଅନୁସୃତ ଧର୍ମଦର୍ଶନକୁ କେହି କେହି ବୌଦ୍ଧଧର୍ମର ନିଛକ ପ୍ରଭାବ ବୋଲି କହି ସେମାନଙ୍କୁ ''ପ୍ରଚ୍ଛନ୍ନ ବୌଦ୍ଧ'' ଭାବରେ ଅଭିହିତ କରିଥାନ୍ତି । ସେହିପରି ଆଉ କେହି ସେମାନଙ୍କୁ ଶ୍ରୀଚୈତନ୍ୟଙ୍କ ପରିକର ବୋଲି ଉଲ୍ଲେଖ କରିଛନ୍ତି । ପଞ୍ଚସଖାଙ୍କ ଦ୍ୱାରା ସ୍ୱଲିଖିତ ରଚନା ସବୁରେ ସେମାନଙ୍କ ଆଚରିତ ଧର୍ମ ଦର୍ଶନ ବିଶଦ ଭାବରେ ସ୍ଥାନ ପାଇଛି । ସେସବୁ ମଧ୍ୟରେ ରହିଛି ଯନ୍ତ୍ର-ମନ୍ତ୍ର-ତନ୍ତ୍ର, ଶୂନ୍ୟବାଦ, ପିଣ୍ଡ ବ୍ରହ୍ମାଣ୍ଡ ତତ୍ତ୍ୱ, ସୃଷ୍ଟି ପ୍ରକ୍ରିୟା, ଗୁରୁବାଦ, ଦୀକ୍ଷା ପ୍ରସଙ୍ଗ, ବୈଷ୍ଣବ ଭେକ ଓ ଦିନଚର୍ଯ୍ୟା, ବ୍ରହ୍ମ ନିରୂପଣ ଇତ୍ୟାଦି । ଏହିସବୁ ଆଚରିତ ଧର୍ମତତ୍ତ୍ୱକୁ ଦୃଷ୍ଟିରେ ରଖି ସେମାନଙ୍କୁ କେବଳ ଯୋଗାଚାରୀ ସାଧକ ଭାବେ ଅଭିହିତ କରିବା ସନ୍ଦେହମୁକ୍ତ ନୁହେଁ । ସେମାନଙ୍କ ଦ୍ୱାରା ପ୍ରଚାରିତ ଶ୍ରୀକୃଷ୍ଣ-ରାଧା-ଗୋପୀ-ଗୋପାଳ ପ୍ରସଙ୍ଗଭୁକ୍ତ ରାସଲୀଳାର ପ୍ରେମଭକ୍ତି ତତ୍ତ୍ୱକୁ ଆସ୍ୱାଦନ କରି ସେମାନଙ୍କୁ ପ୍ରେମଭକ୍ତି ମାର୍ଗର ଉପାସକ କହିବା ମଧ୍ୟ ସେହିପରି ଯୁକ୍ତିଯୁକ୍ତ ନୁହେଁ । ପୁଣି ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କ ଠାରେ ସେମାନଙ୍କର ଐକାନ୍ତିକ ଭକ୍ତିଭାବ ଦେଖି ସେମାନଙ୍କୁ କେବଳ ଜଗନ୍ନାଥଙ୍କର ପରମ ସେବକ ରୂପେ ସ୍ୱୀକାର କରିବା ସମ୍ଭବ ନୁହେଁ । କୌଣସି ଗୋଟିଏ କ୍ଷେତ୍ରରେ ନିର୍ଦ୍ଦିଷ୍ଟ ଭାବରେ ପାଚେରୀ ଠିଆ କରି ସେମାନଙ୍କୁ ଅଲଗା କରି ସୀମାବଦ୍ଧ କରି ହେବନାହିଁ । ସେଥିପାଇଁ ପଞ୍ଚସଖାଙ୍କ ଆଚରିତ ମାର୍ଗର ମୂଳଦୁଆ କେଉଁଠି ତାର ଅନୁସନ୍ଧାନ କରିବାକୁ ହେବ । ଆଧ୍ୟାତ୍ମିକ ଜଗତରେ ସେମାନେ ଯେ ସ୍ୱତନ୍ତ୍ର ମାର୍ଗ ଦର୍ଶନର ପୁରୋଧା ଥିଲେ ଏହା ନିଃସନ୍ଦେହରେ କୁହାଯାଇପାରେ ।

ସମାଜରେ ମଣିଷ ଦ୍ୱାରା ଆଚରିତ ପନ୍ଥାକୁ ହିଁ ଧର୍ମ କୁହାଯାଏ । ଆଦିମ ଯୁଗରୁ ଏଯାବତ୍ ମଣିଷ ସମାଜ ବହୁ ଉତ୍‌ଥାନ ପତନ ଦେଇ ଗତି କରୁଛି । ବୁଦ୍ଧି ଓ ବିବେକର ଉତ୍ତୋରତ୍ତର ଉନ୍ନତି ହେବା ସଙ୍ଗେସଙ୍ଗେ ନିଜର ଆଚାର ବ୍ୟବହାର ମଧ ସମୟକ୍ରମେ ବଦଳାଇ ଦେଇଛି । ସୁବିଧା ଦୃଷ୍ଟିରୁ ସାମାଜିକ ସୁଖ ସ୍ୱାଚ୍ଛନ୍ଦ୍ୟ ପାଇଁ ସହଜ ସରଳ ମାର୍ଗରେ ପାଦ ପକାଇ ଆଗେଇ ଚାଲିଛି । ଆଦିମ ଯୁଗରେ ମଣିଷ ଯାହା ଦ୍ୱାରା ଉପକୃତ ହୋଇଛି ତାକୁ ଦେବତା ମନେକରି ଉପାସନା କରିଛି । ଏ ଦୃଷ୍ଟିରୁ ସେ ଉଷାର ଯେପରି ବନ୍ଦନା କରିଛି ଇନ୍ଦ୍ରଙ୍କୁ ମଧ ସେପରି ପୂଜା କରିଛି । ସେଥିପାଇଁ କାଳକ୍ରମେ ଇନ୍ଦ୍ର, ଅଗ୍ନି, ରାତ୍ରି, ଆକାଶ, ଧରିତ୍ରୀ ଆଦି ତାର ଉପାସ୍ୟ ଦେବତାର ସ୍ଥାନ ଗ୍ରହଣ କଲେ ଓ ସେମାନଙ୍କର ଆଶୀର୍ବାଦ ଲାଭ କରିବା ଆଶାରେ ସେମାନଙ୍କୁ ସନ୍ତୁଷ୍ଟ କରାଗଲା । ଏ ପରିପ୍ରେକ୍ଷୀରେ ମନ୍ତ୍ର, ପୂଜାପାଠ, ହୋମ, ଯଜ୍ଞ, ଆଦି କ୍ରିୟା ଅନୁସୃତ ହେଲା । ଏପରିକି ନିଜର ମନସ୍କାମନା ପୂରଣ କରିବା ପାଇଁ ମନ୍ତ୍ର-ଯନ୍ତ୍ର ଓ ତନ୍ତ୍ର ବଳରେ ଦେବତାମାନଙ୍କୁ ବଶୀଭୂତ କରିବାକୁ ଚେଷ୍ଟା କରାଗଲା । ଆବଶ୍ୟକତା ଅନୁଯାୟୀ ଦେବତାମାନଙ୍କର ସଂଖ୍ୟା ବୃଦ୍ଧି ହେଲା ଓ ନିର୍ଦ୍ଦିଷ୍ଟ ଭାବରେ କାର୍ଯ୍ୟସିଦ୍ଧି ପାଇଁ ନିର୍ଦ୍ଦିଷ୍ଟ ଦେବତାଙ୍କୁ ପୂଜା କରାଗଲା । ବୈଦିକ ଯୁଗରେ ଏହିପରି ଭାବରେ ଦେବତାମାନଙ୍କ ତୁଷ୍ଟୀକରଣ ପାଇଁ ନାନା ଉପାୟ ଅବଲମ୍ବନ କରାଯାଇଛି । ବୈଦିକ ଯୁଗର ଯଜ୍ଞାନୁଷ୍ଠାନ, ପୂଜା ପଦ୍ଧତି, ଦେବଦେବୀ ସ୍ତୁତି, ତନ୍ତ୍ର ସାଧନା ଆଦିର ସୁଦୂର ପ୍ରସାରୀ ପ୍ରଭାବ ପରବର୍ତ୍ତୀ ସମୟର ସମାଜକୁ ଯଥେଷ୍ଟ ପରିମାଣରେ ପ୍ରଭାବିତ କରିଛି । ଏପରିକି ବୌଦ୍ଧ, ନାଥ, ଶୈବ, ଶାକ୍ତ ଓ ବୈଷ୍ଣବ ଧର୍ମ ଭିତରେ ବୈଦିକ ଧର୍ମ ଓ ସଂସ୍କୃତିର ସ୍ୱର ଯେପରି ଉଚ୍ଚାରିତ ହୋଇଛି ପ୍ରତ୍ୟେକ ଧର୍ମର ସ୍ୱରୂପ ଭିତରେ ଅନ୍ୟ ଗୋଟିଏ ଧର୍ମର କିଛି ନା କିଛି ରୂପ ବୈଭବ ଫୁଟି ଉଠିଛି । ସେଦୃଷ୍ଟିରୁ ଗୋଟିଏ ଧର୍ମକୁ ପୂରାପୂରି ଅନ୍ୟ ଗୋଟିଏ ଧର୍ମଠାରୁ ପୃଥକ୍ କରିହେବ ନାହିଁ କି ନିର୍ଦ୍ଦିଷ୍ଟ ସମୟ ସୀମା ମଧରେ ଆବଦ୍ଧ କରି ରଖି ହେବନାହିଁ । ଏହିପରି ଦେଖି ବସିଲେ ପଞ୍ଚସଖାଙ୍କ ଧର୍ମ ଦର୍ଶନ ବିଭିନ୍ନ ସମୟର ଧର୍ମ-ସଂସ୍କୃତି ଦ୍ୱାରା ଅନେକାଂଶରେ ପ୍ରଭାବିତ ହୋଇଛି । ସେଥିପାଇଁ ପଞ୍ଚସଖାଙ୍କ ସମୟ ଅର୍ଥାତ୍ ଷୋଡ଼ଶ ଶତାବ୍ଦୀ ଓ ତତ୍ ପୂର୍ବବର୍ତ୍ତୀ ଧର୍ମ, ସାହିତ୍ୟ, ସଂସ୍କୃତି ଓ ସମାଜ ସଂପର୍କରେ ସଂକ୍ଷିପ୍ତ ଆଲୋଚନା ଏଠାରେ କରାଗଲା ।

ଏକଦା ବୌଦ୍ଧଧର୍ମ ପୃଥିବୀର ପ୍ରାଚ୍ୟ ଭୂଖଣ୍ଡରେ ଅଖଣ୍ଡ ପ୍ରାଧାନ୍ୟ ଲାଭ କରି ଅତ୍ୟନ୍ତ ଲୋକପ୍ରିୟ ହୋଇଉଠିଥିଲା । କିନ୍ତୁ ବୁଦ୍ଧଦେବଙ୍କ ତିରୋଧାନ ପରେ ବୌଦ୍ଧଭିକ୍ଷୁମାନଙ୍କ ମଧରେ ନୀତି ଓ ଆଦର୍ଶକୁ ନେଇ ମତାନ୍ତର ସୃଷ୍ଟି ହେବାରୁ କାଳକ୍ରମେ

ବୌଦ୍ଧଧର୍ମରେ ବିଭେଦ ପରିଲକ୍ଷିତ ହେଲା । ଏହିଭଳି ମତଦ୍ୱୈଧ ଲାଗିରହିବାରୁ ବୌଦ୍ଧଧର୍ମ ଦୁଇଟି ଶାଖାରେ ବିଭକ୍ତ ହେଲା । ଗୋଟିଏ ହେଲା ହୀନଯାନ ଓ ଅନ୍ୟଟି ହେଲା ମହାଯାନ । ହୀନଯାନରେ କେବଳ ଆତ୍ମାର ଶୂନ୍ୟତାକୁ ସ୍ୱୀକାର କରାଯାଇଥିବା ସ୍ଥଳେ ମହାଯାନରେ ଆତ୍ମା ସହିତ ଇନ୍ଦ୍ରିୟାଗ୍ରାହ୍ୟ ସମସ୍ତ ବସ୍ତୁର ଶୂନ୍ୟତାକୁ ଗ୍ରହଣ କରାଗଲା ।

ଖ୍ରୀଷ୍ଟିୟ ୭ମ ଓ ୮ମ ଶତାବ୍ଦୀବେଳକୁ ମହାଯାନ ବୌଦ୍ଧଧର୍ମ ପରିଣତ ହେଲା ବଜ୍ରଯାନରେ । ବୌଦ୍ଧ ଦାର୍ଶନିକ ଅସଙ୍ଗ ଯୋଗାଚାର ମତର ପ୍ରବର୍ତ୍ତକ ଥିଲେ । ସେ ଶୂନ୍ୟବାଦ ସହିତ ଯୋଗାଚାର ବିଜ୍ଞାନର ଯୋଗ କରିଥିଲେ । ଶୂନ୍ୟତା ମଧ୍ୟ ଏକ ପ୍ରକାର ଜ୍ଞାନ । ଏହି ଶୂନ୍ୟତାରେ ଯୋଗାଚାର ଜ୍ଞାନ ଯୋଗ ହେଲେ ଶୂନ୍ୟ, କରୁଣା ଓ ବିଜ୍ଞାନର ମିଳନରେ ନିର୍ବାଣ ଲାଭ ହୁଏ । ଏହି ଯୋଗାଚାର ମତରୁ ବଜ୍ରଯାନ ସୃଷ୍ଟି ହେଲା । ଯୋଗାଚାରର ଶୂନ୍ୟ, କରୁଣା ଓ ବିଜ୍ଞାନରେ ମହାସୁଖ ଯୋଗ କରିଥିଲା ବଜ୍ରଯାନ । ଏଥିରେ ଶୂନ୍ୟ ଓ କରୁଣାର ମିଳନରେ ଜ୍ଞାନ ଉପଲବ୍ଧି ହେଲେ ମହାସୁଖ ଜାତ ହୁଏ ବୋଲି କୁହାଯାଇଛି । ବ୍ରଜଯାନରେ ପାଞ୍ଚଧ୍ୟାନୀ ବୁଦ୍ଧଙ୍କର ପରିକଳ୍ପନା କରାଗଲା ଓ ଏହା ଦ୍ୱାରା ସର୍ବପ୍ରଥମ ବୌଦ୍ଧଧର୍ମରେ ଶକ୍ତି ଉପାସନା ଏବଂ ମାତୃ ଡ଼ାକିନୀ ପ୍ରଭୃତି ଭିନ୍ନ ଭିନ୍ନ ଦେବଦେବୀଙ୍କର ଆରାଧନା ତଥା ଉପାସନା ପଦ୍ଧତି ପ୍ରବର୍ତ୍ତନ କରାଗଲା । ଓଡ଼ିୟାନର ରାଜା ଇନ୍ଦ୍ରଭୂତି ଓ ତାଙ୍କର ଗୁରୁ ଅନଙ୍ଗବଜ୍ର ବଜ୍ରଯାନ ବୌଦ୍ଧଧର୍ମର ପ୍ରଧାନ ପ୍ରଚାରକ ଥିଲେ । ଶୂନ୍ୟ ବା ନିର୍ବାଣକୁ ବଜ୍ର ବୋଲି କୁହାଯାଏ ।

ଇନ୍ଦ୍ରଭୂତିଙ୍କ ଭଗିନୀ ଲକ୍ଷ୍ମୀଙ୍କରା ଥିଲେ ସହଜଯାନ ବୌଦ୍ଧଧର୍ମର ପ୍ରବର୍ତ୍ତିକା । ସହଜର ସାଧାରଣ ଅର୍ଥ ହେଉଛି- ସ୍ୱଭାବ । ଆତ୍ମା ବା ଚିତ୍ତର ସ୍ୱାଭାବିକ ଅବସ୍ଥାକୁ ସହଜ କୁହାଗଲା ଏବଂ ଏହି 'ସହଜ' ଶବ୍ଦ ନିର୍ବାଣ ଉଦ୍ଦେଶ୍ୟରେ ବ୍ୟବହୃତ ହେଲା । ତେଣୁ ଶୂନ୍ୟ ଓ ନିର୍ବାଣ ଉଭୟ ହେଲା ସହଜ ପର୍ଯ୍ୟାୟବାଚୀ । ସହଜଯାନୀ ମାନେ ଶରୀର ଉପରେ ଗୁରୁତ୍ୱ ଦେଇ କାୟାସାଧନା କଥା ପ୍ରଚାର କଲେ । ସହଜ ସାଧନାରେ ଶରୀର ମଧ୍ୟରେ ଶୂନ୍ୟତା ଓ କରୁଣାର ମିଳନରେ ସହଜାବସ୍ଥା ଲାଭ ହୁଏ । ଏହି ସହଜାବସ୍ଥା ବା ମହାସୁଖାବସ୍ଥା ନିର୍ବାଣ ବ୍ୟତୀତ ଆଉ କିଛି ନୁହେଁ । ସହଜଯାନରେ ଦେବଦେବୀଙ୍କୁ ଉପାସନା କରିବା ପାଇଁ ବାରଣ କରାଯାଇଛି । ପୁଣି ବ୍ରତ, ଉପବାସ କରି ଶରୀରକୁ କଷ୍ଟ ଦେବା ଉଚିତ ନୁହେଁ । ଏଥିରେ ସ୍ତ୍ରୀଲୋକମାନଙ୍କ ସ୍ଥାନ ଅତି ଉଚ୍ଚରେ । କାରଣ ଭଗବତୀ ପ୍ରଜ୍ଞା ଗୋପନ ଭାବରେ ସ୍ତ୍ରୀ ରୂପ ଧାରଣ କରିଛନ୍ତି । ତେଣୁ କୌଣସି ଜାତିର ସ୍ତ୍ରୀଲୋକଙ୍କୁ ଘୃଣା କରିବ ନାହିଁ ବୋଲି ସହଜଯାନ ପ୍ରଚାର କରିଛି ।

ଏପରି ଭାବରେ ଶୂନ୍ୟବାଦ, ପିଣ୍ଡ ବ୍ରହ୍ମାଣ୍ଡ ତତ୍ତ୍ୱ, କାୟାବାଦ ବା କାୟାସାଧନା ଉପରେ ବୌଦ୍ଧଧର୍ମରେ ଏକାନ୍ତ ଭାବରେ ଗୁରୁତ୍ୱ ପ୍ରଦାନ କରାଗଲା । ଶରୀରକୁ ସାଧନାର ମାଧ୍ୟମ ରୂପେ ଗ୍ରହଣ କରୁଥିବାରୁ ଏହି ଶରୀର ଦ୍ୱାରା ସାଧନା କରି 'କାଳ'କୁ ଆୟତ୍ତ କରିବା ପାଇଁ ପ୍ରଚେଷ୍ଟା ହେଲା । ଏହା ହେଉଛି କାଳଚକ୍ରଯାନ । ଏଥିରେ ଶୂନ୍ୟତା ଓ କାଳଚକ୍ରକୁ ଏକ ଏବଂ ଅଭିନ୍ନ ରୂପେ କଳ୍ପନା କରାଗଲା । ତେଣୁ ଯୋଗ ସାଧନା ମାଧ୍ୟମରେ 'କାଳ' ପ୍ରଭାବରୁ ନିଜକୁ ମୁକ୍ତ କରିବା ହେଉଛି ଏହାର ପ୍ରଧାନ ଲକ୍ଷ୍ୟ । ତେଣୁ ଏହି କାଳଚକ୍ରଯାନରେ ତିଥି, ବାର, ନକ୍ଷତ୍ର, ରାଶି ଓ ଯୋଗର ସ୍ଥାନ ସର୍ବାପେକ୍ଷା ବେଶୀ ।

ବଜ୍ରଯାନ ଓ ସହଜଯାନରେ ତନ୍ତ୍ରର ପ୍ରବେଶ ଯୋଗୁଁ ବୌଦ୍ଧଧର୍ମ ତାନ୍ତ୍ରିକ ବୌଦ୍ଧଧର୍ମରେ ପରିଣତ ହେଲା । ତନ୍ତ୍ର ସାଧନାରେ ସୃଷ୍ଟିର ମୂଳତତ୍ତ୍ୱ ହେଉଛି ଶକ୍ତି । ବିଭିନ୍ନ ଦେବଦେବୀଙ୍କର ପ୍ରତୀକ ବୀଜମନ୍ତ୍ର, କୁଣ୍ଡଳିନୀ ଯୋଗ, ଭୂତସିଦ୍ଧି, ଗୁରୁର ମହତ୍ତ୍ୱ, ଗୁପ୍ତ-ବାମାଚାର ପଦ୍ଧତି, ବାହ୍ୟ ଓ ଅନ୍ତରଙ୍ଗ ଆଚାର ସମନ୍ୱିତ ସାଧନ ପ୍ରଣାଳୀ ହେଉଛି ତନ୍ତ୍ରର ପ୍ରଧାନ ବୈଶିଷ୍ଟ୍ୟ । ତନ୍ତ୍ର ସାଧନା ବଳରେ ଦେବଦେବୀଙ୍କୁ ସନ୍ତୁଷ୍ଟ କରି ସାଧନାରେ ସିଦ୍ଧିଲାଭ କରିବା ହେଉଛି ଏହାର ମୁଖ୍ୟ ଲକ୍ଷ୍ୟ । ଓଡ଼ିଶା ସମେତ ସମଗ୍ର ଭାରତ ବର୍ଷର ଯୋଗାଚାର ସାହିତ୍ୟରେ ତନ୍ତ୍ର ସାଧନାରେ ବହୁ ତତ୍ତ୍ୱପୂର୍ଣ୍ଣ ଶବ୍ଦ ବ୍ୟାପକ ଭାବରେ ବ୍ୟବହୃତ ହୋଇଛି । ସେସବୁ ସାହିତ୍ୟ କ୍ଲିଷ୍ଟ, ଦୁର୍ବୋଧ ତଥା ରହସ୍ୟମୟ ହେଲେ ମଧ୍ୟ ଆଧ୍ୟାତ୍ମିକ ଦୃଷ୍ଟିକୋଣରୁ ଅତ୍ୟନ୍ତ ଲୋକପ୍ରିୟ ।

## ଓଡ଼ିଶା ଓ ବୌଦ୍ଧଧର୍ମ-

ଓଡ଼ିଶାରେ ବହୁ ପ୍ରାଚୀନ ଯୁଗରୁ ବୌଦ୍ଧଧର୍ମ ପ୍ରସାର ଲାଭ କରିଛି । କଳିଙ୍ଗରେ ରାଜା ଗୁହଶିବଙ୍କ ସମୟରେ ବୁଦ୍ଧଦେବଙ୍କ ଦନ୍ତର ପୂଜା ଦନ୍ତପୁରରେ ଏପରି ପ୍ରସିଦ୍ଧି ଲାଭ କରିଥିଲା ଯେ ସେହି ଦନ୍ତ ପୂଜା ନିମନ୍ତେ ଉଜ୍ଜୟିନୀର ରାଜାଙ୍କ ପୁତ୍ର ଦନ୍ତକୁମାର କଳିଙ୍ଗ ଆସିଥିଲେ । ଏହି ଦନ୍ତପୁରକୁ ଐତିହାସିକମାନେ ଆଧୁନିକ ଶ୍ରୀକ୍ଷେତ୍ର ବା ପୁରୀ ସହିତ ଚିହ୍ନିତ କରିଛନ୍ତି । ବହୁ ଜୈନଗ୍ରନ୍ଥରେ ମଧ୍ୟ ଦନ୍ତପୁର କଥା ଉଲ୍ଲେଖ ଅଛି- *''ଦନ୍ତପୁରମ୍ କଳିଙ୍ଗାନାଂ ଅସ୍ମକାନୌଚ ପୋଟଲମ୍''* । ଅଶୋକଙ୍କ କଳିଙ୍ଗ ବିଜୟ ପରେ କଳିଙ୍ଗରେ ବୌଦ୍ଧଧର୍ମର ବ୍ୟାପକ ପ୍ରସାର ହୋଇଥିଲା । ସେ ନିଜର ପୁତ୍ର ମହେନ୍ଦ୍ର ଓ କନ୍ୟା ସଂଘମିତ୍ରାକୁ ବୌଦ୍ଧଧର୍ମ ପ୍ରଚାର କରିବାକୁ ସିଂହଳ ପଠାଇଥିଲେ ଓ ସେମାନଙ୍କ ସହିତ ଯେଉଁମାନେ ଯାଇଥିଲେ ସେମାନେ ଥିଲେ କଳିଙ୍ଗବାସୀ । କଳିଙ୍ଗର ରାଜଧାନୀ

ତୋଷାଳି ଓଡ଼ିଶାରେ ବୌଦ୍ଧଧର୍ମ ପ୍ରଚାରର ପ୍ରଧାନ କେନ୍ଦ୍ର ଥିଲା । କେବଳ ସେତିକି ନୁହେଁ, ଚର୍ଯ୍ୟାପଦର ପ୍ରସିଦ୍ଧ ଚୌରାଶୀ ସିଦ୍ଧ ସାଧକଙ୍କ ମଧ୍ୟରୁ ହାଡ଼ିପା, କାହ୍ନୁପା, ତନ୍ତିପା, ଚୌରଙ୍ଗୀନାଥ, ଗୋରକ୍ଷନାଥ, ମତ୍ସ୍ୟେନ୍ଦ୍ରନାଥ ଓ ଲୁଇପାଙ୍କୁ ଓଡ଼ିଶାର ସିଦ୍ଧାଚାର୍ଯ୍ୟ ଭାବରେ ଗ୍ରହଣ କରାଯାଇଛି । (ଅଚ୍ୟୁତାନନ୍ଦ ଓ ପଞ୍ଚସଖା ଧର୍ମ- ଶ୍ରୀ ଚିତ୍ତରଞ୍ଜନ ଦାସ) ଓଡ଼ିଶାର ଜଣେ ପ୍ରସିଦ୍ଧ ବୌଦ୍ଧ ସନ୍ନ୍ୟାସୀ ବୀରସିଂହଙ୍କ କଥା ଅଚ୍ୟୁତାନନ୍ଦ 'ଶୂନ୍ୟ ସଂହିତା'ରେ ଉଲ୍ଲେଖ କରିଛନ୍ତି । ଶ୍ରୀକ୍ଷେତ୍ର ପରିତ୍ୟାଗ କରି ବହୁ ବୌଦ୍ଧ ସିଦ୍ଧସାଧକ ଦଣ୍ଡକାରଣ୍ୟରେ (ପ୍ରାଚୀ ଉପତ୍ୟକା) ସାଧନା ରତ ଥିବା କଥା 'ଶୂନ୍ୟ ସଂହିତା'ରୁ ଜଣାଯାଏ ।

ଦ୍ୱାଦଶ ଶତାବ୍ଦୀ ପରେ ପରେ ମୁସଲମାନମାନେ ମଗଧ ଓ ଗୌଡ଼ ଅଧିକାର କରିନେବା ଦ୍ୱାରା ବୌଦ୍ଧଧର୍ମ ସେଠାରେ ବହୁ ବାଧାବିଘ୍ନର ସମ୍ମୁଖୀନ ହୋଇଥିଲା । ନାଳନ୍ଦା ଓ ବିକ୍ରମଶିଳାର ପତନ ତଥା ଧ୍ୱଂସ ହୋଇଥିଲା । ମୁସଲମାନମାନଙ୍କ ବିରୁଦ୍ଧାଚରଣ ଯୋଗୁଁ ବୌଦ୍ଧଧର୍ମାବଲମ୍ବୀ ମାନେ ଓଡ଼ିଶାକୁ ପଳାଇ ଆସିଲେ ଓ ଏକମାତ୍ର ଓଡ଼ିଶା ହେଲା ସେମାନଙ୍କର ଆଶ୍ରୟ ସ୍ଥଳ । ଏହିପରି ଦେଖି ବସିଲେ ଓଡ଼ିଶାରେ ସର୍ବତ୍ର ବୌଦ୍ଧଧର୍ମ ତାର ବିଶାଳ କାୟା ବିସ୍ତାର କରି ସମଗ୍ର ଜନସମାଜକୁ ପ୍ରଭାବିତ କରିଥିଲା । ଯେଉଁଆଡ଼କୁ ଦେଖିଲେ ସେଆଡ଼େ ବୌଦ୍ଧବିହାର, ଚୈତ୍ୟ, ସ୍ତୂପ, ସଂଘାରାମ, ବୌଦ୍ଧଭିକ୍ଷୁ, ଶ୍ରମଣ, ସନ୍ନ୍ୟାସୀ ଓ ବୌଦ୍ଧଦେବଦେବୀ ପରିବ୍ୟାପ୍ତ ହୋଇ ରହିଥିଲେ । ଏପରିକି ଆଜି ଆମେ ଯେଉଁ ଦେବଦେବୀମାନଙ୍କୁ ପୂଜା କରୁଛୁ ସେସବୁ ବୌଦ୍ଧ ଦେବଦେବୀଙ୍କର ନାମାନ୍ତର କହିଲେ ଅତ୍ୟୁକ୍ତି ହେବନାହିଁ । ଅଷ୍ଟମ ଶତାବ୍ଦୀ ବେଳକୁ ଓଡ଼ିଶାର ରାଷ୍ଟ୍ରଦେବତା ଶ୍ରୀଜଗନ୍ନାଥ ବୁଦ୍ଧରେ ପରିଣତ ହୋଇସାରିଥିଲେ । ରାଜା ଇନ୍ଦ୍ରଭୂତି ତାଙ୍କର 'ଜ୍ଞାନସିଦ୍ଧି' ଗ୍ରନ୍ଥର ଆରମ୍ଭରେ ଶ୍ରୀଜଗନ୍ନାଥଙ୍କୁ ବୁଦ୍ଧମୟ ରୂପେ ବନ୍ଦନା କରି ଲେଖିଛନ୍ତି-

*"ପ୍ରଣିପତ୍ୟ ଜଗନ୍ନାଥଂ ସର୍ବଜିନବରାର୍ଚ୍ଚିତଂ*
*ସର୍ବବୁଦ୍ଧମୟଂ ସିଦ୍ଧି ବ୍ୟାପିନଂ ଗଗନୋପମଂ ।"*

ଶ୍ରୀଜଗନ୍ନାଥ ମନ୍ଦିର ନିର୍ମିତ ହେବାବେଳକୁ ଜଗନ୍ନାଥଙ୍କ ଠାରେ ବୁଦ୍ଧତ୍ୱ ଆରୋପିତ ହୋଇ ସମସ୍ତଙ୍କ ଦ୍ୱାରା ଗୃହୀତ ହୋଇଥିଲା । ସେଥିପାଇଁ ଶ୍ରୀଜଗନ୍ନାଥ ମନ୍ଦିର ସିଂହଦ୍ୱାରର ଉପର ବନ୍ଧରେ ଥିବା 'ଦଶାବତାର'ରେ ନବମ ଅବତାର ବୁଦ୍ଧଙ୍କ ସ୍ଥାନରେ ରହିଛନ୍ତି ଶ୍ରୀଜଗନ୍ନାଥ । ଐତିହାସିକ ସ୍ୱର୍ଗତ ଶ୍ରୀ କେଦାରନାଥ ମହାପାତ୍ର ଏ ପ୍ରସଙ୍ଗ ଉଲ୍ଲେଖ କରିଛନ୍ତି (A Descriptive catalogue of Sanskrit Manuscript of Orissa

Vo. II) । ମହାକବି ସାରଳା ଦାସ ମହାଭାରତର ବିଭିନ୍ନ ସ୍ଥାନରେ ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରା ତ୍ରିମୂର୍ତ୍ତିଙ୍କୁ ମହାବୌଦ୍ଧ ବୋଲି କହିଛନ୍ତି ।

*"ନାସା କର୍ଣ୍ଣ ଶ୍ରବଣ ଯେ ନୟନ ନ ଦିଶି*
*ଦେଖି ଇନ୍ଦ୍ରଦ୍ୟୁମ୍ନ ମହା ବିସ୍ମୟରେ ବସି*
*ମହାବୌଦ୍ଧ ବିକାଶ ହୋଇଲା ତିନିରେଖା*
*କର ଚରଣ ପଲ୍ଲବ ନ ଦିଶଇ ଶିଖା ।"* (ବନପର୍ବ)
*"ସଂସାର ଜନଙ୍କୁ ସେହୁ ତାରିବା ନିମନ୍ତେ*
*ବଉଧ ରୂପରେ ବିଜେ ଅଛି ଜଗନ୍ନାଥେ ।"* (ସଭାପର୍ବ)

ଓଡ଼ିଶାର ଧର୍ମ, ସାହିତ୍ୟ ଓ ସଂସ୍କୃତି କ୍ଷେତ୍ରରେ ଶ୍ରୀଜଗନ୍ନାଥ ଓ ବୁଦ୍ଧଙ୍କ ମଧ୍ୟରେ ଅଭେଦ ପରିକଳ୍ପିତ ହୋଇ ସମାଜ ଉପରେ ଗୁରୁତର ପ୍ରଭାବ ପକାଇଲା ।

## ଓଡ଼ିଶାରେ ବିଭିନ୍ନ ଧର୍ମଧାରା-

ତନ୍ତ୍ରଶାସ୍ତ୍ରରେ ସାଧନା କ୍ଷେତ୍ରରେ ଶକ୍ତିଙ୍କ ଉପରେ ପ୍ରାଧାନ୍ୟ ଦିଆଗଲା । ଏହି ଶକ୍ତିଙ୍କ ବିନା ଶିବ ଶବରେ ପରିଣତ ହୋଇଥାନ୍ତି । ତେଣୁ ବ୍ରହ୍ମ ଠାରେ ଶକ୍ତିର ଆରୋପ କରାଯାଇ ତନ୍ତ୍ର ସାଧନା କରାଗଲା । ବ୍ରହ୍ମର ଏହି ଶକ୍ତିରୂପ ମାତୃରୂପ ଭାବରେ ପରିକଳ୍ପିତ ହେଲେ । ବିଶ୍ୱବ୍ରହ୍ମାଣ୍ଡର ସମସ୍ତ ବସ୍ତୁ ଶକ୍ତିରୂପିଣୀ ଜନନୀ ରୂପେ ସଞ୍ଚାଳିତ ହେଉଛନ୍ତି ବୋଲି ତନ୍ତ୍ର ଘୋଷଣା କଲା । ଫଳରେ ଶକ୍ତି ଆରାଧନା ସମାଜରେ ପ୍ରାଧାନ୍ୟ ବିସ୍ତାର କରିବା ସଙ୍ଗେ ସଙ୍ଗେ ବିଭିନ୍ନ ଦେବୀ ଉପାସନା ସୃଷ୍ଟି ହେଲା । ତନ୍ତ୍ର ବଳରେ ଅଭୟ ପ୍ରଦାନ କାରୀ ଶକ୍ତି ସ୍ୱରୂପିଣୀ ଦେବୀମାନଙ୍କୁ ନାନା ଉପାୟରେ ସନ୍ତୁଷ୍ଟ କରିବା ପାଇଁ ସାଧକମାନେ ଚେଷ୍ଟା କଲେ । ଏହାଦ୍ୱାରା ତନ୍ତ୍ର ସାଧନା ବାଟ ଦେଇ ସହସ୍ରାଧିକ ଦେବଦେବୀଙ୍କ ପୂଜା-ଉପାସନାରେ ଶକ୍ତିଧର୍ମର ପ୍ରାବଲ୍ୟ ସମାଜରେ ଦେଖାଗଲା ।

ଭାରତର ଧର୍ମଧାରାରେ ନାଥ ସଂପ୍ରଦାୟର ସ୍ଥାନ ବେଶ ଗୁରୁତ୍ୱପୂର୍ଣ୍ଣ । ନାଥ ଶବ୍ଦର ସାଧାରଣ ଅର୍ଥ ସ୍ୱାମୀ ବା ପ୍ରଭୁ । ଜୈନ, ବୌଦ୍ଧ ଓ ବଜ୍ରଯାନୀ ସିଦ୍ଧମାନଙ୍କ ମଧ୍ୟରେ ଏହି ନାଥ ପଦବୀ ବହୁଳଭାବରେ ପ୍ରଚଳିତ ଅଛି । ଡ଼ଃ ବଂଶୀଧର ମହାନ୍ତିଙ୍କ ମତରେ "ଓଡ଼ିଶାରେ ଏହି ନାଥ ଶବ୍ଦ ଅତି ସାଧାରଣ ଓ ଲୋକପ୍ରିୟ ଶବ୍ଦ । କାରଣ ଓଡ଼ିଶାର ସର୍ବଶ୍ରେଷ୍ଠ ଦେବତା 'ଜଗନ୍ନାଥ' ଶବ୍ଦରେ ନାଥ ଶବ୍ଦ ଘନିଷ୍ଠ ଭାବରେ ଜଡ଼ିତ ।" ନାଥମାନଙ୍କର ଉତ୍ପତ୍ତି ଶିବଙ୍କ ଠାରୁ ବୋଲି ନାଥମାନେ କହିଥାନ୍ତି । ଓଡ଼ିଶାରେ ଏହି

ନାଥ ସଂପ୍ରଦାୟ ସେମାନଙ୍କର ସାଧନା ଦ୍ୱାରା ସମାଜକୁ ବହୁଳ ଭାବରେ ପ୍ରଭାବିତ କରିଥିବା କଥା ବହୁ ଓଡ଼ିଆ ଗ୍ରନ୍ଥରେ ବର୍ଣ୍ଣିତ ହୋଇଛି ।

ନାଥ ଧର୍ମର ସାଧନ ପ୍ରଣାଳୀ ତଥା ଧର୍ମ ଦର୍ଶନକୁ ଭିତ୍ତି କରି ଓଡ଼ିଶାରେ ବହୁ ଗ୍ରନ୍ଥ ରଚିତ ହୋଇଥିବାର ଜଣାଯାଏ । ସାରଳା ମହାଭାରତ ଠାରୁ ଆରମ୍ଭ କରି ପଞ୍ଚସଖା ଯୁଗର ବହୁ ଗ୍ରନ୍ଥରେ ନାଥଧର୍ମର ସ୍ପଷ୍ଟ ପ୍ରଭାବ ପରିଲକ୍ଷିତ ହୁଏ । ନାଥଧର୍ମ ଦର୍ଶନରେ ପରିଲକ୍ଷିତ ସହଜ ସାଧନା, ଶିବଶକ୍ତି, ନାଦବିନ୍ଦୁ, ପିଣ୍ଡ ବ୍ରହ୍ମାଣ୍ଡବାଦ, ଷଡ଼ଚକ୍ର ସାଧନା, ଆରମ୍ଭ ଘଟ ପରଚେ, ନିସ୍ପତୀ ଯୋଗ, ହଠଯୋଗ, ସପ୍ତାଙ୍ଗ, ଅଷ୍ଟାଙ୍ଗ ଯୋଗ, କାୟାକଳ୍ପ, ଗୁରୁବାଦ, ଅବତାରବାଦ ପ୍ରଭୃତି ବିଭିନ୍ନ ତତ୍ତ୍ୱ ପରବର୍ତ୍ତୀ ପଞ୍ଚସଖା ଧର୍ମକୁ ବହୁଳ ଭାବରେ ପ୍ରଭାବିତ କରିଛି । ଏସବୁ ତତ୍ତ୍ୱ ସହିତ ବୌଦ୍ଧଧର୍ମ ଦର୍ଶନର ମଧ ନିବିଡ଼ ସଂପର୍କ ରହିଛି । ଦ୍ୱାଦଶ ଶତାବ୍ଦୀରୁ ୧୫ଶ ଶତାବ୍ଦୀ ପର୍ଯ୍ୟନ୍ତ ଓଡ଼ିଶାର ଧର୍ମଧାରାରେ ବୌଦ୍ଧ, ଶୈବ, ଶାକ୍ତ, ନାଥ ଓ ବୈଷ୍ଣବ ଧର୍ମର ପ୍ରଭାବ ପରିଲକ୍ଷିତ ହୁଏ । ଏପରିକି ଶ୍ରୀଜଗନ୍ନାଥଙ୍କ ମନ୍ଦିର ବେଢ଼ା ମଧରେ ସମୟକ୍ରମେ ସବୁ ଦେବଦେବୀ ସ୍ଥାନ ପାଇଛନ୍ତି ଓ ଭାରତର ଯେକୌଣସି ଧର୍ମାବଲମ୍ବୀ ଏଠାରେ ତାଙ୍କର ଇଷ୍ଟଦେବଙ୍କୁ ଦର୍ଶନ କରି ପାରିଛନ୍ତି ।

ମହାପ୍ରଭୁ ଜଗନ୍ନାଥ ଓଡ଼ିଆ ଜାତିର ପ୍ରାଣ ପ୍ରତିଷ୍ଠାତା । ଓଡ଼ିଶାର ଧର୍ମ, ସାହିତ୍ୟ, ସଂସ୍କୃତି ଓ ସମାଜ ସହିତ ସେ ପ୍ରାଚୀନ ଯୁଗରୁ ନିବିଡ଼ ଭାବରେ ଯୋଡ଼ି ହୋଇଯାଇଛନ୍ତି । ତାଙ୍କୁ ବାଦ ଦେଇ କୌଣସି କଥା ଚିନ୍ତା କରାଯାଇନପାରେ । ବିଭିନ୍ନ ଧର୍ମ ସଂପ୍ରଦାୟ ତାଙ୍କୁ ନେଇ ବଳିଷ୍ଠ ତଥା ପ୍ରାଣବନ୍ତ ହୋଇଛି । ଯେଉଁମାନେ ତାଙ୍କୁ ଅବମାନନା କରିଛନ୍ତି ଅଥବା ତାଙ୍କ ଉପରେ ଗୁରୁତ୍ୱ ଦେଇ ନାହାନ୍ତି ସେମାନେ ତିଷ୍ଠି ରହିବା ଅସମ୍ଭବ ହୋଇପଡ଼ିଛି । ସେଥିପାଇଁ ଜଗନ୍ନାଥ ଧର୍ମ ସଂସ୍କୃତି ଯୁଗେ ଯୁଗେ ସମସ୍ତଙ୍କୁ ପ୍ରଭାବିତ କରିଛି । ଧାଇଁ ଆସିଛନ୍ତି ଭକ୍ତ ଆଉ ଧର୍ମ ପ୍ରଚାରକ ମାନେ ଶ୍ରୀକ୍ଷେତ୍ରକୁ । ପୁଣି ଜଗନ୍ନାଥ ଧର୍ମ ଦର୍ଶନ ଓ ତତ୍ତ୍ୱ ନିକଟରେ ନିଜକୁ ସମର୍ପଣ କରି ଧନ୍ୟ ହୋଇଛନ୍ତି । ଶ୍ରୀଜଗନ୍ନାଥ ମନ୍ଦିରର ନୀତି ଓ ପୂଜା ପଦ୍ଧତି କ୍ଷେତ୍ରରେ ସେମାନେ କିଛି ପରିମାଣରେ ପରିବର୍ତ୍ତନ ଆଣିଥିଲେ ହେଁ ଅଧିକ ପରିମାଣରେ ପ୍ରଭାବିତ ହୋଇଛନ୍ତି । ଫଳରେ ମନ୍ଦିରର ପୂଜାପଦ୍ଧତି ଓ ନୀତିରେ ସମୟକ୍ରମେ ଅନେକ ପରିବର୍ତ୍ତନ ଦେଖାଦେଇଛି ।

ଶଙ୍କରାଚାର୍ଯ୍ୟଙ୍କର ଓଡ଼ିଶା ଆଗମନ ବେଳକୁ ଓଡ଼ିଶାରେ ତାନ୍ତ୍ରିକ ବୌଦ୍ଧଧର୍ମ ପ୍ରାଧାନ୍ୟ ବିସ୍ତାର କରିଥିଲା ଓ ସେ ଏହି ତାନ୍ତ୍ରିକ ବୌଦ୍ଧଧର୍ମର ବିଲୟ ସାଧନ ପାଇଁ ଚେଷ୍ଟା କରିଥିଲେ । ଏହିକାଳକୁ ଶୈବ ଓ ବୈଷ୍ଣବ ଧର୍ମ ସମାଜରେ

ପ୍ରାଧାନ୍ୟ ବିସ୍ତାର କରିଥିଲା । ଶୈବଧର୍ମର ପ୍ରାଧାନ୍ୟ ଥିବା ଭୁବନେଶ୍ୱର କ୍ଷେତ୍ରରେ ଅନନ୍ତ ବାସୁଦେବଙ୍କ ମନ୍ଦିର ନିର୍ମାଣ ଶୈବ ଓ ବୈଷ୍ଣବ ଧର୍ମ ସମନ୍ୱୟର ଅନ୍ୟ ଏକ ନିଦର୍ଶନ । ଏହି ପରିପ୍ରେକ୍ଷୀରେ ପ୍ରାଚୀ ଉପତ୍ୟକାରେ ଦ୍ୱାଦଶ ଶମ୍ଭୁ ଓ ଦ୍ୱାଦଶ ମାଧବ ମନ୍ଦିର ଗଢ଼ି ଉଠିଥିଲା । ପ୍ରତ୍ୟେକ ଶିବ ମନ୍ଦିର ନିକଟରେ ମାଧବ ମନ୍ଦିର ଥିବାରୁ ପ୍ରାଚୀ ଉପତ୍ୟକା ଏକଦା ଥିଲା ଶୈବ ଓ ବୈଷ୍ଣବ ଧର୍ମ ସମନ୍ୱୟର ପ୍ରଧାନ କ୍ଷେତ୍ର ।

ଓଡ଼ିଶାରେ ଏହି ଶୈବ ଓ ବୈଷ୍ଣବ ଧର୍ମ ସମନ୍ୱୟ କ୍ଷେତ୍ରରେ ଶଙ୍କରାଚାର୍ଯ୍ୟଙ୍କ ଭୂମିକା ମଧ୍ୟ ବେଶ୍ ଗୁରୁତ୍ୱପୂର୍ଣ୍ଣ । ସେ ଜଗନ୍ନାଥଙ୍କ ପୂଜାବିଧିରେ ସ୍ମାର୍ତ୍ତ ରୀତି ପ୍ରଚଳନ କରିଥିଲେ । ସ୍ମାର୍ତ୍ତ ପଦ୍ଧତି ବୈଦାନ୍ତିକ ଚିନ୍ତାଧାରା ଓ ଶୈବତତ୍ତ୍ୱକୁ ଆଧାର କରି ଗଢ଼ିଉଠିଥିଲା ଏବଂ ଏଥିରେ ବିଷ୍ଣୁ ମଧ୍ୟ ପ୍ରମୁଖ ସ୍ଥାନ ଲାଭ କରିଥିଲେ । ନିଜର ଏହି ସ୍ମାର୍ତ୍ତ ମତର ପ୍ରତିଷ୍ଠା ପାଇଁ ଶଙ୍କରାଚାର୍ଯ୍ୟ ପୁରୀ ବାଲିସାହିରେ ଗୋଟିଏ ମଠ ସ୍ଥାପନା କରିଥିଲେ । କାଳକ୍ରମେ ଏହି ମଠରେ ଶଙ୍କରପନ୍ଥୀମାନେ ଶ୍ରୀଗୋପାଳଙ୍କୁ ଇଷ୍ଟଦେବ ରୂପେ ଗ୍ରହଣ କରିଛନ୍ତି ବୋଲି ଆଲୋଚକ ଶ୍ରୀ ସୁରେନ୍ଦ୍ର ମହାନ୍ତି ମତବ୍ୟକ୍ତ କରିଛନ୍ତି । ତାଙ୍କ ମତରେ **"ସ୍ମାର୍ତ୍ତ ପଦ୍ଧତି କ୍ରମେ ବୈଷ୍ଣବାୟିତ ହୋଇଥିବାର ସଙ୍କେତ ଏଥିରେ ସୁସ୍ପଷ୍ଟ ।"** (ଓଡ଼ିଆ ସାହିତ୍ୟର ମଧ୍ୟପର୍ବ) । ଏଠାରେ ଉଲ୍ଲେଖ ଯୋଗ୍ୟ ଯେ ଶଙ୍କରାଚାର୍ଯ୍ୟଙ୍କ ଶ୍ରୀକ୍ଷେତ୍ର ଆଗମନର ବହୁ ପୂର୍ବରୁ ଶ୍ରୀଜଗନ୍ନାଥଙ୍କ ଠାରେ ବିଷ୍ଣୁତ୍ୱ ଆରୋପିତ ହୋଇସାରିଥିଲା । ଚତୁର୍ଦ୍ଧା ମୂର୍ତ୍ତିଙ୍କ ଆବିର୍ଭାବ ପୂର୍ବରୁ ସ୍ୱୟଂ ବିଷ୍ଣୁ ନୀଳମାଧବ ରୂପେ ନୀଳଗିରିରେ ପୂଜା ପାଉଥିଲେ । ମହାପ୍ରଳୟ କାଳରେ ନୀଳଗିରିର ଅକ୍ଷୟବଟ ମୂଳେ ମହର୍ଷି ମାର୍କଣ୍ଡେୟ ନାରାୟଣ ମୂର୍ତ୍ତିଙ୍କୁ ଦର୍ଶନ କରିଥିଲେ । ସ୍କନ୍ଦ ପୁରାଣରେ ଶଙ୍ଖ, ଚକ୍ର, ଗଦା, ପଦ୍ମ ଆଦି ଧାରଣ କରିଥିବା ନୀଳମାଧବଙ୍କ ଚତୁର୍ଭୁଜ ମୂର୍ତ୍ତିର ମନୋହର ରୂପ ବର୍ଣ୍ଣିତ ହୋଇଛି । ଜଗନ୍ନାଥ ଓ ବଳଭଦ୍ର ମଧ୍ୟ ଚତୁର୍ଭୁଜ ମୂର୍ତ୍ତି ହୋଇ ଶଙ୍ଖ-ଚକ୍ର-ଗଦା-ପଦ୍ମ ଧାରଣ କରିଥିଲେ । ଶ୍ରୀମଦ୍‌ଭାଗବତ ଗୀତା, ବୃହଦ୍ ନାରଦୀୟ ପୁରାଣ ଓ ବ୍ରହ୍ମ ପୁରାଣ ପ୍ରଭୃତିରେ ପୁରୁଷୋତ୍ତମ ବିଷ୍ଣୁଙ୍କ ସଂପର୍କୀୟ ବିବରଣୀ ଉଲ୍ଲେଖ ଥିବାରୁ ଉତ୍କଳରେ ବହୁ ପ୍ରାଚୀନ କାଳରୁ ବୈଷ୍ଣବ ଧର୍ମ ପ୍ରଚଳିତ ଥିବା ଅନୁମିତ ହୁଏ । ତେବେ ଓଡ଼ିଶାରେ ଭୌମକର ରାଜତ୍ୱ ସମୟରେ ପ୍ରଥମେ ଜଗନ୍ନାଥଙ୍କ ଠାରେ ବିଷ୍ଣୁତ୍ୱ ଆରୋପ କରାଗଲା ଓ ଖ୍ରୀଷ୍ଟୀୟ ୭ମ ବା ୮ମ ଶତାବ୍ଦୀ ବେଳକୁ ବୁଦ୍ଧ, ଜଗନ୍ନାଥ ଓ ବିଷ୍ଣୁ ଅଭିନ୍ନ ରୂପେ ପରିକଳ୍ପିତ ହୋଇ ସାରିଥିଲେ । ସ୍ମାର୍ତ୍ତ ପଦ୍ଧତିର ପ୍ରବକ୍ତା ଶଙ୍କରାଚାର୍ଯ୍ୟ ଏଥି ସହିତ ସ୍ମାର୍ତ୍ତ ରୀତିକୁ ଜଗନ୍ନାଥ ମନ୍ଦିରରେ ପ୍ରଚଳନ କରାଇଲେ ।

'ଶ୍ରୀ' ସଂପ୍ରଦାୟର ପ୍ରତିଷ୍ଠାତା ରାମାନୁଜାଚାର୍ଯ୍ୟ ଦ୍ୱାଦଶ ଶତାବ୍ଦୀରେ ଶ୍ରୀକ୍ଷେତ୍ର ଆସିଥିଲେ । ଉକ୍ତ ସଂପ୍ରଦାୟ ଅନ୍ତର୍ଭୁକ୍ତ ଭକ୍ତମାନଙ୍କୁ ତାମିଲ ଭାଷାରେ 'ଆଲବର' କୁହାଯାଉଥିଲା ଓ ଏହାର ପ୍ରଥମ ଗୁରୁ ଥିଲେ ନାଥମୁନି । ଶ୍ରୀକ୍ଷେତ୍ରରେ ଧର୍ମ ପ୍ରଚାର କରିବା ପାଇଁ ଆସିଥିବା ବିଶିଷ୍ଟାଦ୍ୱୈତବାଦର ପ୍ରବର୍ତ୍ତକ ରାମାନୁଜଙ୍କ ଠାରୁ ବେଦାନ୍ତ ବ୍ୟାଖ୍ୟା ଶୁଣି ଚୋଡ଼ଗଙ୍ଗ ଦେବ ମୁଗ୍ଧ ହୋଇଯାଇଥିଲେ । ସେ ଜଗନ୍ନାଥ ମନ୍ଦିରରେ ପାଞ୍ଚରାତ୍ର ପଦ୍ଧତିର ପ୍ରଚଳନ କରିଥିଲେ । ବ୍ୟୂହ, ଅବତାର ଓ ଶକ୍ତି- ଏହି ପଦ୍ଧତିର ପ୍ରଧାନ ତିନିଗୋଟି ବିଭାବ । ପ୍ରତ୍ୟେକ ବ୍ୟୂହରେ ବିଷ୍ଣୁଙ୍କର ଜଣେ ଅବତାର ନିଜର ଶକ୍ତି ସହିତ ସମନ୍ୱିତ ହୋଇ ରହିଥାନ୍ତି । ଏହି ପଦ୍ଧତିରେ ପୁରୁଷ ପ୍ରକୃତିଠାରୁ ଭିନ୍ନ, ପୁଣି ଅଭିନ୍ନ ରୂପେ ପରିକଳ୍ପିତ । ନିଶାକାଳରେ ମହାବିଷ୍ଣୁ ପ୍ରକୃତି ବା ନିଜ ଶକ୍ତିଙ୍କଠାରୁ ବିଚ୍ଛିନ୍ନ ହୋଇ ବାସୁଦେବରେ ପରିଣତ ହୁଅନ୍ତି । ଏହି ବାସୁଦେବଙ୍କ ଠାରୁ ସଂକର୍ଷଣ, ସଂକର୍ଷଣଙ୍କ ଠାରୁ ପ୍ରଦ୍ୟୁମ୍ନ ଓ ପ୍ରଦ୍ୟୁମ୍ନଙ୍କ ଠାରୁ ଅନିରୁଦ୍ଧ ପ୍ରଭୃତି ଅବତାର ସୃଷ୍ଟି ହୁଏ । ଏଥି ପୂର୍ବରୁ ଅଦ୍ୱୟ ଜଗନ୍ନାଥଙ୍କ ସହିତ କୌଣସି ଶକ୍ତି ସମନ୍ୱିତ ହୋଇନଥିଲେ । ପ୍ରଥମ କରି ରାମାନୁଜ ତାଙ୍କ ସହିତ ଶକ୍ତିଙ୍କୁ ଯୋଗ କରି ଶ୍ରୀମନ୍ଦିର ବେଢ଼ା ଭିତରେ ଶ୍ରୀ ବା ଲକ୍ଷ୍ମୀଙ୍କ ପାଇଁ ଗୋଟିଏ ମନ୍ଦିର ନିର୍ମାଣ କରିଥିଲେ । ଶୁଣାଯାଏ ସେବକ ସଂପ୍ରଦାୟ ଏଥିରେ ପ୍ରତିବାଦ କରିଥିଲେ ମଧ ରାଜାଙ୍କ ସମର୍ଥନ ଲାଭ ଯୋଗୁଁ ପାଞ୍ଚରାତ୍ର ପଦ୍ଧତି ଜଗନ୍ନାଥଙ୍କ ମନ୍ଦିରରେ ପ୍ରଚଳିତ ହୋଇଥିଲା । ସେ ପୁରୀରେ ଦୁଇଟି ମଠ ପ୍ରତିଷ୍ଠା କରିଥିଲେ । ଗୋଟିଏ ନିଜ ନାମରେ ଓ ଅନ୍ୟଟି ଶିଷ୍ୟ ଗୋବିନ୍ଦ ଗୁରୁଙ୍କ ଠାରୁ ପାଇଥିବା 'ଏମ୍-ପେରୁମାଡ୍-ଆର୍' ଉପାଧି ଅନୁଯାୟୀ ଓଡ଼ିଆ ଭାଷାରେ 'ଏମ୍ବାର' ବା 'ଏମାର' ନାମରେ ।

ଦକ୍ଷିଣ ଭାରତୀୟ ଧର୍ମ ପ୍ରଚାରକମାନଙ୍କ ମଧରେ ମଧ୍ୱାଚାର୍ଯ୍ୟ ଅନ୍ୟତମ । ତାଙ୍କ ଦ୍ୱାରା ପ୍ରତିପାଦିତ ତତ୍ତ୍ୱ ଶ୍ରୀମଧ୍ୱ ସିଦ୍ଧାନ୍ତ ରୂପେ ଗୃହୀତ । ତାଙ୍କ ମତରେ ଜୀବର ପ୍ରଧାନ ଲକ୍ଷ୍ୟ ହେଉଛି ମୋକ୍ଷ ଓ ହରିଙ୍କ ପ୍ରତି ନିର୍ମଳ ଭକ୍ତି ଦ୍ୱାରା ଏହି ମୋକ୍ଷ ଲାଭ କରାଯାଇପାରେ । ନିଜର ସ୍ତ୍ରୀ, ପୁତ୍ର ଆଦି ପରିବାର ଅପେକ୍ଷା ଭଗବାନଙ୍କ ନିକଟରେ ଦୃଢ଼ ଭାବରେ ସ୍ନେହ ରଖିବା ହେଉଛି ବାସ୍ତବରେ ଭକ୍ତି । ଭକ୍ତି ଦ୍ୱାରା ହିଁ ଜୀବ ସାଂସାରିକ ଦୁଃଖରୁ ମୁକ୍ତି ଲାଭ କରେ । ଭକ୍ତି ରହିତ ଜ୍ଞାନ ତଥା ଜ୍ଞାନ ରହିତ ଭକ୍ତି ଦ୍ୱାରା ମୋକ୍ଷ ସାଧନ ସମ୍ଭବ ନୁହେଁ । ମଧ୍ୱାଚର୍ଯ୍ୟ ବିଷ୍ଣୁ ଓ ଲକ୍ଷ୍ମୀଙ୍କ ପୁତ୍ର ରୂପେ ବାୟୁଙ୍କୁ କଳ୍ପନା କରିଛନ୍ତି । ଏହି ବାୟୁ ବ୍ୟତୀତ ଜୀବର ମୁକ୍ତି ନାହିଁ । ଯୋଗାଚାର କ୍ଷେତ୍ରରେ ବାୟୁର ଭୂମିକା ଗୁରୁତ୍ୱପୂର୍ଣ୍ଣ । ଗଙ୍ଗବଂଶୀ ସମ୍ରାଟମାନଙ୍କ ପୃଷ୍ଠପୋଷକତାରେ ମଧ୍ୱାଚାର୍ଯ୍ୟ ପନ୍ଥୀ

ସାଧକମାନେ ଓଡ଼ିଶାରେ ବୈଷ୍ଣବ ଧର୍ମ ପ୍ରଚାର କାର୍ଯ୍ୟରେ ନିଯୁକ୍ତ ହୋଇଥିଲେ । ୧୩ଶ ଶତାବ୍ଦୀରେ ଏହି ସଂପ୍ରଦାୟର ନରସିଂହ ମୁନି, ନରହରି ତୀର୍ଥ, ଜଗନ୍ନାଥ ତୀର୍ଥ ଓଡ଼ିଶାରେ ବୈଷ୍ଣବ ଧର୍ମ ପ୍ରଚାରରେ ଲିପ୍ତ ଥିଲେ । ୧୪ଶ ଶତାବ୍ଦୀରେ ଏହି ପ୍ରସାରକୁ ନରସିଂହ ଭାରତୀ, ବାସୁଦେବ ଭାରତୀ ଓ ରାଘବ ପ୍ରମୁଖ ବୈଷ୍ଣବଗଣ ଆଗେଇ ନେଇଥିଲେ । ପରବର୍ତ୍ତୀ ସମୟରେ ଶ୍ରୀଚୈତନ୍ୟ ନିଜର ଗୁରୁ ପରମ୍ପରାରେ ମଧ୍ୱାଚାର୍ଯ୍ୟଙ୍କୁ ସ୍ୱୀକାର କରିଥିଲେ ହେଁ ତାଙ୍କର ଜ୍ଞାନମିଶ୍ରା ସାଧନ ପ୍ରଣାଳୀକୁ ଗ୍ରହଣ କରିନଥିଲେ । କିନ୍ତୁ ଉତ୍କଳୀୟ ବୈଷ୍ଣବ ଧର୍ମାବଲମ୍ବୀ ନାମରେ ପରିଚିତ ପଞ୍ଚସଖାଙ୍କ ଦ୍ୱାରା ମଧ୍ୱାଚାର୍ଯ୍ୟଙ୍କ ଯୋଗାଚାର ସାଧନା ଅଧିକ ଆଦରଲାଭ କରିଥିଲା ।

୧୩ଶ ଶତାବ୍ଦୀରେ ଅନ୍ୟତମ ବିଶିଷ୍ଟ ବୈଷ୍ଣବ ବିଷ୍ଣୁସ୍ୱାମୀ ଶ୍ରୀକ୍ଷେତ୍ରରେ ପଦାର୍ପଣ କରିଥିଲେ । ତାଙ୍କ ପ୍ରବର୍ତ୍ତିତ ସଂପ୍ରଦାୟର ନାମ **'ବିଷ୍ଣୁସ୍ୱାମୀ ସଂପ୍ରଦାୟ'** ବା **'ରୁଦ୍ର ସଂପ୍ରଦାୟ'** । **'ଓଁ ରାମକୃଷ୍ଣାୟ ନମଃ'** ଓ **'ଓଁ ରାମକୃଷ୍ଣ ହରି'** ଏହି ସଂପ୍ରଦାୟର ବୀଜମନ୍ତ୍ର ରୂପେ ଗୃହୀତ । କୃଷ୍ଣଙ୍କ ଅପେକ୍ଷା ରାମଙ୍କର ପ୍ରାଧାନ୍ୟ ଓ ଜଗନ୍ନାଥଙ୍କୁ ଶ୍ରୀରାମ ରୂପେ ପରିକଳ୍ପନା ଏହି ସଂପ୍ରଦାୟ ଦ୍ୱାରା ସ୍ୱୀକୃତ । ବିଷ୍ଣୁସ୍ୱାମୀଙ୍କ ଦ୍ୱାରା ଶ୍ରୀକ୍ଷେତ୍ରରେ ''ବିଷ୍ଣୁସ୍ୱାମୀ ମଠ'' ସ୍ଥାପିତ ହୋଇଥିଲା । ଶ୍ରୀଜଗନ୍ନାଥ ଓ ରାମଙ୍କୁ ଅଭିନ୍ନ ପରିକଳ୍ପନା କରି ଏହି ସଂପ୍ରଦାୟର ସାଧକମାନେ ସାଧନା ରତ ଥିଲେ ।

ବୈଷ୍ଣବଧର୍ମ ପ୍ରବକ୍ତାମାନଙ୍କ ମତରେ ୧୩ଶ ଶତାବ୍ଦୀରେ ରାମାନନ୍ଦ ବୈଷ୍ଣବଧର୍ମର ବ୍ୟାପକ ପ୍ରସାର କରିଥିଲେ । କୃଷ୍ଣଙ୍କ ଅପେକ୍ଷା ରାମଙ୍କୁ ସେ ପୂର୍ଣ୍ଣବ୍ରହ୍ମ ରୂପେ ସ୍ୱୀକାର କରୁଥିଲେ । ତାଙ୍କ ପ୍ରଚାରିତ ଧର୍ମରେ ଜାତିଭେଦର ବିଚାର ନଥିଲା । ରାମାନନ୍ଦ ଥିଲେ ଏକେଶ୍ୱରବାଦୀ । ଏହି ପ୍ରକାର ଚିନ୍ତାଧାରା ଯୋଗୁଁ ବହୁ ମୁସଲମାନ ମଧ ତାଙ୍କର ଶିଷ୍ୟତ୍ୱ ଗ୍ରହଣ କରିଥିଲେ । ସେ ଜାତିଭେଦର ଘୋର ବିରୋଧୀ ଥିବାରୁ ଯେକୌଣସି ଜାତିର ବ୍ୟକ୍ତି ବୈଷ୍ଣବ ଧର୍ମ ଗ୍ରହଣ କରିପାରିବ ବୋଲି କହୁଥିଲେ । ତେଣୁ ମୋଚି ରାମଦାସଙ୍କ ଠାରୁ ଆରମ୍ଭ କରି ଉଚ୍ଚକୁଳରେ ଜାତ ତୁଳସୀ ଦାସଙ୍କ ପର୍ଯ୍ୟନ୍ତ ସମସ୍ତେ ତାଙ୍କ ପ୍ରଚାରିତ ବୈଷ୍ଣବ ଧର୍ମରେ ଦୀକ୍ଷିତ ହୋଇଥିଲେ । ବିଷ୍ଣୁସ୍ୱାମୀ ସଂପ୍ରଦାୟ ଓ ରାମାନନ୍ଦୀ ସଂପ୍ରଦାୟ ଉଭୟଙ୍କ ପାଇଁ ଜଗନ୍ନାଥ ଥିଲେ ରାମ ରୂପୀ ପୂର୍ଣ୍ଣବ୍ରହ୍ମ । ଶ୍ରୀକ୍ଷେତ୍ରରେ ଏହି ଦୁଇ ସଂପ୍ରଦାୟର ମଠ ପ୍ରତିଷ୍ଠିତ ହେବା ସଙ୍ଗେସଙ୍ଗେ ବହୁ ଶିଷ୍ୟ ବୈଷ୍ଣବ ଧର୍ମ ପ୍ରଚାରରେ ନିଜକୁ ନିୟୋଜନ କରିବା ଦ୍ୱାରା ଜଗନ୍ନାଥ ମନ୍ଦିରର ପୂଜା ପଦ୍ଧତି ଏବଂ ରାଜନୀତି ଉପରେ ଗଭୀର ପ୍ରଭାବ ପଡ଼ିଥିଲା ।

ନିମ୍ବାର୍କଙ୍କ ପ୍ରଚାରିତ ବୈଷ୍ଣବ ଧର୍ମତତ୍ତ୍ୱ ଦ୍ୱୈତାଦ୍ୱୈତବାଦ ନାମରେ ସୁପରିଚିତ । ତାଙ୍କ ମତରେ ଜୀବାତ୍ମା ଓ ପରମାତ୍ମା ଅଭିନ୍ନ ରୂପେ ପରିକଳ୍ପିତ । ସେ ପରମାତ୍ମାଙ୍କୁ ଶ୍ରୀକୃଷ୍ଣ ଓ ଜୀବାତ୍ମାକୁ ରାଧା ଭାବରେ ଗ୍ରହଣ କରିଛନ୍ତି । ତାଙ୍କ ଦ୍ୱାରା ପ୍ରଚାରିତ ଏହିଧର୍ମ ଦର୍ଶନ ଓଡ଼ିଶାରେ ଅଧିକ ଲୋକପ୍ରିୟ ହୋଇଉଠିଲା ।

ବୈଷ୍ଣବ ସାଧକ ବଲ୍ଲଭାଚାର୍ଯ୍ୟ ଥିଲେ ପ୍ରାୟତଃ ଶ୍ରୀଚୈତନ୍ୟଙ୍କ ସମସାମୟିକ । ତାଙ୍କ ଧର୍ମତତ୍ତ୍ୱ ଶଙ୍କରଙ୍କ ଅଦ୍ୱୈତବାଦର ନିକଟବର୍ତ୍ତୀ ପରି ଜଣାପଡୁଥିଲେ ହେଁ ନିମ୍ବାର୍କଙ୍କ ରାଧାକୃଷ୍ଣ ତତ୍ତ୍ୱ ଦ୍ୱାରା ବହୁଳ ଭାବରେ ପ୍ରଭାବିତ । ଶ୍ରୀକ୍ଷେତ୍ରରେ ବଲ୍ଲଭାଚର୍ଯ୍ୟ ସଂପ୍ରଦାୟ ଦ୍ୱାରା ବହୁ ମଠ ପ୍ରତିଷ୍ଠିତ ହୋଇଥିଲା ।

ଓଡ଼ିଶାରେ ଦ୍ୱାଦଶ ଶତାବ୍ଦୀର ପ୍ରଧାନ କବି ଜୟଦେବ ରାଧାକୃଷ୍ଣଙ୍କୁ କେନ୍ଦ୍ର କରି ଶୃଙ୍ଗାର ରସାଶ୍ରିତ 'ଗୀତଗୋବିନ୍ଦ' କାବ୍ୟ ଓ ବ୍ରଜବୋଲି ଭାଷାରେ କେତେକ ପଦାବଳୀ ରଚନା କରିଥିଲେ । ଏହି ସମୟରେ ଚଣ୍ଡୀଦାସ ଓ ବିଦ୍ୟାପତିଙ୍କର କାନ୍ତକୋମଳ ପଦାବଳୀର ମଧୁର ମୂର୍ଚ୍ଛନା ମଧ ଓଡ଼ିଶାରେ ପ୍ରବାହିତ ହୋଇଥିଲା । ସୂର୍ଯ୍ୟବଂଶୀ ସମ୍ରାଟ କପିଳେନ୍ଦ୍ରଦେବଙ୍କ ସମୟରେ ରଚିତ ସାରଳା ମହାଭାରତରେ ବୈଷ୍ଣବ ଧର୍ମର ବହୁ ତତ୍ତ୍ୱ ସନ୍ନିବେଶିତ ହୋଇଥିବାର ଜଣାଯାଏ । ଜଗନ୍ନାଥ ତତ୍ତ୍ୱ ଉପରେ ପର୍ଯ୍ୟବସିତ ମୂଷଳୀ ପର୍ବ ଏ ଦୃଷ୍ଟିରୁ ଅତି ଗୁରୁତ୍ୱପୂର୍ଣ୍ଣ । ଏଥିରେ ମହାବିଷ୍ଣୁ ଶ୍ରୀକୃଷ୍ଣଙ୍କ ଅର୍ଦ୍ଧଦଗ୍ଧ ପିଣ୍ଡ ଦାରୁମୂର୍ତ୍ତି ଜଗନ୍ନାଥରେ ପରିଣତ ହୋଇଥିବା ପ୍ରସଙ୍ଗ ବର୍ଣ୍ଣିତ ହୋଇଛି । ସାରଳା ଦାସ ଏହି ଦାରୁ ମୂର୍ତ୍ତି ଜଗନ୍ନାଥଙ୍କୁ ବୌଦ୍ଧ ଅବତାର ବୋଲି ପ୍ରକାଶ କରିଛନ୍ତି ।

*"ବଉଧ ଅବତାରେ ନିଶ୍ଚେ ବିହରିବୁ*
*ଦୁଷ୍ଟଜନ ମାରି ସଜ୍ଜନଙ୍କୁ ପାଳିବୁ ।*
*କ୍ଷୀର ସିନ୍ଧୁ ତୀରେ ତାହା ଦେବେ ଛନ୍ତି କହି*
*ଯିବି ନୀଳଗିରିକୁ ମୁଁ ଏଥେ ମିଥ୍ୟା ନାହିଁ ।"*

ପୁଣି ଶଙ୍କରଙ୍କ ସ୍ମାର୍ତ୍ତ ପଦ୍ଧତି, ରାମାନୁଜଙ୍କ ପାଞ୍ଚରାତ୍ର ପଦ୍ଧତି, ମଧ୍ୱାଚାର୍ଯ୍ୟ, ବିଷ୍ଣୁସ୍ୱାମୀ ଓ ରାମାନନ୍ଦଙ୍କ ବୈଷ୍ଣବ ଦର୍ଶନ ତତ୍ତ୍ୱଦ୍ୱାରା ଜଗନ୍ନାଥଙ୍କ ପୂଜା ପଦ୍ଧତି ଅନେକାଂଶରେ ପ୍ରଭାବିତ ହୋଇଥିଲା । ଏଥି ସହିତ ବହୁ ପୂର୍ବରୁ ଯୋଗାଚାର ସାଧନା ମଧ ଓଡ଼ିଶାର ଆଧ୍ୟାତ୍ମିକ ଜଗତରେ ପ୍ରତିଷ୍ଠିତ ହୋଇଥିଲା । ସାରଳା ଦାସ ଯୋଗ ସାଧନା, ଶୂନ୍ୟବାଦ ଓ ଜ୍ଞାନମିଶ୍ରା ଭକ୍ତି ପ୍ରସଙ୍ଗ ବହୁଳ ଭାବରେ ମହାଭାରତରେ ବର୍ଣ୍ଣନା କରିଛନ୍ତି । ଏଥିରେ ପାଣ୍ଡବମାନଙ୍କ

ବନବାସ ସମୟରେ ଶରୀର ଭେଦ ବର୍ଣ୍ଣନା ପ୍ରସଙ୍ଗରେ ପିଣ୍ଡବ୍ରହ୍ମାଣ୍ଡ ତତ୍ତ୍ୱ ପ୍ରକାଶ ପାଇଛି । ତାଙ୍କ ମତରେ ନାଭିଠାରୁ ମସ୍ତକ ମଧ୍ୟରେ ତେତିଶ କୋଟି ଦେବତା ଅବସ୍ଥାନ କରିଛନ୍ତି । ଚର୍ଯ୍ୟାପଦ ଓ ନାଥ ସିଦ୍ଧସାଧକମାନଙ୍କ ସାହିତ୍ୟରେ ଏହି ଯୋଗ ସାଧନା କଥା ବିଶଦ ଭାବରେ ସ୍ଥାନ ପାଇଥିଲା । ଶୈବ, ଶାକ୍ତ ଓ ନାଥଧର୍ମର ଦର୍ଶନ ତତ୍ତ୍ୱ ମଧ ସାରଳା ସାହିତ୍ୟରେ ଅତି ସ୍ପଷ୍ଟ ଭାବରେ ପ୍ରତିଫଳିତ ହୋଇଛି ।

ଅତଏବ ପଞ୍ଚସଖାଙ୍କ ଆବିର୍ଭାବ ସମୟକୁ ଓଡ଼ିଶାର ଆଧ୍ୟାତ୍ମିକ ଜଗତ ଓ ଶ୍ରୀଜଗନ୍ନାଥଙ୍କୁ କେନ୍ଦ୍ର କରି ଗଢ଼ି ଉଠିଥିବା ଓଡ଼ିଶାର ଧାର୍ମିକ ପରମ୍ପରାର ସ୍ୱରୂପ ଅତ୍ୟନ୍ତ ସ୍ପଷ୍ଟ ହୋଇଉଠିଥିଲା । ମହାବୌଦ୍ଧ ରୂପେ ପରିକଳ୍ପିତ ଶ୍ରୀଜଗନ୍ନାଥ ସମ୍ପୂର୍ଣ୍ଣ ରୂପେ ବୁଦ୍ଧତ୍ୱ ପରିହାର କରିନଥିଲେ । ଶଙ୍କରାଚାର୍ଯ୍ୟ ତାଙ୍କ ଠାରେ ସ୍ମାର୍ତ୍ତ ପଦ୍ଧତି ମାଧ୍ୟମରେ ବିଷ୍ଣୁତ୍ୱ ଆରୋପ କରି ବିଷ୍ଣୁଙ୍କର ପ୍ରାଧାନ୍ୟ ବିସ୍ତାର କଲେ । ରାମାନୁଚାର୍ଯ୍ୟ ଜଗନ୍ନାଥଙ୍କ ସହିତ ଶକ୍ତିଙ୍କୁ ଯୋଗ କଲେ ଓ ମଧ୍ୱାଚାର୍ଯ୍ୟ ବିଷ୍ଣୁ ଓ ଲକ୍ଷ୍ମୀଙ୍କ ପୁତ୍ର ରୂପେ ବାୟୁଙ୍କୁ ପରିକଳ୍ପନା କରି ଯୋଗ ସାଧନା ଉପରେ ଅଧିକ ଗୁରୁତ୍ୱ ଦେଇଥିଲେ । ବୈଷ୍ଣବ ଆଚାର୍ଯ୍ୟ ରାମାନନ୍ଦ ଓ ବିଷ୍ଣୁସ୍ୱାମୀଙ୍କ ଧର୍ମତତ୍ତ୍ୱରେ ଶ୍ରୀଜଗନ୍ନାଥ ପୂର୍ଣ୍ଣବ୍ରହ୍ମ ରାମ ରୂପେ ପରିକଳ୍ପିତ ହେଲେ । ଏହିପରି ଭାବରେ ଶ୍ରୀଜଗନ୍ନାଥ ଥିଲେ ସର୍ବଧର୍ମ ସମନ୍ୱୟର ଦେବତା । ରାଧାକୃଷ୍ଣଙ୍କୁ ଉପଜୀବ୍ୟ କରି ସହଜିଆ ପ୍ରେମଭକ୍ତି ତତ୍ତ୍ୱ ଯେ ସେତେବେଳକୁ ଓଡ଼ିଶାରେ ଅପରିଚିତ ଥିଲା ତାହା ନୁହେଁ- ଜୟଦେବଙ୍କ 'ଗୀତଗୋବିନ୍ଦ' ରେ ଏହାର ଉତ୍କର୍ଷ ପ୍ରତିପାଦିତ ହୋଇଛି । ତ୍ରୟୋଦଶ ଶତାବ୍ଦୀବେଳକୁ ଦ୍ୱିଭୁଜରେ ବଂଶୀ ଧାରଣ କରିଥିବା କୃଷ୍ଣ 'ଗୋପୀନାଥ' ମୂର୍ତ୍ତି ଓଡ଼ିଶାରେ ଲୋକପ୍ରିୟତା ଅର୍ଜନ କରିଥିଲା ।

ସହଜିଆ ପ୍ରେମଭକ୍ତି ତତ୍ତ୍ୱ ସମାଜରେ ନିନ୍ଦିତ ହୋଇ ପଡ଼ିଥିବା କଥା ସାରଳା ଦାସଙ୍କ ସହଜ ସୁନ୍ଦରୀ ଓ ଖନିକାରର ଜନ୍ମବୃତ୍ତାନ୍ତ ବର୍ଣ୍ଣନା ପ୍ରସଙ୍ଗରୁ ଅନୁମିତ ହୁଏ । ତେଣୁ ରାଧାକୃଷ୍ଣଙ୍କ ପ୍ରେମଭକ୍ତି ତତ୍ତ୍ୱ ସମାଜରେ ବଞ୍ଚି ରହିଥିଲେ ମଧ ତାହା ବ୍ୟାପକ ହୋଇପାରି ନଥିଲା । ଅନ୍ୟ ପକ୍ଷରେ ଏହାର ସ୍ୱର ଥିଲା କ୍ଷୀଣ । ଶ୍ରୀଚୈତନ୍ୟଙ୍କ ଓଡ଼ିଶା ଆଗମନ ପୂର୍ବରୁ ରାୟ ରାମାନନ୍ଦଙ୍କ ପରି ଅଳ୍ପ କେତଜଣ ସାଧକ ନିଜର ସାଧନ ତତ୍ତ୍ୱ ଭିତରେ ସହଜିଆ ପ୍ରେମଭକ୍ତି ଧାରାକୁ ଉଜ୍ଜୀବିତ କରି ରଖିଥିଲେ । ଶ୍ରୀଚୈତନ୍ୟ ରାଧାକୃଷ୍ଣ ପ୍ରେମଭକ୍ତି ତତ୍ତ୍ୱ ସଂପର୍କରେ କିଛି ଜାଣି ନଥିଲେ ଓ ପ୍ରଥମେ ସେ ଏ ବିଷୟ ରାୟରାମାନନ୍ଦଙ୍କ ଠାରୁ ଶିକ୍ଷାଲାଭ କଲେ । 'ଶ୍ରୀ ଚୈତନ୍ୟ ଚରିତାମୃତ'ରେ ଏକଥା ବର୍ଣ୍ଣିତ ହୋଇଛି-

*"ଏ ସବ୍ ଶିଖାଇଲ ମୋରେ ରାୟ ରାମାନନ୍ଦ*
*ସେ ସବ୍ ଶୁନିତେ ହୟ ପରମ ଆନନ୍ଦ ।"* *(ଅନ୍ତଲୀଳା)*

ରାୟ ରାମାନନ୍ଦ ପୂର୍ବରୁ ରାଧାକୃଷ୍ଣ ପ୍ରେମତତ୍ତ୍ୱ ସମ୍ବଳିତ ସାଧନା ସଂପର୍କରେ ଅବହିତ ଥିବା ଏଥିରୁ ପ୍ରମାଣିତ ହୁଏ । ସାଧାରଣତଃ ଏହା ହିଁ ଥିଲା ପଞ୍ଚସଖା ପୂର୍ବବର୍ତ୍ତୀ ଓଡ଼ିଶାର ଆଧ୍ୟାତ୍ମିକ ଅବସ୍ଥା ।

## ଅଚ୍ୟୁତାନନ୍ଦଙ୍କ ଧର୍ମ ଦର୍ଶନ-

ଓଡ଼ିଶାର ବୈଷ୍ଣବ ଧର୍ମ ଶ୍ରୀଜଗନ୍ନାଥଙ୍କୁ କେନ୍ଦ୍ରକରି ଗଢ଼ି ଉଠିଥିବାରୁ ଏହାକୁ ଜଗନ୍ନାଥ ଧର୍ମ କହିଲେ ଅତ୍ୟୁକ୍ତି ହେବନାହିଁ । ତେଣୁ ଓଡ଼ିଶାର ପ୍ରାୟତଃ ସବୁ ଧର୍ମ ଗ୍ରନ୍ଥରେ ଜଗନ୍ନାଥଙ୍କର ମହିମା ପ୍ରଖ୍ୟାପିତ ହୋଇଛି ଓ ସାଧୁସନ୍ଥମାନଙ୍କର ସେ ହେଉଛନ୍ତି ପ୍ରଧାନ ଆରାଧ୍ୟ ଦେବତା । ତାଙ୍କ ସଂପର୍କରେ ଯେତେ ଆଲୋଚନା କଲେ ବା ତାଙ୍କର ଗୁଣ କୀର୍ତ୍ତନ ଯେତେ କଲେ ମଧ୍ୟ ସେ ସେତିକି ପରିମାଣରେ ଅବୋଧ ତଥା ରହସ୍ୟମୟ ହୋଇ ରହିଛନ୍ତି । ସେଥିପାଇଁ ଜଗନ୍ନାଥ ଧର୍ମ ଦର୍ଶନ ହେଉଛି ଅଗାଧ ସମୁଦ୍ର-ଯାହାର ବିସ୍ତୃତି କଳନା କରିହେବ ନାହିଁ ।

ହଜାର ହଜାର ବର୍ଷ ଧରି ବହୁ ଭକ୍ତ, ସାଧୁ-ସନ୍ଥ, ସାଧକ, ଧର୍ମ-ପ୍ରଚାରକ ଶ୍ରୀକ୍ଷେତ୍ର ଆସିଛନ୍ତି ନିଜ ନିଜର ମତବାଦ ପ୍ରଚାର କରିବା ଉଦ୍ଦେଶ୍ୟରେ । ସମସ୍ତଙ୍କୁ ଆକର୍ଷିତ କରି ଜଗନ୍ନାଥ ଧର୍ମ ନିଜର କରି ପାରିଛି ହେଲେ କାହା ପାଖରେ ନିଜର ମୌଳିକ ସତ୍ତାକୁ ହଜାଇ ଦେଇନାହିଁ । ବରଂ ସମସ୍ତଙ୍କୁ ପ୍ରଭାବିତ କରି ନିଜ ଧର୍ମ ସଂସ୍କୃତିର ମୋହର ଦେଇ ଛାଡ଼ି ଦେଇଛି । ବିଭିନ୍ନ ଧର୍ମମତବାଦୀମାନଙ୍କୁ ଆତିଥ୍ୟ ପ୍ରଦାନ କରିଥିଲେ ହେଁ ତା ମୂଳରେ ରହିଛି ଓଡ଼ିଶାର ଜଗନ୍ନାଥ ଧର୍ମ । ଯିଏ ଯେତେ ପ୍ରକାରେ ଧର୍ମତତ୍ତ୍ୱ ବଖାଣିଲେ ବି ଶେଷରେ ଯାଇ ପହଞ୍ଚିଛନ୍ତି ସେଇ ଜଗନ୍ନାଥଙ୍କ ପାଖରେ । ସେହିପରି ଓଡ଼ିଶାର ସାଧୁସନ୍ଥମାନେ ଅନ୍ୟାନ୍ୟ ଧର୍ମକୁ ସ୍ୱୀକାର କରୁଥିଲେ ହେଁ ନିଜର ଧର୍ମକୁ କେବେହେଲେ ଛାଡ଼ି ପାରିବେ ନାହିଁ- ଏହା ହେଉଛି ଓଡ଼ିଶାର ଧର୍ମ-ଜଗତର ମୂଳକଥା । ସେଥିପାଇଁ ଦିବାକର ଦାସ 'ଶ୍ରୀଜଗନ୍ନାଥ ଚରିତାମୃତ'ରେ କହିଛନ୍ତି-

*"ସମସ୍ତ ବୈଷ୍ଣବ ପୂଜିବ । ଆପଣା ସୂତ୍ର ନ ଛାଡ଼ିବ ।*
*ସମସ୍ତ ସଙ୍ଗେ ପ୍ରୀତି ହେବା ନିଜ ଭାବରେ ଦୃଢ଼ ଥିବ ।"*

ଓଡ଼ିଶାର ବୈଷ୍ଣବମାନେ ଶ୍ରୀଜଗନ୍ନାଥଙ୍କୁ ପରଂବ୍ରହ୍ମ ଭାବରେ ଗ୍ରହଣ କରିଥିଲେ ଓ ସେ ପରଂବ୍ରହ୍ମଙ୍କୁ ଲାଭ କରିବା ପାଇଁ ବ୍ରହ୍ମଜ୍ଞାନ ସାଧନାର ଆବଶ୍ୟକତା ରହିଛି ବୋଲି ସେମାନଙ୍କର ଦୃଢ଼ ବିଶ୍ୱାସ ଥିଲା । ବିଭିନ୍ନ ଧର୍ମ ମତବାଦର କଷଟି ପଥରରେ ପରୀକ୍ଷିତ ହୋଇ ପଞ୍ଚସଖାଙ୍କ ଆବିର୍ଭାବ ସମୟକୁ ସେ ପାଲଟି ଯାଇଥିଲେ ଯୋଗ ସାଧନାର ପ୍ରଧାନ ଲକ୍ଷ୍ୟ ସ୍ଥଳ । ତେଣୁ ତାଙ୍କୁ ପାଇବା ପାଇଁ ହେଲେ ଜ୍ଞାନ ଓ ଯୋଗର ଏକାନ୍ତ ଆବଶ୍ୟକତା ରହିଛି ବୋଲି ଅନୁଭୂତ ହେଉଥିଲା । କେବଳ ଏତିକି ନୁହେଁ ଉତ୍କଳୀୟ ଜ୍ଞାନମିଶ୍ରା ଭକ୍ତି ସାଧକମାନେ ଶ୍ରୀଜଗନ୍ନାଥଙ୍କୁ ଯେପରି ପରଂବ୍ରହ୍ମ ରୂପେ ଗ୍ରହଣ କରିଥିଲେ ଶ୍ରୀକ୍ଷେତ୍ରକୁ ମଧ୍ୟ ସେହି ଦୃଷ୍ଟିରୁ ଏକାନ୍ତ ଭାବରେ ଗୁରୁତ୍ୱ ପ୍ରଦାନ କରୁଥିଲେ । 'ସ୍କନ୍ଦ ପୁରାଣ' ଓ 'ବ୍ରହ୍ମ ପୁରାଣ'ରେ ପୁରୁଷୋତ୍ତମ କ୍ଷେତ୍ରର ମାହାତ୍ମ୍ୟ ବହୁଳ ଭାବରେ ବର୍ଣ୍ଣିତ ହୋଇଛି । ଏଠାରେ କୀଟ, ପକ୍ଷୀ, ମନୁଷ୍ୟ, ଯେ କେହି ପ୍ରାଣତ୍ୟାଗ କଲେ ଭଗବାନ ତାକୁ ମୁକ୍ତି ପ୍ରଦାନ କରନ୍ତି । ବ୍ରତ, ତୀର୍ଥ, ଯଜ୍ଞ ଓ ଦାନରେ ଯେଉଁ ପୁଣ୍ୟ ହୁଏ, ଉକ୍ତ କ୍ଷେତ୍ରରେ ଗୋଟିଏ ଦିନ ବାସ କଲେ ସେ ସମସ୍ତ ଫଳ ମିଳେ । କିନ୍ତୁ ଉତ୍କଳୀୟ ଜ୍ଞାନମିଶ୍ରା ଭକ୍ତି ସାଧକମାନେ ଶ୍ରୀକୃଷ୍ଣଙ୍କର ବୃନ୍ଦାବନ ଧାମର ବିଭିନ୍ନ ଲୀଳା ସ୍ଥାନକୁ ଶ୍ରୀକ୍ଷେତ୍ର ମଧ୍ୟରେ ଚିହ୍ନାଇ ଦେଇଛନ୍ତି । ସେମାନଙ୍କ ମତରେ ସାଧକ କବି ଦିବାକର ଦାସଙ୍କ 'ଜଗନ୍ନାଥ ଚରିତାମୃତ'ରେ ଉକ୍ତ ପ୍ରସଙ୍ଗ ବିଶଦ ଭାବରେ ବର୍ଣ୍ଣିତ ହୋଇଛି । ସେଥିରେ ଅଛି- ଭାର୍ଗବୀ ନଦୀ-ଗୁପ୍ତ ଯମୁନା, ଗୁଣ୍ଡିଚା ମଣ୍ଡପ- ଗୋବର୍ଦ୍ଧନ ଗିରି, ଇନ୍ଦ୍ରଦ୍ୟୁମ୍ନ- ରାଧାକୁଣ୍ଡ, ଶ୍ୟାମକୁଣ୍ଡ, ମାର୍କଣ୍ଡେଶ୍ୱର- ଗୁପ୍ତ କାଳିନ୍ଦୀ, ଅଠରନଳା- କଦମ୍ବ ଘାଟ, ଗୁଣ୍ଡିଚା ଘର ଦକ୍ଷିଣ ପାଖ- ଗୋପ, ମଥୁରା, ବଳଗଣ୍ଡି- ଅଯୋଧ୍ୟା, ଦ୍ୱାରକା, ବ୍ରହ୍ମବଟ ପୂର୍ବ- ଗଙ୍ଗା ସାଗର, ପୁଷ୍କର, ନରେନ୍ଦ୍ର ସରୋବର- ରବି କୁଣ୍ଡ, ଚନ୍ଦ୍ର କୁଣ୍ଡ, ଶ୍ୱେତଗଙ୍ଗା- ଅଷ୍ଟଧାର ଗଙ୍ଗା, ଲୋକନାଥ- ଲକ୍ଷ୍ମଣ ଓ ରାମେଶ୍ୱର, କଳ୍ପବଟ ଛାୟା- ଧର୍ମ, ଅର୍ଥ, କାମ, ମୋକ୍ଷ, ପର୍ଶୁରାମ- କୃଷ୍ଣ ଏବଂ ରଘୁନାଥ- ଗୋପୀନାଥ । ଶ୍ରୀକ୍ଷେତ୍ରର ଏପରି ମାହାତ୍ମ୍ୟ ଦୃଷ୍ଟିରୁ ଶ୍ରୀଚୈତନ୍ୟ ମଧ୍ୟ କ୍ଷେତ୍ର ଛାଡ଼ି ଅନ୍ୟତ୍ର ଯିବା ପାଇଁ ଇଚ୍ଛା ପ୍ରକାଶ କରୁନଥିଲେ ।

*''କ୍ଷେତ୍ର ତୀର୍ଥେ ମୋ କାର୍ଯ୍ୟ ନାହିଁ*
*ଏ କ୍ଷେତ୍ର ନ ଛାଡ଼ିବି ମୁହିଁ ।''*

*-ଜଗନ୍ନାଥ ଚରିତାମୃତ- ୩ୟ ଅଧ୍ୟାୟ*

ପଞ୍ଚସଖା ଜ୍ଞାନମାର୍ଗୀୟ ସାଧକ ଥିଲେ ମଧ୍ୟ ପ୍ରେମକୁ ଅସ୍ୱୀକାର କରିନାହାନ୍ତି । କାରଣ ସନ୍ଥ ସାଧନାରେ ଜ୍ଞାନ ଓ ପ୍ରେମ ପରସ୍ପର ପରିପୂରକ । ସେମାନଙ୍କ ନିକଟରେ ଜ୍ଞାନର ସ୍ଥାନ ପ୍ରଧାନ ହେଲେ ମଧ୍ୟ ପ୍ରେମ ହେଉଛି ସାଧନାର ଅବିଚ୍ଛେଦ୍ୟ ଅଙ୍ଗ ।

ପଞ୍ଚସଖାଙ୍କ ସମୟର ଓଡ଼ିଶାରେ ନରପତି ଥିଲେ ପ୍ରତାପରୁଦ୍ର ଦେବ । ସେ ନିଜେ ଥିଲେ ଜଣେ କବି ଓ ସାହିତ୍ୟାନୁରାଗୀ । ସେ ସଂସ୍କୃତରେ ଗୋଟିଏ ଗ୍ରନ୍ଥ ରଚନା କରିଥିଲେ । ପଣ୍ଡିତ ଲୋଲ୍ଲା ଲକ୍ଷ୍ମୀଧର, କବି ଡ଼ିଣ୍ଡିମ ଓ ବୈଷ୍ଣବ ଭକ୍ତ ରାୟ ରାମାନନ୍ଦଙ୍କ ପରି ଖ୍ୟାତି ସଂପନ୍ନ ମନୀଷୀମାନେ ତାଙ୍କର ରାଜସଭାକୁ ମଣ୍ଡନ କରିଥିଲେ । ପୁଣି ତାଙ୍କ ଦରବାରର ଜଣେ ପଣ୍ଡିତ 'ଯୋଗ ଚିନ୍ତାମଣି' ନାମକ ଗ୍ରନ୍ଥଟିଏ ଲେଖିଥିଲେ । ଶ୍ରୀଚୈତନ୍ୟଙ୍କ ଉତ୍କଳ ଆଗମନ ପରେ ପ୍ରତାପରୁଦ୍ର ତାଙ୍କର ଜଣେ ପ୍ରଧାନ ଭକ୍ତ ପାଲଟି ଯାଇଥିଲେ । ପ୍ରତାପରୁଦ୍ର ଦେବ ଶ୍ରୀଚୈତନ୍ୟ ପ୍ରଚାରିତ ବୈଷ୍ଣବ ଧର୍ମରେ ଦୀକ୍ଷିତ ହେବା ପରେ ଓଡ଼ିଶାରେ ରାଧାକୃଷ୍ଣ ପ୍ରେମଭକ୍ତି ବ୍ୟାପକ ପ୍ରସାର ଲାଭ କଲା । ଓଡ଼ିଶାର ବୈଷ୍ଣବ ଭକ୍ତଗଣ ଏହି ଶୁଦ୍ଧାଭକ୍ତିବାଦକୁ ବାଧ୍ୟ ହୋଇ ସ୍ୱୀକାର କଲେ । ଗୋଟିଏ ପଟେ ଯୋଗାଚାର ପଣ୍ଡିତ ଜ୍ଞାନମିଶ୍ରା ଭକ୍ତି ଓ ଅପରପଟେ ରାଧାକୃଷ୍ଣ ପ୍ରେମତତ୍ତ୍ୱ ସମ୍ବଳିତ ଶୁଦ୍ଧାଭକ୍ତି ମଧ୍ୟରେ ସମନ୍ୱୟ ସାଧିତ ହେଲା । ରାଜ ପୃଷ୍ଠପୋଷକତା ଲାଭ କରିଥିବାରୁ ଚୈତନ୍ୟ ପ୍ରଚାରିତ ପ୍ରେମଭକ୍ତି ଧର୍ମର ବନ୍ୟା ଚାରିଆଡ଼େ ଖେଳିଗଲା । ଏହି ଅବକାଶରେ ପଞ୍ଚସଖାଙ୍କର ଅନ୍ତର୍ନିହିତ ସାଧନା ଥିଲା ବ୍ରହ୍ମଜ୍ଞାନ ମୂଳକ ଯୋଗାଚାର ସାଧନା ଓ ବାହାରକୁ ସେମାନେ ଜଣା ପଡୁଥିଲେ ରାଧାକୃଷ୍ଣ ପ୍ରେମଭକ୍ତି ତତ୍ତ୍ୱର ପ୍ରବକ୍ତା ପରି । ବାସ୍ତବରେ ସେମାନେ ଏ ଦୁଇଟି ଧାରାକୁ ନିଜର ସାଧନା ମାର୍ଗରେ ଗ୍ରହଣ କରି ନିଜର ମୌଳିକତା ରକ୍ଷା କରି ପାରିଥିଲେ । ସେମାନେ ଅନ୍ୟ କୌଣସି ଧର୍ମର ସତ୍ତା ଭିତରେ ହଜି ନଯାଇ ନିଜେ ନିଜର ସ୍ୱତନ୍ତ୍ର ପରିଚୟ ବଜାୟ ରଖିଛନ୍ତି । ଏହି ପରିପ୍ରେକ୍ଷୀରେ ସାଧକ କବି ଅଚ୍ୟୁତାନନ୍ଦଙ୍କର ଧର୍ମୀୟ ଭାବନା ଓ ସାଧନା ପଦ୍ଧତିର ଅସଲ ଦୃଷ୍ଟିକୋଣ ବିଚାର କରାଯାଇପାରେ ।

**(୧) ଶୂନ୍ୟବାଦ-** ଭାରତୀୟ ଧର୍ମ ସାଧନାରେ ଶୂନ୍ୟବ୍ରହ୍ମକୁ ଆଧାର କରି ପରିକଳ୍ପିତ 'ଶୂନ୍ୟବାଦ' ବୈଦିକ ଯୁଗରୁ ପ୍ରଚଳିତ ଅଛି । ଋଗବେଦ, ବିଭିନ୍ନ ଉପନିଷଦ, ସଂହିତା ଓ ଶ୍ରୀମଦ୍‌ଭାଗବତରେ ପରଂବ୍ରହ୍ମଙ୍କୁ 'ଶୂନ୍ୟବତ୍'ରୂପେ ବର୍ଣ୍ଣନା କରାଯାଇଛି । ବୌଦ୍ଧ ଦାର୍ଶନିକ ନାଗାର୍ଜ୍ଜୁନ ଶୂନ୍ୟବାଦ ତତ୍ତ୍ୱର ଯେଉଁ ବ୍ୟାଖ୍ୟା କରିଛନ୍ତି ତାହା ସମାଜରେ ବିଶେଷ ଲୋକପ୍ରିୟତା ଲାଭ କରିଥିଲା । ତାଙ୍କ ମତରେ-

*"ଶୂନ୍ୟମିତି ନ ବକ୍ତବ୍ୟଂ ଅଶୂନ୍ୟମିତି ବା ଭବେତ୍*
*ଉଭୟଂ ନୋଭୟଂ ନୈବ ପ୍ରଜ୍ଞପ୍ତ୍ୟର୍ଥଂ ତୁ କଥ୍ୟତେ ।"*

*-ମାଧ୍ୟମିକ ଶାସ୍ତ୍ର*

ଅର୍ଥାତ୍ ଏହି ଶୂନ୍ୟ ଶୂନ୍ୟ ନୁହେଁ କି ଅଶୂନ୍ୟ ନୁହେଁ ବା ଉଭୟ ଶୂନ୍ୟାଶୂନ୍ୟ ମଧ୍ୟ ନୁହେଁ । ତେଣୁ ସେ ସୃଷ୍ଟି, ସ୍ଥିତି, ଗତି, ଦୁଃଖ, ମୋକ୍ଷ ଆଦି ପ୍ରତ୍ୟେକ ଧାରଣାକୁ କେବଳ ଶୂନ୍ୟ ବୋଲି କହିଛନ୍ତି । ବୌଦ୍ଧ ଧର୍ମରେ ଶୂନ୍ୟତା ଓ କରୁଣାର ସମନ୍ୱୟରେ ସୃଷ୍ଟ ବୋଧିଚିତ୍ତ ବା ମହାସୁଖ 'ସହଜ' ନାମରେ ଅଭିହିତ ଓ ଚର୍ଯ୍ୟାପଦରେ ଏହି 'ସହଜ'କୁ ଶୂନ୍ୟ ରୂପେ ସ୍ୱୀକାର କରାଯାଇ ତାହାର ବହୁଳ ବ୍ୟାଖ୍ୟା କରାଯାଇଛି । ନାଥପନ୍ଥୀମାନେ ଶରୀରସ୍ଥ ଉର୍ଦ୍ଧ୍ୱଚକ୍ରକୁ 'ଶୂନ୍ୟଚକ୍ର' କହିବା ସଙ୍ଗେ ସଙ୍ଗେ ନାନା ପ୍ରକାର ଯୋଗସାଧନା ଦ୍ୱାରା ଏହି ଚକ୍ରରେ ପହଞ୍ଚିଥାନ୍ତି । 'ଶୂନ୍ୟତତ୍ତ୍ୱ' ନାଥ ସଂପ୍ରଦାୟରେ 'ପରମ ତତ୍ତ୍ୱ' ଭାବରେ କଥିତ । ସେଥିପାଇଁ ନାଥ ସାହିତ୍ୟରେ 'ପରମ ତତ୍ତ୍ୱ' ପରମ ପଦ, ନାଦ, ଶିବଲୋକ, ବ୍ରହ୍ମଲୋକ ଓ ବ୍ରହ୍ମଦ୍ୱାର ପ୍ରଭୃତି ଶୂନ୍ୟବାଚକ ଶବ୍ଦ ପରିଲକ୍ଷିତ ହୁଏ । ଯୋଗାଚାର ସାଧନା ପଦ୍ଧତିରେ ଶୂନ୍ୟକୁ ଅଗମ୍ୟ, ଅଗୋଚର, ସର୍ବଶୂନ୍ୟ ଓ ଅଦ୍ୱୟ ବୋଲି କୁହାଯାଇଛି । ସାଧକର ଶରୀର ଭିତରେ ଓ ବାହାରେ ଏହି ଶୂନ୍ୟତାର ସ୍ଥିତି । ସବୁଠାରେ ପରିବ୍ୟାପ୍ତ ଏହି ଶୂନ୍ୟତାଜ୍ଞାନ ଚିତ୍ତ ମଧ୍ୟରେ ଆସିବା ପାଇଁ ସାଧକ ସାଧନା କରେ । ଏହିପରି ଦେଖି ବସିଲେ ବୈଦିକ ଯୁଗର 'ବ୍ରହ୍ମ'ଠାରୁ ଆରମ୍ଭ କରି ପଞ୍ଚସଖା ଯୁଗର ଜଗନ୍ନାଥ-କୃଷ୍ଣଙ୍କ ପର୍ଯ୍ୟନ୍ତ ସବୁଠି ସେହି ଶୂନ୍ୟର ପରିକଳ୍ପନା ଓ ସାଧନା ପଦ୍ଧତିରେ ଶୂନ୍ୟବାଦର ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଛି ।

ଓଡ଼ିଆ ସନ୍ଥ ସାହିତ୍ୟରେ ଶୂନ୍ୟବାଦର ଯେଉଁ ରୂପରେଖ ପ୍ରକାଶ ପାଇଛି ତାହା ପ୍ରାଚୀନ ବୌଦ୍ଧଧର୍ମରେ ଥିବା ମାଧ୍ୟମିକ ଶୂନ୍ୟବାଦର ପ୍ରଭାବ ବ୍ୟତୀତ ଅନ୍ୟ କିଛିନୁହେଁ । କାଳକ୍ରମେ ଶୂନ୍ୟବାଦର ସେହି ଧାରାଟି କ୍ରମ ବିକାଶ ଲାଭ କରି ଏପରି ଅବସ୍ଥାରେ ଆସି ପହଞ୍ଚିଛି । ସାଧନା ମାର୍ଗରେ ନାଗାର୍ଜ୍ଜୁନଙ୍କ ଦ୍ୱାରା ଶୂନ୍ୟର ଚାରିଗୋଟି ବିଭାଗକୁ ସ୍ୱୀକାର କରାଯାଇଛି । ସେସବୁ ହେଲା- ଶୂନ୍ୟ, ଅତିଶୂନ୍ୟ, ମହାଶୂନ୍ୟ ଓ ସର୍ବଶୂନ୍ୟ । ବଜ୍ରଯାନୀମାନେ କାୟାଶୂନ୍ୟ, ଆତ୍ମାଶୂନ୍ୟ, ପରମ ଶୂନ୍ୟ ଓ ସହଜ ଶୂନ୍ୟ ପ୍ରଭୃତି ଚାରିଗୋଟି ଅବସ୍ଥାକୁ ସ୍ୱୀକାର କରିଛନ୍ତି । 'ଶିବ ପୁରାଣ'ରେ ଅଧଃ, ମଧ୍ୟ, ଉର୍ଦ୍ଧ୍ୱ, ଆକାଶ, ପରମ, ନିରାଲମ୍ବ ଓ ମହାଶୂନ୍ୟ ଏପରି 'ସପ୍ତଶୂନ୍ୟ'ର ପରିକଳ୍ପନା କରାଯାଇଛି । ସାରଳା ମହାଭାରତରେ ଶୂନ୍ୟ, ମହାଶୂନ୍ୟ, ନିରାକାର ଓ ପରମ ନିରାକାର ଶୂନ୍ୟର

ଉଲ୍ଲେଖ ଅଛି । ସାଧକ କବି ବଳରାମ ଦାସ 'ବିରାଟ ଗୀତା'ରେ ଶରୀର ମଧ୍ୟରେ ୧୬ ଶୂନ୍ୟର ସ୍ଥିତି ନିର୍ଣ୍ଣୟ କରିଛନ୍ତି । ଓଡ଼ିଆ ସନ୍ଥକବିମାନଙ୍କ ସାହିତ୍ୟରେ ଏହି ଶୂନ୍ୟର ସଂଖ୍ୟା ସ୍ଥଳବିଶେଷରେ ୪,୭,୧୬,୨୧ ଓ ୬୪ ।

ପଞ୍ଚସଖା ଓ ଓଡ଼ିଶାର ଅନ୍ୟାନ୍ୟ ସନ୍ଥକବିମାନେ ବୌଦ୍ଧଧର୍ମର ଶୂନ୍ୟତା ଓ କରୁଣା ଦ୍ୱାରା ପ୍ରଭାବିତ ହୋଇ ଜଗନ୍ନାଥଙ୍କୁ ଶୂନ୍ୟରୂପୀ କରୁଣାମୟ ବୋଲି ଗ୍ରହଣ କରିଛନ୍ତି । ଶୂନ୍ୟରୂପୀ ଶ୍ରୀକୃଷ୍ଣଙ୍କ ସହିତ କରୁଣାରୂପୀ ରାଧାଙ୍କୁ ମଧ୍ୟ ସେମାନେ ସମନ୍ୱିତ କରିଛନ୍ତି ।

ଏଥି ସହିତ ଶରୀର ମଧ୍ୟରେ ଶୂନ୍ୟରୂପୀ ଜଗନ୍ନାଥ, କୃଷ୍ଣ ଓ ବ୍ରହ୍ମର ସ୍ଥିତିକୁ ସ୍ୱୀକାର କରି ସାଧନା ମାର୍ଗରେ ଅଗ୍ରସର ହୋଇଛନ୍ତି । ସମାଲୋଚକ ଡ଼ଃ ବଂଶୀଧର ମହାନ୍ତିଙ୍କ ମତରେ - "ସେମାନେ ଜଗନ୍ନାଥଙ୍କୁ ଶୂନ୍ୟ ରୂପେ ପରିକଳ୍ପନା କରିବା ସହିତ ନିଜ ଶରୀର ମଧ୍ୟସ୍ଥ ସହସ୍ରାର ପଦ୍ମରେ ଶୂନ୍ୟତା ଦର୍ଶନ କରିଛନ୍ତି ଜ୍ୟୋତି ରୂପରେ- ମହାଶୂନ୍ୟ ରୂପରେ- ସହସ୍ରାର ପଦ୍ମଭିତରେ ସେମାନେ ପ୍ରଜ୍ଞା ଓ ଉପାୟର ମିଳନ ପରି ଉପଲବ୍ଧି କରିଛନ୍ତି ନିତ୍ୟଲୀଳା ।" (ଓଡ଼ିଆ ସାହିତ୍ୟର ଇତିହାସ) । ଏଠାରେ ଶୂନ୍ୟବାଦୀ ସାଧନା ସଂପର୍କରେ ସନ୍ଥକବିମାନଙ୍କ ମତାମତରୁ କେତେପଦ ଉଦ୍ଧାର କରାଗଲା ।

*"ମହାଶୂନ୍ୟ ଯେ ଜ୍ୟୋତି ରୂପ*
*ଜ୍ୟୋତିରୁ ଜାତ ଠୁଳ ରୂପ ।"*

*-ଜଗନ୍ନାଥ ଦାସ-ତୁଳାଭିଣା*

*"ଠୁଳଶୂନ୍ୟ ବୋଲି ଯେହୁ ଅରୂପରେ ଜ୍ୟୋତି*
*ପାଦନାହିଁ, ପାଣି ନାହିଁ ଅନାମରେ ସ୍ଥିତି ।"*

*-ଶିଶୁ ଅନନ୍ତ- ଭଜନ*

*"ଯେ ଶୂନ୍ୟ ପରେ ଜ୍ୟୋତି ଜାଣ । ତା'ପରେ ମହାଶୂନ୍ୟ ପୁଣ ।*
*ସେ ଶୂନ୍ୟ ଉପରେ ଚେତନା । ଚେତନା ମଧ୍ୟେ ମୋର ଠଣା ।"*

*-ଯଶୋବନ୍ତ ଦାସ- ପ୍ରେମଭକ୍ତି ବ୍ରହ୍ମଗୀତା*

*"ରୂପବନ୍ତ ନୁହଇ ସେ ଅରୂପ ତାର ଦେହୀ*
*ଶୂନ୍ୟର ସଙ୍ଗତେ ସେ ଶୂନ୍ୟ ହୋଇଥାଇ ।"*

*-ଚୈତନ୍ୟ ଦାସ- ବିଷ୍ଣୁଗର୍ଭପୁରାଣ- ୩ୟ ଅ.*

ମହାପୁରୁଷ ଅଚ୍ୟୁତାନନ୍ଦ ସ୍ୱରଚିତ ବିଭିନ୍ନ ଗ୍ରନ୍ଥରେ ଶୂନ୍ୟବାଦର ସ୍ୱରୂପ ବିଶଦ ଭାବରେ ବର୍ଣ୍ଣନା କରିଛନ୍ତି । ତାଙ୍କ ମତରେ ଶୂନ୍ୟର କିଛି ରୂପରେଖ ନାହିଁ ଓ କୌଣସି ଉପମା ମାଧମରେ ଏହାକୁ ବୁଝାଇ ହେବନାହିଁ । ଜଳ, ସ୍ଥଳ, ପାତାଳ, ଆକାଶ, ଚଉଦ ବ୍ରହ୍ମାଣ୍ଡ ଓ ସପ୍ତମେରୁ ଆଦି ସମସ୍ତ ସୃଷ୍ଟି ଏହି ଶୂନ୍ୟରୁ ହିଁ ସମ୍ଭବ ହୋଇଛି । କୋଟି ବ୍ରହ୍ମା-ବିଷ୍ଣୁ-ମହେଶ୍ୱର ମଧ ସୃଷ୍ଟି ହୋଇଛନ୍ତି ଶୂନ୍ୟରୁ ।

*"ତଦ ପ୍ରାନ୍ତେଟି ବ୍ରହ୍ମ ନାମ ଜାଣ । ମହାଶୂନ୍ୟ ସେହୁ ଅକ୍ଷୟ ଗୁଣ ।*
*କୋଟି ବ୍ରହ୍ମା ବିଷ୍ଣୁ କୋଟି ଯେ ହର । ତାଙ୍କ ପାଦରୁ ହୋଇଲେ ବାହାର ।"*

*-ଅଙ୍କଳିତ ସଂହିତା*

ଏହି ଶୂନ୍ୟରୂପୀ ବ୍ରହ୍ମ ପୁଣି ସର୍ବବ୍ୟାପକ । ସ୍ଥାବର, ଜଙ୍ଗମ, କୀଟ ଓ ପତଙ୍ଗ ଯେତେ ରହିଛନ୍ତି ସର୍ବଘଟରେ ସେ ବିଦ୍ୟମାନ ଅଛନ୍ତି । 'ଶୂନ୍ୟ ସଂହତା'ରେ ଶୂନ୍ୟ ପୁରୁଷଙ୍କ ପରିକଳ୍ପନା ଅଚ୍ୟୁତାନନ୍ଦ ଅତି ଚମତ୍କାର ଭାବରେ କରିଛନ୍ତି ।

*"ଶୂନ୍ୟ ପୁରୁଷ ଉଦାସରେ ରହେ । ଶୂନ୍ୟ ପୁରୁଷ ସବୁ ମାୟା ଭ୍ୟାଯେ ।*
*ଶୂନ୍ୟ ପୁରୁଷ ଦୟାଳୁ ଅଟଇ । ଶୂନ୍ୟ ପୁରୁଷ ସର୍ବ ଘଟେ ରହି ।*
*ଶୂନ୍ୟ ପୁରୁଷ କରେ ନଟଘଟ । ଶୂନ୍ୟ ପୁରୁଷ ଜାଣେ ଛନ୍ଦକୁଟ ।*
*ଶୂନ୍ୟ ପୁରୁଷ ଶୂନ୍ୟରେ ମାରଇ । ମାରି ଶୂନ୍ୟ ପୁଣ୍ୟ ଗତି କରଇ ।"*

ଶୂନ୍ୟରୂପୀ ବ୍ରହ୍ମ ଶୂନ୍ୟ ମଣ୍ଡଳକୁ ପରିବ୍ୟାପ୍ତ ହୋଇଛନ୍ତି । ତେଣୁ ଶୂନ୍ୟବ୍ରହ୍ମଙ୍କୁ ପାଇବାକୁ ହେଲେ ଶୂନ୍ୟ ମଣ୍ଡଳକୁ ଭେଦିବାକୁ ହୁଏ । ଏହି ଶୂନ୍ୟ ବ୍ରହ୍ମ ବା ପରମ ପୁରୁଷ ଶୂନ୍ୟ ଶବଦ ଭାବରେ ମଧ ଅଚ୍ୟୁତାନନ୍ଦଙ୍କ ଦ୍ୱାରା ପରିକଳ୍ପିତ । ତାଙ୍କ ମତରେ ସପ୍ତ ଶୂନ୍ୟରେ ବ୍ରହ୍ମ, ସପ୍ତ ବ୍ରହ୍ମରେ ଶୂନ୍ୟବ୍ରହ୍ମ ରହିଛି । ସାତଗୋଟି ବ୍ରହ୍ମ ସାତକାଠି ହୋଇଥାଏ ଓ ସପ୍ତକାଠିରେ ହୁଏ ମହାଶୂନ୍ୟ ।

*"ସପତ ଶୂନ୍ୟରେ ଯେହୁ ରହିଅଛି ବ୍ରହ୍ମ*
*ସପତ ବ୍ରହ୍ମରେ ସେହୁ ହୋଯେ ଶୂନ୍ୟବ୍ରହ୍ମ ।*
*ସପତ କାଠିରେ ଯାଇ ହୋଯେ ସାତକାଠି*
*ସପତ କାଠିରେ ଯାଇ ହୋଏ ଶୂନ୍ୟଗୋଟି ।"*

*-ବ୍ରହ୍ମବିଦ୍ୟା*

ଏହି ଶରୀର ମଧ୍ୟରେ ୨୧ ବ୍ରହ୍ମାଣ୍ଡ ରହିଛି ଓ ତା' ଉପରେ ଅଛି ମହାଶୂନ୍ୟ ଗୋଲୋକ । ସେଠାରେ ଜ୍ୟୋତି ମଣ୍ଡଳ ମଧ୍ୟରେ ବିଜେ କରିଛନ୍ତି ନରହରି ।

*''ଏକୋଇଶ ପୁର ପିଣ୍ଡ ବ୍ରହ୍ମାଣ୍ଡ ଯେ ସରି*
*ଜ୍ୟୋତି ମଣ୍ଡଳର ମଧ୍ୟେ ବିଜେ ନରହରି ।''*

-ଶୂନ୍ୟ ସଂହିତା

ଅଷ୍ଟାଙ୍ଗ ଯୋଗ ମାଧ୍ୟମରେ ସାଧକ ଛାୟା, ଅବାଡ଼ ପ୍ରଭୃତି ନିରାକାର ଭଜନ ଦ୍ୱାରା ଶୂନ୍ୟ ଅବସ୍ଥାକୁ ଉପଲବ୍ଧି କରି ଜ୍ୟୋତି ଦର୍ଶନ କରିଥାଏ । ଏହି ଜ୍ୟୋତି ମଣ୍ଡଳ ହେଉଛି ମହାଶୂନ୍ୟ ସ୍ଥଳ ଓ ସେଠାରେ ରାଧାକୃଷ୍ଣଙ୍କର ନିତ୍ୟ ରାସଲୀଳା ଲାଗିରହିଛି । ସାଧକ ଶୂନ୍ୟମନ୍ତ୍ର ଜପି ଶୂନ୍ୟକାୟାରେ ଶୂନ୍ୟଯନ୍ତ୍ର ସ୍ଥାପନା କରି ଧ୍ୟାନ କରିଥାନ୍ତି । ପ୍ରାଚୀ ଉପତ୍ୟକାରେ ଦଣ୍ଡକାରଣ୍ୟ ମଧ୍ୟରେ ବୀରସିଂହ, ରୋହିଦାସ, ବାଉଳି, କପିଳ ଆଦି ଋଷି ସନ୍ନ୍ୟାସୀମାନେ କେଉଁ ମନ୍ତ୍ର ଜପ କରିବେ ବୋଲି ଯେତେବେଳେ ପଚାରିଛନ୍ତି, ସେତେବେଳେ ଅଚ୍ୟୁତାନନ୍ଦ ସେମାନଙ୍କୁ ଉପଦେଶ ଦେଇଛନ୍ତି-

*''କହିଲି ମୁଁ ଶୂନ୍ୟମନ୍ତ୍ର ଯନ୍ତ୍ର କର ନ୍ୟାସ*
*ତପୀମାନେ ଜୟ ଜୟ କଲେ ଯେ ପ୍ରକାଶ ।*
*ଦେଖିଲେ ଯେ ଶୂନ୍ୟବ୍ରହ୍ମ ସ୍ୱୟଂ ଜ୍ୟୋତି ହୋଇ*
*ଘଟେ ଘଟେ ବିଜେ ଏହି ଶୂନ୍ୟକାୟା ଦେହୀ ।*
x x x x
*ଶୂନ୍ୟକାୟାକୁ ସେ ନିରାକାର ମନ୍ତ୍ର ସାର*
*ଭଲା ଦୟାକଲେ ଦୀନଜନଙ୍କ ସୋଦର ।''*

*-ଶୂନ୍ୟ ସଂହିତା*

'ଗଣେଶ ବିଭୂତି ଟୀକା'ରେ ଅଚ୍ୟୁତାନନ୍ଦ ଶୂନ୍ୟ ମନ୍ତ୍ର ପ୍ରସଙ୍ଗ ଉଲ୍ଲେଖ କରି ଲେଖିଛନ୍ତି, ''ଓଁ ଧ୍ଲୀଂ ବୀଜ ଶୂନ୍ୟ ବ୍ରହ୍ମ ନମଃ ।'' ଶୂନ୍ୟ ଭଜନ ଦ୍ୱାରା ଜ୍ୟୋତି ଦର୍ଶନ କଲେ ଅପାର ସୁଖ ଲାଭ ହୁଏ ଓ ସମସ୍ତ ପ୍ରକାର ଦୁରିତ ବିନାଶ ହୁଏ । କବିଙ୍କ ମତରେ-

*''ସହି ଗୋ ଶୂନ୍ୟ ମନ୍ଦିରେ ବାସ*
*ଜ୍ୟୋତି ଦରଶନେ ଦୁରିତ ନାଶ ।''*

*-ଶୂନ୍ୟରାସ*

ସେଥିପାଇଁ ତ୍ରିକୁଟ ସନ୍ଧିରେ ବିଜେ କରିଥିବା ନିରାକାର ପୁରୁଷଙ୍କୁ ଲୟ କରିବା ପାଇଁ ଅଚ୍ୟୁତାନନ୍ଦ ପରାମର୍ଶ ଦେଇଛନ୍ତି ।

*''ତ୍ରିକୂଟ ସନ୍ଧିରେ ନିରାକାର ବିଜେ*
*ଲୟ ଲଗାଅ ତହିଁକି ।''* (ଭଜନ)

ଏପ୍ରକାର ଶୂନ୍ୟସାଧନାରେ ଗୁରୁଙ୍କର ଭୂମିକା ବେଶ ତାତ୍ପର୍ଯ୍ୟପୂର୍ଣ୍ଣ । ଗୁରୁ ଶିଷ୍ୟଙ୍କୁ ଉପଯୁକ୍ତ ମନ୍ତ୍ରଦୀକ୍ଷା ଦେଇ ସାଧନା ମାର୍ଗରେ ଅଗ୍ରସର ହେବାକୁ ପରାମର୍ଶ ଦେଇଥାନ୍ତି । କାରଣ ଗୁରୁ ହିଁ ଶିଷ୍ୟ ଅଙ୍ଗର ପାପକୁ ନିଜର ଅଙ୍ଗରେ ଧାରଣ କରନ୍ତି । ଗୁରୁ ହିଁ ଶୂନ୍ୟବ୍ରହ୍ମ ଜ୍ଞାତା ଓ ଶୂନ୍ୟ ମନ୍ତ୍ର ଦାତା ।

*''ଶିଷ୍ୟ ଅଙ୍ଗୁ ପାପ ଦଶ ସସ୍ର ନାମ ଗୁରୁ ଅଙ୍ଗେ ବିଶ୍ରାମଇ*
*ଗୁରୁ ବ୍ରହ୍ମବେତା ଶୂନ୍ୟମନ୍ତ୍ର ଚେତା ବ୍ରହ୍ମ ଗୁଣ ସେହି ପାଇଁ ।''*
*-ଶୂନ୍ୟ ସଂହିତା*

ଶୂନ୍ୟବାଦକୁ ଯେ ଅଚ୍ୟୁତାନନ୍ଦ କେବଳ ସ୍ୱୀକାର କରିଥିଲେ ତାହା ନୁହେଁ ସେ ନିଜେ ଶୂନ୍ୟ ସାଧନାରେ ନିଜର ପରାକାଷ୍ଠା ପ୍ରଦର୍ଶନ କରିଥିଲେ । ଏଥିପାଇଁ ବାଙ୍କୀମୁହାଣ ଠାରେ ଶୂନ୍ୟ କୂପ ମଧ୍ୟରେ ଶୂନ୍ୟଭଜନ ଓ ଧ୍ୟାନ ଦ୍ୱାରା ତାଙ୍କୁ ପରୀକ୍ଷା ଦେବାକୁ ପଡ଼ିଥିଲା । ତାଙ୍କର ସିଦ୍ଧିଲାଭ ଦର୍ଶନ କରି ରାଜା ଓ ବ୍ରାହ୍ମଣମାନେ ବିସ୍ମିତ ହୋଇଥିଲେ ।

## (୨) ସୃଷ୍ଟିତତ୍ତ୍ୱ-

ବିଶ୍ୱ ସୃଷ୍ଟିର ରହସ୍ୟ ଉଦ୍‌ଘାଟନ କରିବା ପାଇଁ ଆଦିମ ଯୁଗରୁ ମଣିଷ ବ୍ୟାକୁଳ । ସର୍ବ ପ୍ରଥମେ କିଏ ସୃଷ୍ଟି ହେଲେ ଓ ପରେ କିପରି ଜଗତର ସମସ୍ତ ବସ୍ତୁ ସୃଷ୍ଟି ହେଲା ବାସ୍ତବିକ ଏହା ଅତ୍ୟନ୍ତ ରହସ୍ୟମୟ ଜଣାପଡୁଛି । ରହସ୍ୟମୟ ସୃଷ୍ଟିକ୍ରିୟା ସଂପର୍କରେ ଏହି ପ୍ରଶ୍ନ ସର୍ବଦା ମଣିଷ ମନକୁ ଆନ୍ଦୋଳିତ କରିଛି । ଋଗ୍‌ବେଦରେ ମଧ ଏପରି ପ୍ରଶ୍ନ ଉଦ୍‌ଥାପିତ ହୋଇଛି ଯେ, ପ୍ରଥମେ କିଏ ସୃଷ୍ଟିରେ ବିଦ୍ୟମାନ ଥିଲେ । ଯୋଗବଶିଷ୍ଠ ରାମାୟଣ ଓ ମନୁ ସଂହିତାରେ ଉକ୍ତ ପ୍ରଶ୍ନର ଉତ୍ତର ଏକ ଚମତ୍କାର ଭାବରେ ଦିଆଯାଇଛି । ସେଥିରେ ଅଛି ଚତୁର୍ଦ୍ଦିଗରେ ବ୍ୟାପି ରହିଥିବା ଜଳଧି ମଧ୍ୟସ୍ଥ କଳ୍ପବଟ ଉପରେ ପ୍ରଥମେ ପରମାତ୍ମା ନିଦ୍ରାମଗ୍ନ ଥିଲେ । ପରମାତ୍ମା ବା ଶୂନ୍ୟପୁରୁଷଙ୍କୁ ଏକା ଏକା ଭଲ ନ ଲାଗିବାରୁ ନିଜ ଇଚ୍ଛାରେ ସେ ଦୁଇ ହେଲେ ଓ ସେଥିରୁ ପୁଣି ସ୍ଥାବର, ଜଙ୍ଗମାଦି ସୃଷ୍ଟି ହେଲା ।

ଏହି ସୃଷ୍ଟି ତତ୍ତ୍ୱକୁ ଭିତ୍ତି କରି ବୌଦ୍ଧ, ହିନ୍ଦୁ, ମୁସଲମାନ ଓ ଖ୍ରୀଷ୍ଟ ଧର୍ମରେ ମଧ୍ୟ ଆଦି ପୁରୁଷର ପରିକଳ୍ପନା କରାଯାଇଛି । ଭାରତୀୟ ସନ୍ଥ ପରମ୍ପରାରେ ନାନକ, କବୀର, ନାମଦେବ, ଏକନାଥ ପ୍ରମୁଖ ଭକ୍ତ ସୃଷ୍ଟିକର୍ତ୍ତା ପ୍ରସଙ୍ଗ ବହୁଳ ଭାବରେ ବର୍ଣ୍ଣନା କରିଛନ୍ତି । ପରମାତ୍ମା ବା ଶୂନ୍ୟପୁରୁଷ ଏକରୁ ଦୁଇହେବା କଥା ଯାହା କୁହାଯାଇଛି ତାହା ହେଲା ପ୍ରକୃତି ଆଉ ପୁରୁଷଙ୍କ ପରିକଳ୍ପନା । ଶୂନ୍ୟପୁରୁଷଙ୍କ ଠାରୁ ପ୍ରକୃତିର ଜନ୍ମ ହେଲା ଓ ଉଭୟଙ୍କ ମିଳନ ଫଳରେ ସୃଷ୍ଟି ସମ୍ଭବ ହେଲା ।

ଓଡ଼ିଶାର ପଞ୍ଚସଖାଙ୍କ ସାହିତ୍ୟରେ ବିଶ୍ୱସୃଷ୍ଟିର ରହସ୍ୟ ସଂପର୍କରେ ବହୁ ଆଧ୍ୟାତ୍ମିକବାଦୀ ପରିକଳ୍ପନା ପ୍ରକାଶ ପାଇଛି । ବିଶ୍ୱ ତଥା ଭାରତୀୟ ଧର୍ମ ସଂସ୍କୃତିକୁ ପଞ୍ଚସଖାଙ୍କର ଏହା ଏକ ମହାନ ଅବଦାନ । ଏହି ସୃଷ୍ଟିତତ୍ତ୍ୱ ପଞ୍ଚସଖା ଧର୍ମ ଦର୍ଶନର ଏକ ଉଲ୍ଲେଖଯୋଗ୍ୟ ବୈଶିଷ୍ଟ୍ୟ । ସାଧାରଣତଃ ଅମରକୋଷଗୀତା, ବିରାଟ ଗୀତା, ତୁଳାଭିଣା, ବ୍ରହ୍ମାଣ୍ଡଭୂଗୋଳ ଓ ଶୂନ୍ୟ ସଂହିତା ପ୍ରଭୃତି ଗ୍ରନ୍ଥରେ ଏପରି ସୃଷ୍ଟି ରହସ୍ୟର ବିବରଣୀ ବର୍ଣ୍ଣିତ ହୋଇଛି । ଜଗନ୍ନାଥ ଦାସଙ୍କ ମତରେ ସର୍ବ ପ୍ରଥମେ ଥିଲା ମହାଶୂନ୍ୟ । ସେହି ମହାଶୂନ୍ୟରେ ଜ୍ୟୋତି ରୂପରୁ ଠୁଳ ରୂପ, ଠୁଳରୁ ଅର୍ଦ୍ଧମାତ୍ରା, ଅର୍ଦ୍ଧମାତ୍ରାରୁ ଓଁକାର ଏବଂ ଓଁକାରରୁ ବ୍ରହ୍ମ- ଜଗତ ସୃଷ୍ଟି ହେଲା । ପୁଣି ସେ କହିଛନ୍ତି-

*"ବ୍ରହ୍ମାଣ୍ଡ ଅନ୍ଧକାର ହୋଇ । ଜ୍ୟୋତି ରୂପରେ ଥିଲା ରହି ।*
*ସେଠାରୁ ଓଁକାର ଜନ୍ମିଲା । ଓଁକାର ସକାର ଯେ ହେଲା ।*
*ସକାରୁ ହୋଇଲା ମକାର । ମକାରୁ ଜନ୍ମିଲା ରାକାର ।*
*ଅନ୍ଧକାରଟି ଗୁପ୍ତ ହେଲା । ଓଁକାରୁ ବ୍ରହ୍ମ ପ୍ରକାଶିଲା ।*
*ଏମନ୍ତ ହୋଇଲା ଦିବସ । ଦିବସୁ ଜଗତ ପ୍ରକାଶ ।"*

*-ତୁଳାଭିଣା*

ବଳରାମ ଦାସ ସୃଷ୍ଟିତତ୍ତ୍ୱ ବର୍ଣ୍ଣନା ପ୍ରସଙ୍ଗରେ କହିଛନ୍ତି, ପ୍ରଥମେ ଚନ୍ଦ୍ର, ସୂର୍ଯ୍ୟ, ଦିବସ, ରଜନୀ, ଭୁବନ, ମେଦିନୀ, ପବନ, ତାରାଗଣ, ଦେବାସୁର, ଜଳ, ସ୍ଥଳ, ଆକାଶ କିଛି ନଥିଲା । ଥିଲା କେବଳ ଶୂନ୍ୟ । ସେହି ଶୂନ୍ୟ ହିଁ ଆଦିସତ୍ତା (ବ୍ରହ୍ମାଣ୍ଡ ଭୂଗୋଳ) । ପୁଣି ଶୂନ୍ୟରୁ ବିନ୍ଦୁଖସି ଆକାଶରେ ଧୂମବର୍ଣ୍ଣ ଧାରଣ କଲା ଓ ଏହି ଧୂମ ବର୍ଣ୍ଣରୁ ଶକ୍ତି ଏବଂ ଶକ୍ତିରୁ ଓଁକାର ସୃଷ୍ଟିହେଲା । ଓଁକାରରୁ ତ୍ରିବୀଜ, ତ୍ରିବୀଜରୁ ନାମ, ନାମରୁ ବ୍ରହ୍ମା-ବିଷ୍ଣୁ-ମହେଶ୍ୱରଙ୍କର ସୃଷ୍ଟି । ଏହି ନାମରୁ ଜଗତ ଓ ଛପନ କୋଟି ଜୀବଜନ୍ତୁ ଜନ୍ମଲାଭ କରିଛନ୍ତି ବୋଲି 'ବିରାଟଗୀତା'ରେ କୁହାଯାଇଛି ।

ଅଚ୍ୟୁତାନନ୍ଦ ମଧ୍ୟ ସେହିପରି ପ୍ରଥମେ ଆଦିପୁରୁଷ ଶୂନ୍ୟରୂପରେ ରହିଥିଲେ ଓ ପରେ ତାଙ୍କଠାରୁ ସୃଷ୍ଟି ପ୍ରକ୍ରିୟା ଆରମ୍ଭ ହେଲା ବୋଲି କହିଛନ୍ତି ।

*''ଯେ କାଳେ ନଥିଲା ଧରଣୀ । ନଥିଲେ ଶଶୀ ଦିନମଣି ।*
*ନଥିଲେ ବାସବ ବରୁଣ । ନଥିଲେ ଗରୁଡ଼ ଅରୁଣ ।*
*ନଥିଲେ ପବନ ଯେ ଅଗ୍ନି । ନଥିଲା ଦିବସ ରଜନୀ ।*
*ନଥିଲେ ଦିଗପାଳଗଣ । ନଥିଲା ଅମର ଭୁବନ ।*
*ନଥିଲା ଯଶୋବନ୍ତପୁର । ନଥିଲେ ବ୍ରହ୍ମା ବିଷ୍ଣୁ ହରା*
*ଶୂନ୍ୟରେ ନଥିଲେ ନକ୍ଷତ୍ରେ । ଗନ୍ଧର୍ବ କିନ୍ନର ସହିତେ ।*
*ସେକାଳେ ମୋର ଶୂନ୍ୟରୂପ । ଏମନ୍ତେ ଗଲା କେତେ କଳ୍ପ ।''*

*-ଛୟାଳିଶ ପଟଳ- ୧ମ ପଟଳ*

ସୃଷ୍ଟିତତ୍ତ୍ୱରେ ପ୍ରକୃତିର ସ୍ଥାନ ଗୁରୁତ୍ୱପୂର୍ଣ୍ଣ । ଶୂନ୍ୟପୁରୁଷ ନିଜଠାରୁ ପ୍ରକୃତି ଜାତ କରି ଦୁଇ ହେବା ଦ୍ୱାରା ସୃଷ୍ଟି ସମ୍ଭବ ହେବା କଥା ବୃହଦାରଣ୍ୟକ ଉପନିଷଦରେ ସ୍ୱୀକାର କରାଯାଇଛି । ସୃଷ୍ଟି ପ୍ରକ୍ରିୟାରେ ପ୍ରକୃତିର ସ୍ଥାନ ହେଉଛି ଅଚ୍ୟୁତାନନ୍ଦଙ୍କର ଆଉ ଏକ ବିଶେଷତ୍ୱ । ତାଙ୍କ ମତରେ ପ୍ରକୃତି ଆଉ ପୁରୁଷ ଭିନ୍ନାଭିନ୍ନ ନୁହନ୍ତି । ସେ ଉଭୟ ପୁରୁଷ ଏବଂ ନାରୀ । ତେଣୁ ସେ କହିଛନ୍ତି-

*''ମୁଁ ନିରାକାର ବ୍ରହ୍ମଶ୍ୱରୀ । ଅର୍ଦ୍ଧେ ପୁରୁଷ ଅର୍ଦ୍ଧେ ସ୍ତିରୀ ।*
*ବାମଙ୍ଗ ଅଟେ ସ୍ତିରୀ ରୂପ । ଡ଼ାହାଣ ପୁରୁଷ ସ୍ୱରୂପ ।''*

*-ଛୟାଳିଶ ପଟଳ- ୮ମ ପଟଳ*

*''ସ୍ତିରୀ ପୁରୁଷ ଦୁଇ ରୂପଚାର । ନୁହଇ ସ୍ତିରୀ ସେ ନୁହେଁ ଅସ୍ତିର ।''*

*-ତତ୍ତ୍ୱ ବୋଧିନୀ- ୬ଷ୍ଠ ବୋଧିନୀ*

ଏ କ୍ଷେତ୍ରରେ ଅଚ୍ୟୁତାନନ୍ଦ ତନ୍ତ୍ର ଦ୍ୱାରା ପ୍ରଭାବିତ ହୋଇଥିବା କଥା ଆଲୋଚକ ଚିତ୍ତରଞ୍ଜନ ଦାସ ପ୍ରକାଶ କରିଛନ୍ତି । ତାଙ୍କ ମତରେ, ''ତନ୍ତ୍ରରେ ମାୟା ବା ମୂଳ ପ୍ରକୃତିକୁ ପୁରୁଷର ଶରୀର ବୋଲି କୁହାଯାଇଛି, ପୁରୁଷ ପରି ପ୍ରକୃତି ମଧ୍ୟ ସତ୍ୟ । ଦୁହେଁ ସତ୍ତାର ଦୁଇଟି ଦିଗ, ଗୋଟିଏ ଚେତନ ଶକ୍ତି ଓ ଅପରଟି ସଞ୍ଚାଳନୀ ଶକ୍ତି । x x x । ଶକ୍ତି ନଥିଲେ ଶିବ ଶବ ପରି । ଏହି କାରଣରୁ ତନ୍ତ୍ର ଶାସ୍ତ୍ରରେ ପ୍ରକୃତିକୁ ପୁରୁଷ ସହିତ ସମାନ ସ୍ଥାନ ଦିଆଯାଇଛି । କିନ୍ତୁ ଅସଲ ଦୃଷ୍ଟିରେ ଦେଖିଲେ ପରମାତ୍ମା ପ୍ରକୃତି ବା ପୁରୁଷ କେବଳ କୌଣସିଟି ନୁହନ୍ତି ।'' (ଅଚ୍ୟୁତାନନ୍ଦ ଓ ପଞ୍ଚସଖା ଧର୍ମ) । ଅଚ୍ୟୁତାନନ୍ଦ ସୃଷ୍ଟିତତ୍ତ୍ୱ ମଧ୍ୟରେ

ପ୍ରକୃତିକୁ ଗ୍ରହଣ କରିଛନ୍ତି । ତାଙ୍କ ମତରେ ପ୍ରଥମେ ସ୍ୱୟଂ ବ୍ରହ୍ମ ଥିଲେ, ତାଙ୍କ ଠାରୁ ପ୍ରକୃତି ସୃଷ୍ଟି ହେଲା ଓ ଏହି ପ୍ରକୃତିରୁ ସବୁଜାତ ହୋଇଛି ।

*"ଆଦ୍ୟରେ ସ୍ୱୟଂ ଏକ ବ୍ରହ୍ମ ଥିଲା*
*ତହିଁରୁ ପ୍ରକୃତି ଜାତ ହୋଇଲା ।*
*ପ୍ରକୃତିରୁ ସବୁ ହୋଇଲା ଜାତ*
*ଏକୋଇଶପୁର ହୋଇଲା ଖ୍ୟାତ ।"*

*-ଛୟାଳିଶ ପଟଳ- ୪ର୍ଥ ପଟଳ*

ଅଚ୍ୟୁତାନନ୍ଦ 'ତତ୍ତ୍ୱବୋଧିନୀ' ଗ୍ରନ୍ଥର ଅଷ୍ଟମ ଅଧ୍ୟାୟରେ ରାଧାକୃଷ୍ଣଙ୍କୁ ଭାଇଭଉଣୀ ରୂପେ ବର୍ଣ୍ଣନା କରିଛନ୍ତି । ଏଠାରେ ରାଧାକୃଷ୍ଣ ହେଉଛନ୍ତି ଆଦିପୁରୁଷ ଓ ଆଦିନାରୀ । ସେମାନଙ୍କର ଜନ୍ମଦାତ୍ରୀ ଆଦିଶକ୍ତି ଓ ସେମାନେ ଏକ ଶକ୍ତି ଠାରୁ ଜନ୍ମ ହୋଇଥିବାରୁ ପରସ୍ପର ଭାଇଭଉଣୀ । ସେଥିପାଇଁ ପ୍ରକୃତି ଆଉ ପୁରୁଷଙ୍କୁ ଭିନ୍ନ ରୂପ ବୋଲି ଭାବିବା ଉଚିତ ନୁହେଁ । ବସ୍ତୁତଃ ଭିନ୍ନ ରୂପ ପରି ଜଣା ପଡୁଥିଲେ ହେଁ ବାସ୍ତବରେ ସେମାନେ ଅଭିନ୍ନ ।

ସୃଷ୍ଟି ପ୍ରକ୍ରିୟାର ପ୍ରଥମ ସ୍ପନ୍ଦନକୁ ସାଧକ କବି ଅଚ୍ୟୁତାନନ୍ଦ ନିଜର କଳ୍ପନା ବଳରେ ଅନୁମାନ କରିଛନ୍ତି । ତାଙ୍କୁ ଜଣାଯାଇଛି ସେହି ସମୟରେ ଝଙ୍କୃତ ହେଉଥିବା ଶବ୍ଦ ହେଉଛି ଠିକ ବୀଣାର ଝଙ୍କାର ପରି । ତେଣୁ ସେ ଲେଖିଛନ୍ତି-

*"ଆଚମ୍ବିତ ବୀଣା ସ୍ୱରିତ ହେଲା । ଅକଳିତରୁ ଅଦେହ ଜନ୍ମିଲା ।"*

*-ଅକଳିତ ସଂହିତା - ୧ମ ପଟଳ*

ପଞ୍ଚସଖା ଧର୍ମଦର୍ଶନରେ ମହତ୍ତ୍ୱପୂର୍ଣ୍ଣ ସ୍ଥାନ ଲାଭ କରିଥିବା ସୃଷ୍ଟିତତ୍ତ୍ୱ ସଂପର୍କରେ ଅଚ୍ୟୁତାନନ୍ଦ ଏପରି ତାତ୍ତ୍ୱିକ ବ୍ୟାଖ୍ୟା କରିଥିଲେ ମଧ୍ୟ ପରଂବ୍ରହ୍ମଙ୍କର ସୃଷ୍ଟି ରହସ୍ୟ ଜାଣିବାର ଆବଶ୍ୟକତା ନାହିଁ ବୋଲି କହିଛନ୍ତି । ପ୍ରଥମେ ଭଗବାନଙ୍କର ସୃଷ୍ଟି କିପରି ହେଲା, ସେକଥା ଜାଣିବା ପାଇଁ ଯେକୌଣସି ବ୍ୟକ୍ତି ଉତ୍ସୁକ ହେବା ସ୍ୱାଭାବିକ କଥା । କିନ୍ତୁ ଏପ୍ରକାର ପ୍ରଶ୍ନବାଚୀକୁ ଏଡ଼ାଇ ଦେଇଛନ୍ତି ଅଚ୍ୟୁତାନନ୍ଦ । ତାଙ୍କ ମତରେ ପରଂବ୍ରହ୍ମ ଶାଶ୍ୱତ, ଅନାଦି କାଳାତୀତ ଓ ସେ ନିଜେ ହିଁ ନିଜର ସ୍ରଷ୍ଟା ।

*"ସେ ଅଣାକାର ମଣ୍ଡଳ ନିରାକାର ଜାଣ*
*ରୂପରେଖ ନାହିଁ ତାର ଆପେ ନିରିମାଣ ।"*

*-କୈବର୍ତ୍ତଗୀତା*

ଏହି ପଦକରେ ଯେପରି ଭକ୍ତ ମନରେ ଉଙ୍କି ମାରୁଥିବା ସମସ୍ତ ପ୍ରଶ୍ନ ସମାହିତ ହୋଇ ପାରିଛି । ନିରାକାର ବ୍ରହ୍ମକୁ ଜାଣିବାର ସମସ୍ତ କାମନା ବାସନା ଚରିତାର୍ଥ ହୋଇଛି । ସତେ ଯେପରି ସୃଷ୍ଟିର ରହସ୍ୟ ଉନ୍ମୋଚିତ ହୋଇ ପାରିଛି ଅତି ସହଜରେ ।

## (୩) ପିଣ୍ଡ-ବ୍ରହ୍ମାଣ୍ଡ ତତ୍ତ୍ୱ-

ସାଧାରଣତଃ ପିଣ୍ଡ କାୟା ବା ଶରୀର ଅର୍ଥରେ ଗୃହୀତ । ସାଧନା ଦ୍ୱାରା କାୟାକୁ ପବିତ୍ର କରି ପାରିଲେ ବ୍ରହ୍ମାଣ୍ଡ ଉପଲବ୍ଧିର ମାର୍ଗ ସୁଗମ ହୋଇଥାଏ । ଏହାହିଁ କାୟା ସାଧନାର ମୂଳତତ୍ତ୍ୱ । ସର୍ବଘଟରେ ବିଦ୍ୟମାନ ଶୂନ୍ୟପୁରୁଷଙ୍କୁ ନିଜ ଭିତରେ ଉପଲବ୍ଧି କରିବା ଏହି ସାଧନାର ଅନ୍ୟତମ ଉଦ୍ଦେଶ୍ୟ । ସେଥିପାଇଁ ସାଧକ କାୟାକୁ ବ୍ରହ୍ମାଣ୍ଡର ପ୍ରତୀକ ରୂପେ ପରିକଳ୍ପନା କରି ଯୋଗ ସାଧନାରେ ଏହାକୁ ଉଚ୍ଚ ସ୍ଥାନ ଦେଇଥାନ୍ତି । ଏହି ଶରୀର ମଧ୍ୟରେ ସମସ୍ତ ତୀର୍ଥ-ବ୍ରତ-ଦେବଦେବୀ ଅଛନ୍ତି । ତେଣୁ ସାଧକ ଶରୀର ସାଧନା ଦ୍ୱାରା ନିଜ ଭିତରେ ପରମାତ୍ମାଙ୍କୁ ଦର୍ଶନ କରି ପରମ ପଦ ଲାଭ କରନ୍ତି ଓ ବାହାରର କୌଣସି ତୀର୍ଥ ବ୍ରତ ଦେବଦେବୀଙ୍କ ପ୍ରତି ଆକୃଷ୍ଟ ହୁଅନ୍ତି ନାହିଁ ।

ଭାରତୀୟ ସାଧନା କ୍ଷେତ୍ରରେ ପିଣ୍ଡବ୍ରହ୍ମାଣ୍ଡ ତତ୍ତ୍ୱ ପ୍ରାଚୀନ ଯୁଗରୁ ପ୍ରଚଳିତ । 'ଶ୍ରୀମଦ୍‌ଭଗବତ ଗୀତା'ରେ ସାଧକ ସିଦ୍ଧିଲାଭ କଲେ ନିଜକୁ ବିଶ୍ୱରେ ଏବଂ ବିଶ୍ୱକୁ ନିଜ ଭିତରେ ଉପଲବ୍ଧି କରେ ବୋଲି କୁହାଯାଇଛି ।

*''ସର୍ବ ଭୂତସ୍ଥମାତ୍ମାନଂ, ସର୍ବ ଭୂତାନି ଚାତ୍ମନି*
*ଈକ୍ଷତେ ଯୋଗଯୁକ୍ତାତ୍ମା, ସର୍ବତ୍ର ସମଦର୍ଶନଃ ।''*

*-ଧ୍ୟାନଯୋଗ - ୬ଷ୍ଠ ଅ/୨୯ ପଦ*

ଭଗବାନ ଶ୍ରୀକୃଷ୍ଣ ନିଜର ପ୍ରିୟ ସଖା ଅର୍ଜ୍ଜୁନଙ୍କୁ ଯେଉଁ ବିଶ୍ୱରୂପ ଦର୍ଶନ କରାଇଥିଲେ, ତାହା ମଧ୍ୟରେ ଏହି ପିଣ୍ଡବ୍ରହ୍ମାଣ୍ଡ ତତ୍ତ୍ୱ ହିଁ ନିହିତ । ପ୍ରଭୁ ଅର୍ଜ୍ଜୁନଙ୍କୁ କହିଥିଲେ, ''ଯାହାସବୁ ଜଗତରେ ଦେଖୁଛୁ, ଯାହା ଦେଖିବାକୁ ଇଚ୍ଛା କରିଛୁ, ସେସବୁ ମୋ ଦେହରେ ଏକତ୍ର ହୋଇଅଛି, ତୁ ଦେଖ ।'' ପିଣ୍ଡ ଏବଂ ବ୍ରହ୍ମାଣ୍ଡ ଯେ ଅଭିନ୍ନ ତାହା ହିଁ ଏଠାରେ ସୂଚିତ ହୋଇଛି । ସାଧକ ନିଜର ଶରୀରକୁ ସାଧନା ଉପଯୋଗୀ କରି ପାରିଲେ ତା'ମଧ୍ୟରେ ପରମାତ୍ମାଙ୍କୁ ଉପଲବ୍ଧ କରିଥାଏ । ସେଥିପାଇଁ କାୟା ସାଧନାର ଗୁରୁତ୍ୱକୁ ବିଭିନ୍ନ ଧର୍ମରେ ସ୍ୱୀକାର କରାଯାଇଛି । ବୌଦ୍ଧ ଓ ନାଥଧର୍ମରେ କାୟାସାଧନା ଉପରେ ପର୍ଯ୍ୟବେସିତ ପିଣ୍ଡ ବ୍ରହ୍ମାଣ୍ଡ ତତ୍ତ୍ୱର ସ୍ଥାନ ଥିଲା ଅତି ଉଚ୍ଚରେ । ବୌଦ୍ଧ ସିଦ୍ଧାଚାର୍ଯ୍ୟ ସରହପାଦ ତାଙ୍କର ଗୋଟିଏ ଦୋହାରେ କହିଛନ୍ତି-

*"ଏଥୁ ସେ ସୁରସରି ଯମୁନା ଏଥୁ ସେ ଗଙ୍ଗା ସାଅରୁ*
*ଏତ୍ଥୁ ପଆଗ ବଣାରସି ଏତ୍ଥୁ ସେ ଚନ୍ଦ ଦିବା ଅରୁ ।"*

ଅର୍ଥାତ୍ ଏହି ଶରୀର ମଧ୍ୟରେ ଗଙ୍ଗା, ଯମୁନା, ଗଙ୍ଗା ସାଗର, ପ୍ରୟାଗ, ବାରାଣସୀ, ଚନ୍ଦ୍ର, ସୂର୍ଯ୍ୟ ରହିଅଛନ୍ତି । ତେଣୁ ସେ ଏହି ଦେହ ସଦୃଶ ତୀର୍ଥ ଓ ସୁଖମୟ ସ୍ଥାନ ଆଉ କେଉଁଠି ଦେଖିନାହାନ୍ତି ।

ନାଥ ସଂପ୍ରଦାୟର ପ୍ରଧାନ ଗ୍ରନ୍ଥ ସିଦ୍ଧ ସିଦ୍ଧାନ୍ତ ସଂଗ୍ରହ ଓ ଗୋରେଖ ବାଣୀରେ ପିଣ୍ଡ ବ୍ରହ୍ମାଣ୍ଡ ତତ୍ତ୍ୱ ଉପରେ ଗୁରୁତ୍ୱ ଦିଆଯାଇ ପିଣ୍ଡ ଏବଂ ବ୍ରହ୍ମାଣ୍ଡକୁ ଅଭିନ୍ନ ବୋଲି କୁହାଯାଇଛି । ଶିବ ସଂହିତାରେ ବର୍ଣ୍ଣିତ ହୋଇଛି ଯେ, ଯୋଗୀ ଜ୍ଞାନଲାଭ କରିବା ପରେ ନିଜ ଶରୀର ମଧ୍ୟରେ ସୂର୍ଯ୍ୟ, ଚନ୍ଦ୍ର, ଗ୍ରହ-ନକ୍ଷତ୍ର, ଦେବାସୁର, ଯକ୍ଷ ରାକ୍ଷସ, ମୁନି ଋଷି, ସିଦ୍ଧ, ଗନ୍ଧର୍ବ ଓ ବିଶ୍ୱର ଯାବତୀୟ ସ୍ଥାବର ଜଙ୍ଗମକୁ ଦେଖିପାରେ ।

ପ୍ରାଚୀନ ଓଡ଼ିଆ ସନ୍ଥ ସାହିତ୍ୟରେ ଏହି ପିଣ୍ଡ ବ୍ରହ୍ମାଣ୍ଡବାଦ ସ୍ୱତନ୍ତ୍ର ସ୍ଥାନ ଲାଭ କରିଛି । ନାନାପ୍ରକାର ପୁରାଣ, ଗୀତା, ସଂହିତା, ଭଜନ ପ୍ରଭୃତିରେ ବହୁଳ ଭାବରେ ଏହାର ଉଦାହରଣ ପୁରି ରହିଛି । ପଣ୍ଡୁ ରାଗିଯାଇ ଦୁଷ୍ଟ ବାଳକ ଭୀମକୁ ଯେତେବେଳେ ମାରିବାକୁ ଗୋଡ଼ାଇଲେ ସେତେବେଳେ ଅଗ୍ନି ଦେବତା ପଣ୍ଡୁଙ୍କୁ ଯେଉଁପରି ଉପଦେଶ ପ୍ରଦାନ କରିଛନ୍ତି, ସେଥିରୁ ପିଣ୍ଡ ବ୍ରହ୍ମାଣ୍ଡ ତତ୍ତ୍ୱହିଁ ପ୍ରକାଶ ପାଇଛି । ସାରଳା ମହାଭାରତରେ ଏହି ପ୍ରସଙ୍ଗ ବର୍ଣ୍ଣିତ ହୋଇଛି ଏହିପରି-

"ପ୍ରଥମେଣ ଶିର ଯେ ତାଳୁରେ ବସେ ବ୍ରହ୍ମା
କପାଳ ପାଟିରେ ନାରାୟଣ ମହାତ୍ମା ।
ଚନ୍ଦ୍ର ସୂର୍ଯ୍ୟ ଦେବତାୟେ ଅଛନ୍ତି ଚକ୍ଷୁ ବେନି
ନାସାୟେ ବସଇ ହୋ ପବନ ମହାଜ୍ଞାନୀ ।"

-ଆଦିପର୍ବ

କେବଳ ଓଡ଼ିଶାର ସନ୍ଥକବିମାନେ ନୁହନ୍ତି ସର୍ବ ଭାରତୀୟ ସ୍ତରରେ ମଧ୍ୟ ଏହି ପିଣ୍ଡ ବ୍ରହ୍ମାଣ୍ଡ ତତ୍ତ୍ୱକୁ ସାଧନା ପଦ୍ଧତିରେ ଗୁରୁତ୍ୱପୂର୍ଣ୍ଣ ସ୍ଥାନ ଦିଆଯାଇଥିଲା । ସେଥିପାଇଁ ସନ୍ଥ ସାଧକ ନାନକ କୁହନ୍ତି-

*"ଯୋ ବ୍ରହ୍ମାଣ୍ଡେ ସୋଇ ପିଣ୍ଡେ*
*ଯୋ ଖୋଜେ ସୋ ପାୱେ ।"*

ଚଣ୍ଡୀଦାସଙ୍କ ମତରେ ''ଭାଣ୍ଡକେ ଜାନିଲେ ଜାନି ବ୍ରହ୍ମାଣ୍ଡେର ତତ୍ତ୍ୱ ।'' ଓଡ଼ିଶାର ମଧ୍ୟଯୁଗୀୟ ସନ୍ଥକବିମାନଙ୍କ ସାହିତ୍ୟରେ ଏହିପିଣ୍ଡ ବ୍ରହ୍ମାଣ୍ଡ ବାଦ ପ୍ରସଙ୍ଗ ସ୍ପଷ୍ଟ ଭାବରେ ଉଲ୍ଲେଖ କରାଯାଇଛି । ବଳରାମ ଦାସ ଏହି ଶରୀର ମଧ୍ୟରେ ସ୍ୱର୍ଗ, ମର୍ତ୍ତ୍ୟ ଓ ପାତାଳର ସ୍ଥିତି ନିର୍ଣ୍ଣୟ କରିଛନ୍ତି ।

*''ହୃଦ କମଳୁ ଶିଖାଯାଏ । ସ୍ୱର୍ଗ ବୋଲିଣ ବେଦ କହେ ।*
*କଣ୍ଠରୁ କଟିଯାଏ ହୋଇ । ମର୍ତ୍ତ୍ୟ ବୋଲିଣ ବେଦ କହି ।*
*କଟିରୁ ପାଦ ଯାଏ ପୁଣ । ପାତାଳ ବୋଲି ହେ ଅର୍ଜୁନ ।''*

*-ବ୍ରହ୍ମାଣ୍ଡ ଭୂଗୋଳ*

ପୁଣି ସେ ''ବିରାଟ ଗୀତା''ରେ କହିଛନ୍ତି-

*''ବ୍ରହ୍ମାଣ୍ଡ ଯେତେ ବିଧିମତ । ପିଣ୍ଡରେ ଅଛନ୍ତି ସମସ୍ତ ।*
*ପିଣ୍ଡ ବ୍ରହ୍ମାଣ୍ଡ ଏକମତ । ତୋ ଆଗେ କହିଦେଲି ତତ୍ତ୍ୱ ।''*

ଜଗନ୍ନାଥ ଦାସଙ୍କ ନାମରେ ପ୍ରଚଳିତ 'ସ୍ତିରୀ ପୁରୁଷ ବାଣ୍ଟ'ରଚନାରେ ଶରୀର ମଧ୍ୟରେ ନାନା ଦ୍ୱୀପ ଓ ସମୁଦ୍ରର ଅବସ୍ଥିତି ପରିକଳ୍ପନା କରାଯାଇଛି । ଶିଶୁ ଅନନ୍ତଙ୍କ 'ହେତୁ ଉଦୟ ଭାଗବତ'ର ତୃତୀୟ ଅଧ୍ୟାୟରେ ପିଣ୍ଡ ମଧ୍ୟରେ ବ୍ରହ୍ମାଣ୍ଡର ବର୍ଣ୍ଣନା ଅତି ଚମତ୍କାର ହୋଇଛି । ପିଣ୍ଡ ମଧ୍ୟରେ ପଞ୍ଚଭୂତ, ପଞ୍ଚଜ୍ଞାନେନ୍ଦ୍ରିୟ, ପଞ୍ଚକର୍ମେନ୍ଦ୍ରିୟ, ଦେବତା ମଣ୍ଡଳ, ଗଙ୍ଗା, ଯମୁନା, ସରସ୍ୱତୀ, ବୃନ୍ଦାବନ, ରାଧାକୁଣ୍ଡ, ଶ୍ୟାମକୁଣ୍ଡ, ବ୍ୟାସ ସରୋବର, ନୀଳାଦ୍ରି, ମଥୁରା, ଦ୍ୱାରକା, ଋଗ୍‌ବେଦ, ଷୋଳନାମ ବତିଶ ଅକ୍ଷର ପ୍ରଭୃତିର ସ୍ଥିତି ସେ ନିର୍ଣ୍ଣୟ କରିଛନ୍ତି ।

ସନ୍ଥକବି ଅଚ୍ୟୁତାନନ୍ଦ ଏକ ଭିତରେ ବିରାଟର କଳ୍ପନା କରିଛନ୍ତି । ସଂସାରର ସବୁଠାରେ ସେହି ପରମାତ୍ମାଙ୍କର ଲୀଳାଖେଳା ଲାଗିଛି । ସେ ପ୍ରତ୍ୟେକ ଘଟ ମଧ୍ୟରେ ରହି ଲୀଳା କରୁଛନ୍ତି ଓ ତାଙ୍କର ସମସ୍ତ ସୃଷ୍ଟି ଏହି ଶରୀର ମଧ୍ୟରେ ପ୍ରକାଶ ପାଉଛି । ସେହି ପରମାତ୍ମାଙ୍କ ସହିତ ଏ ଶରୀରର ସଂପର୍କ କଥା କହିବାକୁ ଯାଇ ସେ ଲେଖିଛନ୍ତି-

*''ମୋହ ତହିଁ ଦେଖ ତୁମ୍ଭେ ରହିଅଛ ତୁମ୍ଭ ତହିଁ ପରା ମୁହିଁ*
*ତୁମ୍ଭ ମୋ ହିସାବ କରିଣ ବସିଲେ ବିଦ୍ୟା ହିଁ ଅଣ୍ଟିବ ନାହିଁ ।''*

*-ଭାବନାଚର*

ପରମାତ୍ମା ଯେତେବେଳେ ନିଜେ ଏ ଶରୀର ଭିତରେ ବିଦ୍ୟମାନ ଅଛନ୍ତି, ସେତେବେଳେ ସେ ସୃଷ୍ଟି କରିଥିବା ବ୍ରହ୍ମାଣ୍ଡ ମଧ୍ୟ ପିଣ୍ଡ ମଧ୍ୟରେ ରହିଛି । ଅଚ୍ୟୁତାନନ୍ଦଙ୍କ ଭାଷାରେ-

*"ପାଦ ଯାଜପୁର କଟି ତୋ କଟକ*
*ନାଭି ତୋ ଭୁବନେଶ୍ୱର*
*ତୁଳସୀ ଚଉରା ଯେ ଅଠରନଳା*
*ବଡ଼ଦାଣ୍ଡ ବେଦସାର ।"*

*-ଗରୁଡ଼ଗୀତା*

ଶରୀର ମଧ୍ୟରେ ଶ୍ରୀକ୍ଷେତ୍ରର ପରିକଳ୍ପନା ଓଡ଼ିଶାର ବୈଷ୍ଣବମାନଙ୍କର ଅନ୍ୟତମ ବିଶେଷତ୍ୱ । ସେମାନଙ୍କ ମତରେ ଶ୍ରୀକ୍ଷେତ୍ର ଶ୍ରେଷ୍ଠ ସ୍ଥାନ ଓ ଜଗନ୍ନାଥ ପରଂବ୍ରହ୍ମ । ସେ ଆତ୍ମା ରୂପେ ସମସ୍ତଙ୍କ ଶରୀରରେ ବିଦ୍ୟମାନ । ସେଥିପାଇଁ ବଳରାମଦାସ ଶରୀରକୁ ବଡ଼ଦେଉଳ ରୂପେ ଗ୍ରହଣ କରିଛନ୍ତି ।

*"ବଡ଼ଦେଉଳ ବୋଲି ଯାହା । ନିଶ୍ଚୟ ଏ ତୋହର କାୟା ।"*

*-ବିରାଟ ଗୀତା*

ପୁଣି ଶରୀରକୁ ଶ୍ରୀକ୍ଷେତ୍ର ରୂପେ ସ୍ୱୀକାର କରିଥିବାରୁ ଶ୍ରୀକ୍ଷେତ୍ରର ବିଭିନ୍ନ ସ୍ଥାନକୁ ମଧ୍ୟ ଶରୀର ମଧ୍ୟରେ ଚିହ୍ନାଇ ଦିଆଯାଇଛି । ଏପରିକି ଓଡ଼ିଶାର ବିଭିନ୍ନ ତୀର୍ଥ ସ୍ଥାନ ମଧ୍ୟ ଶରୀର ଭିତରେ ରହିଛି । ବଳରାମ ଦାସ ଆଣ୍ଠୁଠାରୁ ମସ୍ତକ ପର୍ଯ୍ୟନ୍ତ ଅଂଶକୁ ନନ୍ଦିଘୋଷ ରଥ ବୋଲି କହିଛନ୍ତି । ତାଙ୍କ ମତରେ ବଡ଼ଦାଣ୍ଡ, ଅଠରନଳା ଓ ଅରୁଣ ସ୍ତମ୍ଭର ସ୍ଥିତି ଏହି ଶରୀର ମଧ୍ୟରେ । ଜଗନ୍ନାଥ ଦାସ ଶରୀର ମଧ୍ୟରେ ବଳଦେବଙ୍କୁ ସ୍ଥାନ ଦେଇଛନ୍ତି-

*"ଶ୍ରୀବଳଦେବ ଯେ ବିରାଟ । ଆପଣା ଦେହରେ ତୁ ଭେଟ ।"*

*-ନାମ ଚନ୍ଦ୍ରିକା- ୨ୟ ଅଧ୍ୟାୟ*

ଅଚ୍ୟୁତାନନ୍ଦ ପିଣ୍ଡ ବ୍ରହ୍ମାଣ୍ଡବାଦ ବର୍ଣ୍ଣନା ପ୍ରସଙ୍ଗରେ ଏହି ଶରୀରକୁ ଶ୍ରୀକ୍ଷେତ୍ରର ଶ୍ରୀମନ୍ଦିର ଓ ସେଥିରେ ପ୍ରଭୁ ଜଗନ୍ନାଥ ବିଜେ କରିଥିବା କଥା କହିଛନ୍ତି । ଛୟାଳିଶ ପଟଳର ଏକବିଂଶ ପଟଳରେ ସେ ଶରୀର ଭିତରେ ନନ୍ଦିଘୋଷ, ବାଇଶି ପାବଛ ଓ ସ୍ୱର୍ଗଦ୍ୱାର ପ୍ରଭୃତି ନିର୍ଣ୍ଣୟ କରିଛନ୍ତି । 'ବୃନ୍ଦାଗୀତ' ଗ୍ରନ୍ଥରେ ସେ କହିଛନ୍ତି ଯେ, ଶରୀରର କଣ୍ଠରେ ଅଠରନଳା, ମୁଖରେ ସିଂହଦ୍ୱାର, ନାସାପୁଡ଼ାରେ ଜୟବିଜୟ, ଦାନ୍ତରେ ବାଇଶି ପାହାଚ, ଗଣ୍ଡ ସ୍ଥାନରେ ବଡ଼ଦାଣ୍ଡ, ଜିହ୍ୱାରେ ଜଗମୋହନ, ମନ ପବନରେ ଗରୁଡ଼ ସ୍ତମ୍ଭ, ନାସାର ଡ଼ାହାଣ ପୁଡ଼ାରେ ଗରୁଡ଼ର ଡ଼ାହାଣ ଡେଣା ଓ ବାମ ପୁଡ଼ାରେ ବାମ ଡ଼େଣା, ନାସାରେ କଳ୍ପବଟ, ମୁଖ ମଣ୍ଡଳରେ ବାଆବଟ ଅବସ୍ଥାନ କରନ୍ତି ।

*"କଣଟି ଅଠର ନଳା ତୋହର । ମୁଖଟି ଅଟଇ ସିଂଘ ଦୁଆର ।*
*ନାସାପୁଡ଼ା ଜୟବିଜୟ ଦୁଇ । ଦନ୍ତ ବାଇଶି ପାବଛ୍ଛ ବୋଲାଇ ।*
*ସଖି ଗୋ ! ଗଣ୍ଡ ସ୍ଥାନ ମୁଦ୍ରାଟି । ବଡ଼ଦାଣ୍ଡ ଗୋଟି ଅଟଇ ସେଟି ।*
*ଜିହ୍ୱାକୁ ଜଗମୋହନଟି କହି । ମନ ପବନ ଗରୁଡ଼ ଖମ୍ବହିଁ ।*
*ନାସାର ଡ଼ାହାଣ ପୁଡ଼ାଟି ଜାଣ । ଗରୁଡ଼ ଡ଼ାହାଣ ଢେଣା ପ୍ରମାଣ ।*
*ସଖି ଗୋ ! ବାମ ପୁଡ଼ାଟି ସେହି । ବାମଢ଼େଣା ବୋଲି ପ୍ରମାଣ ସେହି ।*
*ନାସାଟି ଅଟଇ କଳପ ବଟ । ବାଆବଟ ମୁଖ ମଣ୍ଡଳେ ଭେଟ ।"*

ପିଣ୍ଡ ବା ଶରୀର ହେଉଛି ସାଧନାର ମୂଳପୀଠ । ତାନ୍ତ୍ରିକ ଯୋଗ ସାଧନାରେ ଯନ୍ତ୍ର-ମନ୍ତ୍ର ସହିତ ଶରୀରକୁ ନିବିଡ଼ ଭାବରେ ଯୋଡ଼ି ଦିଆଯାଇଛି । ଅଚ୍ୟୁତାନନ୍ଦ ସେହିପରି ଏହି ଶରୀରକୁ ସିଦ୍ଧିଲାଭର ମୂଳଉସ ଭାବରେ ଗ୍ରହଣ କରି ସେଥିରେ ବିଭିନ୍ନ ମନ୍ତ୍ର-ଯନ୍ତ୍ରର ସ୍ଥିତି ନିର୍ଣ୍ଣୟ କରିଛନ୍ତି । ଅଷ୍ଟାଦଶାକ୍ଷର ମନ୍ତ୍ର "କ୍ଲୀଂ କୃଷ୍ଣାୟ ଗୋବିନ୍ଦାୟ ଗୋପୀଜନ ବଲ୍ଲଭାୟ ନମଃ" ଶରୀରର କେଉଁଠାରେ ଅବସ୍ଥାନ କରିଛନ୍ତି ତାହା ବିଶଦ ଭାବରେ 'ଗୁରୁଭକ୍ତି ଗୀତା'ରେ ବର୍ଣ୍ଣିତ ହୋଇଛି । ଏଥି ସହିତ ଦ୍ୱାଦଶ ତିଳକ ବିଧି ଓ ତତ୍ ସଂଲଗ୍ନ ନାନା ଅକ୍ଷରର ସଂପର୍କ ନିର୍ଣ୍ଣୟ କରି ଶରୀର ମଧ୍ୟରେ ସେ ସବୁକୁ ଠାବ କରିଛନ୍ତି । ଏପରି ଭାବରେ ଅଚ୍ୟୁତାନନ୍ଦ ଶରୀର ବା ପିଣ୍ଡ ଭିତରେ ବ୍ରହ୍ମାଣ୍ଡର ପରିକଳ୍ପନା ସହିତ ସେଥିରେ ଓଡ଼ିଶାର ବିଭିନ୍ନ ତୀର୍ଥ ସ୍ଥାନକୁ ଦେଖାଇ ଦେଇଛନ୍ତି । ପୁଣି ସ୍ୱତନ୍ତ୍ର ଭାବରେ ଶରୀରକୁ ଶ୍ରୀକ୍ଷେତ୍ର-ଶ୍ରୀମନ୍ଦିର ମନେକରି ତହିଁରେ ଦେବଦେବୀ, ଯନ୍ତ୍ର-ମନ୍ତ୍ରର ଅବସ୍ଥିତି ନିର୍ଣ୍ଣୟ କରିଛନ୍ତି ।

## (୪) ସଗୁଣ ଓ ନିର୍ଗୁଣ ଉପାସନା-

ପରଂବ୍ରହ୍ମ ବା ଶୂନ୍ୟପୁରୁଷ ସର୍ବବ୍ୟାପୀ । ସେ ଅଲେଖ, ଅଣାକାର, ନିରଞ୍ଜନ, ନିରାକାର ଓ ନିର୍ବିକଳ୍ପ । ନାନା ପ୍ରକାର ସାତ୍ତ୍ୱିକ ଗୁଣଯୁକ୍ତ ହୋଇ ସେ ଯଦି ଅବତାର ଗ୍ରହଣ କରନ୍ତି, ତେବେ ତାଙ୍କୁ ସଗୁଣ ବ୍ରହ୍ମ କୁହାଯାଏ । ପୁଣି ତାଙ୍କ ଠାରେ କୌଣସି ଗୁଣର ପରିକଳ୍ପନା କରାନଗଲେ ସେ ହୁଅନ୍ତି ନିର୍ଗୁଣ ବ୍ରହ୍ମ । ଭାରତୀୟ ଧର୍ମ ଦର୍ଶନରେ ବ୍ରହ୍ମର ଏହି ଦୁଇଟି ରୂପ ପରିକଳ୍ପନାକୁ 'ପର' ଏବଂ 'ଅପର' ବୋଲି ମଧ୍ୟ କହୁଯାଇଛି । ଗୁଣ, ଚିହ୍ନ ଓ ଲକ୍ଷଣ ଯୁକ୍ତ ହେଲେ ତାଙ୍କର ଅପର ସତ୍ତାକୁ କୁହାଯାଏ ସଗୁଣ ବ୍ରହ୍ମ ଏବଂ ସତ୍ତାହୀନ ସତ୍ତାକୁ କୁହାଯାଏ 'ପର' ବା ନିର୍ଗୁଣ ବ୍ରହ୍ମ । ବେଦ, ଉପନିଷଦ, ଶ୍ରୀମଦ୍‌ଭାଗବତ, ହରିବଂଶ, ବ୍ରହ୍ମବୈବର୍ତ୍ତ, ବିଷ୍ଣୁ, ମତ୍ସ୍ୟ, କୂର୍ମ, ବରାହ ଓ ବାମନ ପ୍ରଭୃତି ପୁରାଣରେ ବ୍ରହ୍ମଙ୍କର ସଗୁଣ ଲୀଳା ବିଶଦ ଭାବରେ ବର୍ଣ୍ଣିତ ହୋଇଛି ।

ସୃଷ୍ଟିରେ ଧର୍ମରକ୍ଷା ଓ ଅଧର୍ମର ବିନାଶ ପାଇଁ ସେ ବ୍ରହ୍ମ ନାନା ଅବତାର ଗ୍ରହଣ କରି ଲୀଳା ଖେଳା କରିଥାନ୍ତି । ସେଥିପାଇଁ ସାଧନା ମାର୍ଗରେ ସନ୍ଥସାଧକମାନେ ବ୍ରହ୍ମଙ୍କର ଏହି ସଗୁଣ ଲୀଳା ଆସ୍ୱାଦନ କରି କୃତାର୍ଥ ହୋଇଥାନ୍ତି । ଭକ୍ତ-ଧର୍ମାଚାର୍ଯ୍ୟ ନିମ୍ବାର୍କ ବଲ୍ଲଭାଚାର୍ଯ୍ୟ, ବିଠ୍ଠଲନାଥଜୀ, ସୁରଦାସ ପ୍ରଭୃତି 'କୃଷ୍ଣ' ଏବଂ ସ୍ୱାମୀ ରାମାନନ୍ଦ, ତୁଳସୀ ଦାସ 'ରାମ' ଅବତାର ଲୀଳା ଉପରେ ଗୁରୁତ୍ୱ ଦେଇଥିଲେ । କବୀର ନିର୍ଗୁଣବାଦୀ ଥାଇ ମଧ୍ୟ ସଗୁଣ-ବ୍ରହ୍ମ ଉପାସକ ଥିଲେ ।

ବେଦ, ଉପନିଷଦରେ ସଗୁଣ ବ୍ରହ୍ମ ସହିତ ନିର୍ଗୁଣ ବ୍ରହ୍ମର ପରିକଳ୍ପନା କରାଯାଇ ବ୍ରହ୍ମର ନିର୍ଗୁଣତ୍ୱ ଉପରେ ଗୁରୁତ୍ୱାରୋପ କରାଯାଇଛି । ଶ୍ରୀମଦ୍‌ଭାଗବତରେ ମଧ୍ୟ କୁହାଯାଇଛି ବ୍ରହ୍ମର ଆକାର ନାହିଁ, ଇନ୍ଦ୍ରିୟ ନାହିଁ, କିନ୍ତୁ ସବୁ ଇନ୍ଦ୍ରିୟ ଗୁଣ ପ୍ରକାଶ କରନ୍ତି । ସେ ଜଗତ ଧାରକ ଓ ନିର୍ଗୁଣ ।

*''ସର୍ବେନ୍ଦ୍ରିୟ ଗୁଣାଭାସଂ ସର୍ବେନ୍ଦ୍ରିୟ ବିବର୍ଜିତଂ*
*ଅସକ୍ତଂ ସର୍ବଭୃଚୈବ, ନିର୍ଗୁଣଂ ଗୁଣଭୋକ୍ତୃଚ ।''* ୧୩/୧୫

ନିର୍ଗୁଣ ଭାବନା ବିକାଶ କ୍ଷେତ୍ରରେ ବେଦାନ୍ତର ଭୂମିକା ମଧ୍ୟ ଗୁରୁତ୍ୱପୂର୍ଣ୍ଣ । ଏଥିରେ ସନ୍ନିବେଶିତ ବ୍ରହ୍ମସୂତ୍ରକୁ ଆଧାର କରି ଶଙ୍କରାଚାର୍ଯ୍ୟ ନିର୍ବିଶେଷାଦ୍ୱୈତ, ରାମାନୁଜାଚାର୍ଯ୍ୟ ବିଶିଷ୍ଟାଦ୍ୱୈତ, ମଧ୍ୱାଚାର୍ଯ୍ୟ ଦ୍ୱୈତ ଓ ବଲ୍ଲଭାଚାର୍ଯ୍ୟ ଶୁଦ୍ଧାଦ୍ୱୈତବାଦ ପ୍ରଚାର ମାଧ୍ୟମରେ ନିର୍ଗୁଣ-ବ୍ରହ୍ମ ପ୍ରସଙ୍ଗ ବ୍ୟାଖ୍ୟା କରିଛନ୍ତି । ବୌଦ୍ଧ ଧର୍ମ ଓ ନାଥଧର୍ମ ସାଧନା ମାର୍ଗରେ ଏହି ନିର୍ଗୁଣ ବ୍ରହ୍ମ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଆସିଛି । ନିର୍ଗୁଣ ବ୍ରହ୍ମର ମହତ୍ତ୍ୱ ଦୃଷ୍ଟିରୁ ମଧ୍ୟଯୁଗରେ ନିର୍ଗୁଣ ସଂପ୍ରଦାୟ ନାମରେ ଏକ ଧର୍ମ ସଂପ୍ରଦାୟ ସୃଷ୍ଟି ହୋଇଥିଲା । ତ୍ରିଲୋଚନ, ନାମଦେବ, ସ୍ୱାମୀ ରାମାନନ୍ଦ, ପିପା, ଦାଦୂ, ଫରିଦ, ନାନକ ଓ କବୀର ପ୍ରମୁଖ ଏହି ନିର୍ଗୁଣ ପରମ୍ପରାକୁ ସମୃଦ୍ଧ କରିଥିଲେ ।

ବୈଦିକ ଯୁଗରୁ ଭାରତୀୟ ମଧ୍ୟଯୁଗୀୟ ସନ୍ଥ ପରମ୍ପରା ପର୍ଯ୍ୟନ୍ତ ସମସ୍ତ ଧର୍ମ ଓ ଦର୍ଶନ ତତ୍ତ୍ୱରେ ସଗୁଣ ଏବଂ ନିର୍ଗୁଣ ଉଭୟର ପ୍ରାଧାନ୍ୟ ସ୍ୱୀକାର କରାଯାଇଛି । ସନ୍ଥ କବୀରଙ୍କ ମତରେ ସାକାର ଓ ନିରାକାରର ନିତ୍ୟ ନୃତ୍ୟ ଲାଗି ରହିଛି । ସେ କୁହନ୍ତି-

*''ନିରଗୁନ ଆଗେ ସରଗୁନ ନାଚେ ବାଜେ ସୋହଙ୍ଗ ତୁରା ।''*

ସନ୍ଥକବି ସୁରଦାସ ନିର୍ଗୁଣକୁ ଅଗମ ମନେକରି ସଗୁଣ ଲୀଳାଗାନ କରିଛନ୍ତି । ସେଥିପାଇଁ ଶ୍ରୀକୃଷ୍ଣଙ୍କ ଲୀଳା ବର୍ଣ୍ଣନା କରିବାବେଳେ ସେ କୃଷ୍ଣଙ୍କ ଭିତରେ ଦେଖିଛନ୍ତି ନିର୍ଗୁଣ ପରମେଶ୍ୱରଙ୍କୁ । ସେହିପରି କବୀର ରାମାନନ୍ଦ ଓ ତୁଳସୀ ଦାସ ଦଶରଥ ସୁତ ସାକାର ରାମଚନ୍ଦ୍ରଙ୍କୁ ଭଜନ ନକରି ନିରାକାର ଓ ନିର୍ଗୁଣ ରାମଙ୍କୁ ଉପାସନା କରିଛନ୍ତି ।

ପ୍ରଥମେ ସାକାର ବ୍ରହ୍ମଙ୍କୁ ଉପାସନା କରି ସାଧକ ସାଧନା ପଥରେ ଅଗ୍ରସର ହୋଇଥାଏ । କିନ୍ତୁ ସମୟକ୍ରମେ ତାର ସାଧନା ଯେତେ ତୀବ୍ର ହୁଏ, ସେ ସାକାର ଭିତରେ ନିରାକାର ବ୍ରହ୍ମଙ୍କୁ ଦର୍ଶନ କରେ । ଏହି ପ୍ରକାର ସଗୁଣ-ନିର୍ଗୁଣ ଧାରା ଓଡ଼ିଶାର ସାଧନା କ୍ଷେତ୍ରରେ ପ୍ରବାହିତ ହୋଇଥିଲା ଓ ପଞ୍ଚସଖା ଥିଲେ ଏହି ମାର୍ଗର ପଥିକ । ଭକ୍ତକବି ଜଗନ୍ନାଥ ଦାସ 'ସେବା' ଦ୍ୱାରା ନିର୍ଗୁଣ ଭକ୍ତି ଲାଭ ହୁଏ ବୋଲି କହିଛନ୍ତି ।

*"ମୋ ବିନୁ ଅନ୍ୟ ଯେ ନଜାଣେ । ବିଶ୍ୱାସ ମୋର ଭକ୍ତ ଜଣେ ।*
*ମୋର ସେବାରେ ନିଚ୍ୟେ ଥାଇ । ନିର୍ଗୁଣ ଭକ୍ତି ସେ ଲଭଇ ।"*

*-ଛତ୍ରିଶ ଭାଗବତ- ୫ମ ଅଧ୍ୟାୟ*

ପୁଣି ସେ ରୂପ ଭିତରେ ଅରୂପର ବ୍ୟଞ୍ଜନ ଦେଇ ରୂପ ଠାରୁ ଦୂରରେ ରହିଲେ ସିଦ୍ଧିଲାଭ ସମ୍ଭବ ବୋଲି କହିଛନ୍ତି ।

*"ରୂପକୁ ଅରୂପରେ ଭରି । ରୂପର ସ୍ନେହ ଦୂର କରି ।*
*ସକଳ ଶୂନ୍ୟ ରୂପେ ଦେଖ । ପବନ ବ୍ରହ୍ମ ଇନ୍ଦ୍ରେ ରଖ ।"*

*-ଗୁପତ ଗୀତା- ୪ର୍ଥ ଅଧ୍ୟାୟ*

ଭକ୍ତକବି ବଳରାମଦାସ ବ୍ରହ୍ମଙ୍କୁ ନିର୍ଗୁଣ ଓ ଅରୂପ ଭାବରେ ଅଭିହିତ କରିଛନ୍ତି । ତାଙ୍କ ମତରେ-

*"ମହାଶୂନ୍ୟରେଟି ବିଶ୍ରାମ । ସେଠାରେ ନାହିଁ ଅଛି ନାମ ।*
*ବେଦରେ ମୋର ନାମ ନାହିଁ । ଅରୂପ ବ୍ରହ୍ମ ମୁଁ ଅଟଇ ।"*

ଯଶୋବନ୍ତ ଦାସ ନିର୍ଗୁଣକୁ 'ଅଦେହ' ଓ 'ଅଜୀବ' ବୋଲି ପ୍ରକାଶ କରିଛନ୍ତି ।

*"ଦେହ ନାହିଁ ଅଦେହରେ କରିଅଛି ବାସ*
*ଅଜପା ଅକର୍ମା ଅଣ ଅଭ୍ୟାସ ଅଦୃଶ୍ୟ ।*
*ଚ୍ୟୁତ ନୁହେଁ ଅଚ୍ୟୁତ ସେ ଅଣାକାର ମଯେ*
*ଜୀବ ନୁହେଁ ଅଜୀବ ସେ ପରମରେ ରହେ ।"* *-ଭଜନ*

ଓଡ଼ିଶାର ପଞ୍ଚସଖାଙ୍କ ସମେତ ଅନ୍ୟାନ୍ୟ ସାଧକମାନେ ଜଗନ୍ନାଥ, ବଳଭଦ୍ର, କୃଷ୍ଣ, ରାଧା, ସୁଭଦ୍ରା ପ୍ରଭୃତି ନାନା ଦେବଦେବୀଙ୍କୁ ଉପାସନା କରୁଥିଲେ ହେଁ ସେମାନଙ୍କ ଭିତରେ ଅରୂପ ବ୍ରହ୍ମର ସତ୍ତା ଉପଲବ୍ଧି କରିଥାନ୍ତି । ସେମାନଙ୍କ ଆରାଧ୍ୟ

ଜଗନ୍ନାଥ ଶୂନ୍ୟପୁରୁଷ, ନିରାକାର ଓ ନିର୍ଗୁଣ ରୂପୀ । ସେହିପରି ସାକାରମୟ ବୃନ୍ଦାବନର ରାଧାକୃଷ୍ଣ ସେମାନଙ୍କ ଦ୍ୱାରା ଆତ୍ମା-ପରମାତ୍ମା ରୂପେ ଗୃହୀତ । ବ୍ରହ୍ମାନନ୍ଦ ପଣ୍ଡିତଙ୍କ ସହିତ ତତ୍ତ୍ୱ ଚର୍ଚ୍ଚା ସମୟରେ ଜଗନ୍ନାଥ ଦାସ ବ୍ରହ୍ମକୁ ସଚ୍ଚିଦାନନ୍ଦ, ନିର୍ବିକାର, ନିର୍ଗୁଣ, ଅବ୍ୟୟ, ନିରଞ୍ଜନ ରୂପେ ପ୍ରକାଶ କରିଥିବା କଥା ''ଜଗନ୍ନାଥ ଚରିତାମୃତ''ରେ ବିଶଦ ଭାବରେ ବର୍ଣ୍ଣିତ ହୋଇଛି । ସେଥିରେ ଅଛି-

*''ବ୍ରହ୍ମ ସଚ୍ଚିଦାନନ୍ଦ ଜାଣ । ନିର୍ବିକାର ଯେ ସେ ନିର୍ଗୁଣ ।*
*ନିତ୍ୟ ଯେ ପୁଣି ସର୍ବଗତ । ଅକ୍ଷର ଅବ୍ୟୟ ସେହିତ ।*
*ନିଷ୍କଳ ନିଶ୍ଚୟ ଯେ ଶାନ୍ତ । ନିରବଦ୍ୟ ନିରଞ୍ଜନ ତ ।''*

*-୧୩ଶ ଅଧ୍ୟାୟ*

ଚୈତନ୍ୟ ଦାସ 'ନିର୍ଗୁଣ ମାହାତ୍ମ୍ୟ'ର ସଗୁଣ ଓ ନିର୍ଗୁଣର ସ୍ୱରୂପ ବର୍ଣ୍ଣନା କରି କହିଛନ୍ତି-

*''ନିର୍ଗୁଣ ଭାବକୁ ଯେ ବୁଝେ । ସକଳ କର୍ମ ପରିତେଜେ ।*
*ସଗୁଣ ଭାବ ଯେ ଭଜନ୍ତି । ସକଳ କର୍ମ ଆଚୋରନ୍ତି ।''*

*-୩ୟ ଅଧ୍ୟାୟ*

ସନ୍ଥ ସାଧକ କବି ଅଚ୍ୟୁତାନନ୍ଦ ସଗୁଣ ଓ ନିର୍ଗୁଣକୁ ପରସ୍ପର ପରିପୂରକ ଭାବେ ଗ୍ରହଣ କରିଛନ୍ତି । ତାଙ୍କ ମତରେ ଏ ଦୁଇଟି ହେଉଛି ଗୋଟିଏ ପକ୍ଷୀର ଦୁଇଟି ଡ଼େଣା ଓ ଦୁଇଟି ଚକ୍ଷୁ ସଦୃଶ । ଦୁଇଟି ଚକ୍ଷୁରୁ ଗୋଟିଏ ନଥିଲେ କଣା ଓ ଦୁଇଟି ନଥିଲେ ଅନ୍ଧ ବୋଲି କୁହାଯାଇପାରେ । ସେହିପରି ଉଭୟ ସଗୁଣ ଓ ନିର୍ଗୁଣ ଉପାସନାକୁ ପାଥେୟ କରି ଭକ୍ତ ମୁକ୍ତିଲାଭ କରିପାରେ । କବିଙ୍କ ଭାଷାରେ-

*''ଦୁଇ ଯେ ଡ଼େଣାରେ ପକ୍ଷୀ ଉଡ଼ି କରି ଯାଇ ।*
*ଦୁଇ ଯେ ଚକ୍ଷୁରେ ସେହି ସଂସାରେ ଖେଳଇ ।*
*ଏକ ଯେ ନଥିଲେ କଣା ଦୁଇ ଗଲେ ଅନ୍ଧ ।*
*ଏଣୁକରି ନିର୍ଗୁଣ ସଗୁଣ ସେହୁ ଭେଦ ।''*

*-ଗୁରୁଭକ୍ତି ଗୀତା- ୨/୧୧ ପଟଳ*

*''ନିର୍ଗୁଣ ସଗୁଣ ଏ ରସ । ଏଥିରେ ପୂରିଛି ପୀୟୂଷ ।*
*ସଗୁଣ କରିବା ଦିଶିବ । ନିର୍ଗୁଣେ ମନ ନିବେଶିବ ।''*

*-ଗୁରୁଭକ୍ତି ଗୀତା -୩ୟ ଖଣ୍ଡ /୪୨ ପଟଳ*

ବାହ୍ୟ ଭାବରେ ସଗୁଣ ଉପାସନା ପରି ଜଣା ପଡୁଥିଲେ ହେଁ ବାସ୍ତବରେ ଏହାର ଅନ୍ତର୍ନିହିତ ଉଦ୍ଦେଶ୍ୟ ହେଉଛି ନିର୍ଗୁଣ ସାଧନା । କାରଣ ଆତ୍ମା ହେଉଛି ନିର୍ଗୁଣ ପୁରୁଷ, ଯାହାର ପାଦ-ପାଣି କିଛି ନାହିଁ । ସେହି ନିର୍ଗୁଣ ପୁରୁଷ ଅରୂପ ବ୍ରହ୍ମ ସର୍ବଭୂତରେ ପୂରି ରହିଛି । କବିଙ୍କ ମତରେ-

*''ଶୁଣ ସୁମନେ ବ୍ରହ୍ମ ଶିଷ୍ୟ । ଏ ଆତ୍ମା ନିର୍ଗୁଣ ପୁରୁଷ ।*
*ଏହାର ପାଦ ପାଣି ନାହିଁ । ପବନ ରୂପେ ଯାଏ ବହି ।*
*ନିର୍ଗୁଣ ପୁରୁଷ ମୁରାରି । ଅରୂପେ ସର୍ବ ଭୂତେ ପୂରି ।''*

*-ବ୍ରହ୍ମ ଶାଙ୍କୁଳି*

ସଂସାରରେ ବାହ୍ୟ କାମନାଯୁକ୍ତ କର୍ମକୁ ପରିତ୍ୟାଗ କରି ନିର୍ଗୁଣ ବ୍ରହ୍ମଙ୍କ ପଦରେ ନିଜକୁ ସମର୍ପଣ କରିଦେବା ମନୁଷ୍ୟର କର୍ତ୍ତବ୍ୟ । ସକଳ ଧର୍ମ ମଧରେ ନିର୍ଗୁଣ ଧର୍ମ ଶ୍ରେଷ୍ଠ ହୋଇଥିବାରୁ ଏହି ଅଣାକାର ଦୀକ୍ଷା ଗ୍ରହଣ କରିବା ଉଚିତ ବୋଲି ଅଚ୍ୟୁତାନନ୍ଦ କହିଛନ୍ତି ।

*''ବାହ୍ୟ ସଙ୍କଳ୍ପ କର୍ମ କାଟ । ଅନ୍ତେ ନିର୍ଗୁଣ ପଦେ ଖଟ ।*
*ସକଳ ଧର୍ମ ପରେ ଧର୍ମ । ଏ ଅଣାକାର ଦୀକ୍ଷା ଧର୍ମ ।''*

*-ବ୍ରହ୍ମ ଶାଙ୍କୁଳି*

ସାକାର ବା ସଗୁଣ ସାଧନା ସହିତ ସତ୍ତ୍ୱ, ରଜ ଓ ତମ ଆଦି ଗୁଣର ସଂପର୍କ ରହିଛି । କିନ୍ତୁ ନିର୍ଗୁଣ ସାଧନା ହେଉଛି ସଂପୂର୍ଣ୍ଣ ଭାବରେ ଗୁଣାତୀତ । ସେଥିପାଇଁ ଏସବୁ ଗୁଣ ଠାରୁ ଉର୍ଦ୍ଧ୍ୱରେ ରହି ନିର୍ଗୁଣ ବ୍ରହ୍ମଙ୍କୁ ଭଜନ କରିବା ପାଇଁ ଅଚ୍ୟୁତାନନ୍ଦ ଉପଦେଶ ପ୍ରଦାନ କରିଛନ୍ତି । ତାଙ୍କ ମତରେ-

*''ରଜ, ତାମସ ଗୁଣ ତେଜ । ନିର୍ଗୁଣ ସାର ବ୍ରହ୍ମ ଭଜ ।*
*ସକଳ ସଙ୍ଗ ତ୍ୟାଗ କର । ସମତା ଚିତ୍ତ ବୃତ୍ତି ଧର ।''*

*-ବ୍ରହ୍ମ ଶାଙ୍କୁଳି*

ସାଧାରଣତଃ ବୈଷ୍ଣବମାନଙ୍କର ଲକ୍ଷଣ ସଂପର୍କରେ କୁହାଯାଇଛି-

*''ଯନ୍ତ୍ରଂ ମନ୍ତ୍ରଂ ତନ୍ତ୍ରଂ ଚୈବ ଛାୟା ଜ୍ୟୋତି ଅବାଡ଼ଙ୍କ*
*ହଙ୍କ ସମାଧି ରସ ଗୁଣଂଚ ଯୋ ଜାନାତି ସ ବୈଷ୍ଣବଃ ।''*

ଅଚ୍ୟୁତାନନ୍ଦ ଏଥିମଧ୍ୟରୁ ଯନ୍ତ୍ର, ମନ୍ତ୍ର, ତନ୍ତ୍ର, ରସ ପ୍ରଭୃତିକୁ ସଗୁଣ ଏବଂ ଛାୟା, ଅବାଡ଼, ଜ୍ୟୋତି, ସମାଧି ପ୍ରଭୃତିକୁ ନିର୍ଗୁଣ ରୂପେ ଗ୍ରହଣ କରିଛନ୍ତି । 'ଗୁରୁଭକ୍ତି ଗୀତା'ରେ ସେ କହିଛନ୍ତି-

*"ଯନ୍ତ୍ର ମନ୍ତ୍ର ତନ୍ତ୍ର ରସ ଏହୁ ଚାରିଗୁଣ*
*ସଗୁଣ ଯାହାକୁ ବୋଲେ ଏହୁ କଥା ଶୁଣ ।*
*ଛାୟା ଅବାଡ଼ ଜ୍ୟୋତି ଯେ ଏହୁଟି ସମାଧି*
*ଏ ଚାରି ନିର୍ଗୁଣ ବୋଲି ପାରିଲେଟି ସାଧି ।"*

*-୨ୟ ଖଣ୍ଡ/ ୧୧ପଟଳ*

ସଗୁଣ ସାଧନା ମଧ୍ୟରେ ସେ ମନ୍ତ୍ର-ଯନ୍ତ୍ର-ତନ୍ତ୍ରର ସ୍ୱରୂପ ବିଶଦ ଭାବରେ ବିଭିନ୍ନ ଗ୍ରନ୍ଥରେ ବର୍ଣ୍ଣନା କରିଛନ୍ତି । ପରଂବ୍ରହ୍ମଙ୍କୁ ଉପଲବ୍ଧି କରିବା ଅଥବା ସଂସାରରୁ ମୁକ୍ତିଲାଭ କରିବା ପାଇଁ ଯେଉଁ ସବୁ ସାଧନା ମାର୍ଗର ଅଶ୍ରୟ ନିଆଯାଏ, ମନ୍ତ୍ର ସେଥିମଧ୍ୟରୁ ଅନ୍ୟତମ । ଅରୂପ ବ୍ରହ୍ମଙ୍କୁ ସାଧକ ଶବ୍ଦବ୍ରହ୍ମ ଭାବରେ ଗ୍ରହଣ କରେ । ମନକୁ ସ୍ଥିର କରି ସ୍ଥୂଳରୁ ସୂକ୍ଷ୍ମତର ଶବ୍ଦ ସ୍ତରକୁ ନେଇ ପାରିଲେ ସାଧକ ପ୍ରଣବ ଦିଗରେ ଅଗ୍ରସର ହୁଏ । ତେଣୁ ସ୍ଥୂଳରୁ ସୂକ୍ଷ୍ମ ଓ ସୂକ୍ଷ୍ମରୁ ସୂକ୍ଷ୍ମତର ସ୍ତରକୁ ସାଧକକୁ ନେବା ପାଇଁ ମନ୍ତ୍ର ହିଁ ସାହାଯ୍ୟ କରେ । ମନରେ ଏକାଗ୍ରତା ଆଣି ତାକୁ ସାଧନା ମାର୍ଗରେ ପରିଚାଳିତ କରିବାରେ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରେ ମନ୍ତ୍ର । 'ପିଙ୍ଗଳ ତନ୍ତ୍ର'ରେ ମନ୍ତ୍ରର ସଂଜ୍ଞା ନିରୂପଣ କରାଯାଇ କୁହାଯାଇଛି -

*"ମନନାତ୍ ବିଶ୍ୱ ବିଜ୍ଞାନମ୍ ତ୍ରାଣମ୍ ସଂସାରବନ୍ଧନାତ୍*
*ଯାତଃ କରୋତି ସଂସିଦ୍ଧମ୍ ମନ୍ତ୍ର ଇତ୍ୟୁଚ୍ୟତେ ତତଃ ।"*

ସମାଲୋଚକ ସାରଜନ୍ ଉଡ଼ରଫ ତାଙ୍କର "Garland of Letters"ଗ୍ରନ୍ଥରେ ମନ୍ତ୍ରକୁ ଶିବ, ଶକ୍ତି ଓ ଆତ୍ମାର ଐକ୍ୟ ରୂପ ଭାବରେ ଗ୍ରହଣ କରିଛନ୍ତି ।

'ଅ'ଠାରୁ 'କ୍ଷ' ପର୍ଯ୍ୟନ୍ତ ବର୍ଣ୍ଣ ଦ୍ୱାରା ମନ୍ତ୍ରର ସୃଷ୍ଟି । ଉଚ୍ଚାରଣ ସମୟରେ ପ୍ରତ୍ୟେକ ବର୍ଣ୍ଣରୁ ଯେଉଁ ଶବ୍ଦ ଧ୍ୱନି ସୃଷ୍ଟି ହୁଏ, ସେଥିରେ ଏକ ନିର୍ଦ୍ଦିଷ୍ଟ ଶକ୍ତି ଥାଏ । ଏହି ଶବ୍ଦ ଧ୍ୱନିକୁ ନିର୍ଭୁଲ ଭାବରେ ପ୍ରୟୋଗ କଲେ ମନ୍ତ୍ରରେ ସିଦ୍ଧିଲାଭ ହୁଏ । ସେଥିପାଇଁ ପ୍ରତ୍ୟେକ ଶବ୍ଦକୁ ଶବ୍ଦ ବ୍ରହ୍ମ କୁହାଯାଏ । ମନ୍ତ୍ରରେ ବ୍ୟବହୃତ ପ୍ରତ୍ୟେକ ବର୍ଣ୍ଣ ନିର୍ଦ୍ଦିଷ୍ଟ ଦେବତାଙ୍କର ପ୍ରତୀକ । ତେଣୁ ମନ୍ତ୍ର ହେଉଛି ଦେବତାଙ୍କ ସ୍ୱରୂପ । ତେଣୁ ପ୍ରତ୍ୟେକ ଦେବତାଙ୍କ ପାଇଁ ସ୍ୱତନ୍ତ୍ର ମନ୍ତ୍ରର ଅବତାରଣା କରାଯାଏ । ପୁଣି ପ୍ରତ୍ୟେକ ମନ୍ତ୍ରର ଶକ୍ତି ବୃଦ୍ଧି ପାଇଁ ବୀଜମନ୍ତ୍ରର ଆବଶ୍ୟକତା ହୁଏ ଓ ପ୍ରତ୍ୟେକ ମନ୍ତ୍ର ସହିତ ବୀଜ ସଂଯୁକ୍ତ ହୋଇଥାଏ । ବୀଜ ନଥିଲେ ମନ୍ତ୍ରର ସିଦ୍ଧିଲାଭ କରିବା ସମ୍ଭବ ନୁହେଁ । ଦିବାକର ଦାସ କହିଛନ୍ତି-

*"ବୀଜ ନଥାଇ ମନ୍ତ୍ର କାହିଁ । ଜପ କର୍ମରେ ସିଦ୍ଧି ନୋହି ।"*

*-ଜଗନ୍ନାଥ ଚରିତାମୃତ- ୭ମ ଅଧ୍ୟାୟ*

ପ୍ରଣବ ବା ଓଁକାର ହେଉଛି ପ୍ରତ୍ୟେକ ମନ୍ତ୍ରର ମୁଖ ସଦୃଶ । ବେଦରେ ଓଁକାର ବ୍ରହ୍ମ ରୂପେ ବର୍ଣ୍ଣିତ । ଓଁକାର 'ଅ ଉ ମ' ତିନି ଅକ୍ଷରର ଅବିଭକ୍ତ ରୂପ । 'ଅ'କାର ବ୍ରହ୍ମାତ୍ମକ, 'ଉ'କାର ବିଷ୍ଣ୍ୱାତ୍ମକ ଏବଂ 'ମ' କାର ଶିବାତ୍ମକ । ଏହି ତିନି ଅକ୍ଷର ସତ୍ତ୍ୱ-ରଜ-ତମ, ସତ୍ୟ-ତ୍ରେତୟା-ଦ୍ୱାପର, ଭୂଃ-ଭୂବଃ-ସ୍ୱଃ ପ୍ରଭୃତିକୁ ମଧ୍ୟ ବୁଝାଏ । ଓଁ ମନ୍ତ୍ରର ଉଦ୍ଦେଶ୍ୟ ସ୍ୱୀକାର କରିବା । ସାଧନାରେ ବିଶ୍ୱାସ ବା ଆତ୍ମସମର୍ପଣ ଉଦ୍ଦେଶ୍ୟରେ ଓଁ ମନ୍ତ୍ର ଉଚ୍ଚାରଣ କରାଯାଏ । ଦେଖିବାକୁ ଗଲେ ବୈଦିକ ଯୁଗରୁ ମନ୍ତ୍ର, ବୀଜମନ୍ତ୍ର, ଓଁକାର ପ୍ରଭୃତିର ବ୍ୟବହାର ବିଶଦ ଭାବରେ କରାଯାଇଛି । କେବଳ ଓଁକାର ସଂପର୍କରେ ଏପରି ଅର୍ଥପୂର୍ଣ୍ଣ ବ୍ୟାଖ୍ୟା କରାଯାଇଛି ଯେ ଆଲୋଚନା କରି ବସିଲେ ଗୋଟିଏ ସ୍ୱତନ୍ତ୍ର ଗ୍ରନ୍ଥ ହେବ ।

ତେବେ ସେ ଯାହାହେଉ ଓଡ଼ିଶାର ପଞ୍ଚସଖାଙ୍କ ସମେତ ଅନ୍ୟାନ୍ୟ ସାଧକମାନେ ମନ୍ତ୍ରର ସ୍ୱରୂପ ବିଶଦ ଭାବରେ ବର୍ଣ୍ଣନା କରିବା ସଙ୍ଗେ ସଙ୍ଗେ ବିଭିନ୍ନ ମନ୍ତ୍ରର ବ୍ୟବହାର ମଧ୍ୟ ସେମାନଙ୍କ ଗ୍ରନ୍ଥରେ କରିଯାଇଛନ୍ତି । ମହାପୁରୁଷ ଅଚ୍ୟୁତାନନ୍ଦ ଓଁକାରର ଶ୍ରେଷ୍ଠତ୍ୱ ପ୍ରତିପାଦନ କରିବାକୁ ଯାଇ କହିଛନ୍ତି-

*''ଜ୍ୟୋତିରାନନ୍ଦଟି ସେହି ବ୍ରହ୍ମ ଏକାକ୍ଷର*
*ଯୋଗସିଦ୍ଧ ଜନଙ୍କର ଧ୍ୟାନ ସେଠାବର ।*
*ସେଠାରୁ ଜନମ ହେଲେ ଓଁକାର ଅକ୍ଷର*
*ଚଉଦ ବ୍ରହ୍ମାଣ୍ଡ ମଧ୍ୟେ ଅଟଇଟି ସାର ।''*

***-ଶୂନ୍ୟ ସଂହିତା-୧ମ ଅଧ୍ୟାୟ***

*''ଓଁକାର ଦେହରେ ପଞ୍ଚାତ୍ମିକ ଦେଇ ଭଜ*
*କଳିତାପ ନାଶ ହେବ ନୋହିବ ଦହିଜ୍ୟ ।''*

***-ଶୂନ୍ୟ ସଂହିତା- ୨୧ ଅଧ୍ୟାୟ***

ତାଙ୍କ ରଚିତ ବିଭିନ୍ନ ଗ୍ରନ୍ଥରେ ନାନା ପ୍ରକାର ମନ୍ତ୍ର ସ୍ଥାନ ପାଇଛି । ସେସବୁ ହେଲା ଅଣାକ୍ଷର ମନ୍ତ୍ର, ପଞ୍ଚାକ୍ଷର ମନ୍ତ୍ର, ଯୁଗଳ ମନ୍ତ୍ର, ଗୋପାଳ ମନ୍ତ୍ର, ଅନନ୍ତ ହରିମନ୍ତ୍ର, ଏକାକ୍ଷର ମନ୍ତ୍ର, କୃଷ୍ଣ ମନ୍ତ୍ର, ରାଧା ମନ୍ତ୍ର, ଚୈତନ୍ୟ ମନ୍ତ୍ର, ହରେକୃଷ୍ଣ ମହାମନ୍ତ୍ର, ପ୍ରେମମନ୍ତ୍ର, ଶିଂଘାମନ୍ତ୍ର, ଶଙ୍ଖମନ୍ତ୍ର, ମୁରଲୀ ମନ୍ତ୍ର, ଟୋପିଜନ୍ମ ମନ୍ତ୍ର, ଚୂଳମନ୍ତ୍ର, ନାରାୟଣ ମନ୍ତ୍ର, ବ୍ରହ୍ମ ଗାୟତ୍ରୀ ମନ୍ତ୍ର, କାମଦେବ କାମାକ୍ଷୀ ମନ୍ତ୍ର, ଗଣପତି ମନ୍ତ୍ର ଓ ତାରକ ମନ୍ତ୍ର ଇତ୍ୟାଦି । ଅଚ୍ୟୁତାନନ୍ଦ କଳିଯୁଗରେ 'ହରେ ରାମ କୃଷ୍ଣ' ମନ୍ତ୍ରକୁ ସର୍ବଶ୍ରେଷ୍ଠ ମନ୍ତ୍ରରୂପେ ସ୍ୱୀକାର କରିଛନ୍ତି । କଳିର କରାଳ କବଳରୁ ଉଦ୍ଧାର ପାଇବା ପାଇଁ ମହାମନ୍ତ୍ର ଭଜନ ଏକମାତ୍ର ପଥ ଓ ଏଥିରେ ସର୍ବପାପ କ୍ଷୟ ହୁଏ । ସେ କୁହନ୍ତି-

***''ମହାମନ୍ତ୍ର ଭଜିଲେ ଯେ ପାପ କ୍ଷୟ ହୁଏ ।''*** ***(ଶୂନ୍ୟ ସଂହିତା)***

ଶୂନ୍ୟ ସଂହିତାର ଦ୍ୱିତୀୟ ଅଧ୍ୟାୟରେ ଅଚ୍ୟୁତାନନ୍ଦ ମହାମନ୍ତ୍ରର ସୃଷ୍ଟିତତ୍ତ୍ୱ ପ୍ରକାଶ କରିଛନ୍ତି । ତାଙ୍କ ମତରେ ହରି ନିଜ ନାଭିରୁ କମଳ ଜାତ କରି ସେଥିରୁ ବ୍ରହ୍ମାଙ୍କୁ ସୃଷ୍ଟି କଲେ । ପୁଣି ହରିଙ୍କ ବର୍ଣ୍ଣରୁ ମେଦାମେଦୀ ନାମକ ଦୁଇ ଅସୁର ଜାତ ହେଲେ । ସେମାନଙ୍କୁ ହତ୍ୟା କରି ସେମାନଙ୍କ ଶବରେ ପ୍ରଭୁ ମେଦିନୀ ସୃଷ୍ଟି କଲେ ଓ ନିଜେ ଓଁକାର ବା ପ୍ରଣବ ରୂପେ ରହିଲେ । ସେ ବ୍ରହ୍ମାଙ୍କୁ ଷୋଳନାମ ବତିଶ ଅକ୍ଷର କହିବାରୁ ମହାମନ୍ତ୍ର ସୃଷ୍ଟି ହେଲା । ସେହିପରି ଅଚ୍ୟୁତାନନ୍ଦ 'ଗୁରୁଭକ୍ତି ଗୀତା' ଓ 'ଛୟାଳିଶ ପଟଳ'ରେ ଗୋପାଳ ମନ୍ତ୍ରର ସୃଷ୍ଟି ରହସ୍ୟ, ଅକ୍ଷର ତତ୍ତ୍ୱ, କରନ୍ୟାସ ଅଙ୍ଗନ୍ୟାସ, ମାତୃକା ନ୍ୟାସ ପ୍ରଭୃତି ବିଶଦ ଭାବରେ ବର୍ଣ୍ଣନା କରିଛନ୍ତି । ଉପରେ ଉଲ୍ଲିଖିତ ସବୁ ମନ୍ତ୍ରର ସୃଷ୍ଟି ଅକ୍ଷର ତତ୍ତ୍ୱ ପ୍ରାୟତଃ ତାଙ୍କର ବିଭିନ୍ନ ଗ୍ରନ୍ଥରେ ପ୍ରକାଶ ପାଇଛି । ଗ୍ରନ୍ଥର କଳେବର ବୃଦ୍ଧି ଆଶଙ୍କାରେ ସେସବୁର ଆଲୋଚନା ଏଠାରେ କରାଗଲା ନାହିଁ । କେବଳ ଏତିକି କହିଲେ ଯଥେଷ୍ଟ ହେବ ଯେ, ସେ ପ୍ରତ୍ୟେକ ମନ୍ତ୍ରର ସାଧନ ପ୍ରଣାଳୀ ସଂପର୍କରେ କିପରି ଟିକିନିଖି ଭାବରେ ଅବହିତ ଥିଲେ, ତାହା ତାଙ୍କର ନିମ୍ନୋକ୍ତ ପଂକ୍ତିରୁ ଜଣାପଡ଼େ ।

*''କଟୀ ନଥିଲାର ପ୍ରାୟେ ଷଡ଼ାଙ୍ଗ ନଜାଣି*
*ମନ୍ତ୍ରସିଦ୍ଧି ନୁହଇ ଯେ ଷଡ଼ାଙ୍ଗ ନ ଗୁଣି ।*
*ଅଙ୍ଗନ୍ୟାସ ନ ଜାଣିଲେ ହୃଦ ନୋହେ ପୁଣ*
*ସାଧୁଜନ ଗୋଷ୍ଠୀରେ ଯେ ନୁହନ୍ତି ପ୍ରମାଣ ।*
*କରନ୍ୟାସ ନ ଜାଣିଲେ ବାହୁ ପୁଣ ନାହିଁ*
*ମନ୍ତ୍ରଭେଦ ନ ଜାଣିଲେ ବଇଷବ ଜାହିଁ ।''*

***-ଗୁରୁଭକ୍ତି ଗୀତା- ୧/୩୭ ଛାନ୍ଦ***

ତାନ୍ତ୍ରିକ ପୂଜା ପଦ୍ଧତିରେ ଯନ୍ତ୍ରର ଭୂମିକା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ଯନ୍ତ୍ର ଶବ୍ଦର ଅର୍ଥ ଗୃହ- ଯାହାଦ୍ୱାରା ସାଧକ ନିଜକୁ ନିୟନ୍ତ୍ରଣ କରିପାରେ । ଯନ୍ତ୍ରରେ ପିଣ୍ଡ ଓ ବ୍ରହ୍ମାଣ୍ଡର ତତ୍ତ୍ୱ ନିହିତ ଅଛି । ସାଧକ କିନ୍ତୁ ନିଜର ସୂକ୍ଷ୍ମ ଶରୀର ମଧ୍ୟରେ ଏହି ପିଣ୍ଡ ବ୍ରହ୍ମାଣ୍ଡ ତତ୍ତ୍ୱକୁ ଅନୁଭବ କରିପାରେ ନାହିଁ । ତେଣୁ ଯନ୍ତ୍ର ମାଧ୍ୟମରେ ନିଜ ଶରୀରରେ ଆଧ୍ୟାତ୍ମିକ ଶକ୍ତିକୁ ଅନୁଭବ କରିବା ହେଉଛି ସାଧକର ଚରମ ଲକ୍ଷ୍ୟ । ଯନ୍ତ୍ର ହେଉଛି ଦେବଦେବୀଙ୍କର ପ୍ରତୀକ । ପ୍ରଥମେ ଯନ୍ତ୍ରକୁ ଦେବତା ରୂପେ କଳ୍ପନା କରି ମନ୍ତ୍ର ଦ୍ୱାରା ଭେଦି ପାରିଲେ ଦେବତା ପ୍ରସନ୍ନ ହୁଅନ୍ତି । ସେଥିପାଇଁ ଯନ୍ତ୍ରକୁ ଦେବତାଙ୍କ ଶରୀର ଓ ମନ୍ତ୍ରକୁ ଦେବତାଙ୍କ ଆତ୍ମା କୁହାଯାଏ । ପରଂବ୍ରହ୍ମ ପ୍ରାପ୍ତି ସହିତ ନାନାବିଧ ମନସ୍କାମନା ପୂରଣ ପାଇଁ ଯନ୍ତ୍ର ସାହାଯ୍ୟ ନିଆଯାଏ ।

ବିଭିନ୍ନ ଦେବଦେବୀଙ୍କର ନିର୍ଦ୍ଦିଷ୍ଟ ରୂପ ଓ ରଙ୍ଗ ରହିଛି । ଯନ୍ତ୍ରର ଗଠନ ସେହି ରୂପ ଓ ରଙ୍ଗକୁ ପ୍ରତିନିଧିତ୍ୱ କରେ । ପ୍ରତ୍ୟେକ ଯନ୍ତ୍ରରେ ନିର୍ଦ୍ଦିଷ୍ଟ ଦେବତାଙ୍କ ପାଇଁ ସ୍ୱତନ୍ତ୍ର ମନ୍ତ୍ରପାଠ ହୁଏ ଓ ତଦନୁଯାୟୀ ଯନ୍ତ୍ରରେ ଅକ୍ଷର ବସାଣ କରାଯାଏ । ବିନ୍ଦୁ, ରେଖା, ତ୍ରିଭୁଜ, ବର୍ଗାକାର, ବୃତ୍ତ, କୋଣ ପ୍ରଭୃତି ଦ୍ୱାରା ନିର୍ମିତ ଯନ୍ତ୍ରକୁ ମଣ୍ଡଳ କୁହାଯାଏ ଏବଂ ବିଭିନ୍ନ ଯନ୍ତ୍ର ପାଇଁ ଏସବୁର ଅର୍ଥ ସ୍ୱତନ୍ତ୍ର । ତାନ୍ତ୍ରିକ ସାଧନାରେ ଏହି ପରମ୍ପରା ଉତ୍କଳୀୟ ସାଧକମାନେ ଗ୍ରହଣ କରିଥିଲେ । ଅଚ୍ୟୁତାନନ୍ଦଙ୍କ ବିଭିନ୍ନ ରଚନାରେ ଅନେକ ଯନ୍ତ୍ରର ରୂପରେଖ ପ୍ରଦାନ କରାଯାଇଛି । ସେ ସବୁରୁ ଯନ୍ତ୍ର ଓ ମନ୍ତ୍ରର ରହସ୍ୟ ଜଣାପଡ଼େ । ସେ ଯନ୍ତ୍ର ଭଜନକୁ ଦିହୁଡ଼ି ଓ ଅନ୍ୟ ଭଜନକୁ ସାଧାରଣ ଦୀପ ସହିତ ତୁଳନା କରିଛନ୍ତି । ଦୀପ ଲିଭିଯାଇ ପାରେ, ମାତ୍ର ଦିହୁଡ଼ି ଲିଭିବା ସମ୍ଭବ ନୁହେଁ ।

*''ଦିହୁଡ଼ି ତୁଲାଟି ଏହୁ ଭଜନ । ଯନ୍ତ୍ର ସ୍ଥାପି ମନ୍ତ୍ର ମନରେ ଘେନ ।*
*ଆନ ଭଜନ ଦୀପର ପରାୟେ । ଲିଭିଲେ ଆଉ ଲଗାଟି ନ ଯାଏ ।''*

*-ଶୂନ୍ୟ ସଂହିତା-୮ମ ଅଧ୍ୟାୟ*

ପୁଣି ସେ ମନ୍ତ୍ର, ଯନ୍ତ୍ର ଓ ତନ୍ତ୍ରକୁ ସର୍ବାପେକ୍ଷା ଶ୍ରେଷ୍ଠ ସ୍ଥାନ ପ୍ରଦାନ କରି କହିଛନ୍ତି-

*''ଯନ୍ତ୍ର ମନ୍ତ୍ର ତନ୍ତ୍ର ଛାୟା ଆଦି ଯେ ଅବାଢ଼*
*ଗୁରୁଶିଷ୍ୟ ନିରନ୍ତର ଭଜୁଥିବ ଦୃଢ଼ ।''*

*-ଗୁରୁଭକ୍ତି ଗୀତା- ୨/୯ ପଦ୍ୟ*

ଶିଷ୍ୟ ହୃଦୟରେ ଭକ୍ତିଭାବ ସୃଷ୍ଟି କରିବା ପାଇଁ ଯନ୍ତ୍ର-ମନ୍ତ୍ର ହେଉଛି ଏକମାତ୍ର ମାଧ୍ୟମ । ତେଣୁ ଗୁରୁଙ୍କ କର୍ତ୍ତବ୍ୟ ସଂପର୍କରେ ତାଙ୍କର ମତାମତ ହେଲା-

*''ଯନ୍ତ୍ର ଲେଖି ମନ୍ତ୍ର ସ୍ଥାପି ଶିଷ୍ୟ ଶିରେ ଦେବ*
*ତେବେ ସିନା ଶିଷ୍ୟ ହୃଦେ ଭକତି ହୋଇବ ।''*

*-ଗୁରୁଭକ୍ତି ଗୀତା*

ଅଚ୍ୟୁତାନନ୍ଦ ସ୍ୱତନ୍ତ୍ର ଭାବରେ 'ଚଉରାଶି ଯନ୍ତ୍ର' ନାମକ ଖଣ୍ଡିଏ ଗ୍ରନ୍ଥ ରଚନା କରିଯାଇଛନ୍ତି । ଏଥିରେ ୮୪ଟି ଯନ୍ତ୍ର ଓ ପ୍ରତ୍ୟେକ ଯନ୍ତ୍ରର ପ୍ରାରମ୍ଭରେ ମନ୍ତ୍ର ସ୍ଥାନ ପାଇଛି । ତେବେ ଅଚ୍ୟୁତାନନ୍ଦଙ୍କ ନାମରେ ପ୍ରଚଳିତ ବିଭିନ୍ନ ଗ୍ରନ୍ଥରେ ବର୍ଣ୍ଣିତ ଯନ୍ତ୍ର ଗୁଡ଼ିକ ହେଲା- ବ୍ରହ୍ମଯନ୍ତ୍ର, ବିଷ୍ଣୁଯନ୍ତ୍ର, ବ୍ରହ୍ମାଯନ୍ତ୍ର, ରୁଦ୍ରଯନ୍ତ୍ର, ଅକାରଯନ୍ତ୍ର, ସୃଷ୍ଟିଯନ୍ତ୍ର, ପଦ୍ମପାଦ ଯନ୍ତ୍ର, ଚକ୍ରଯନ୍ତ୍ର, ଉର୍ଦ୍ଧ୍ୱଯନ୍ତ୍ର, ସୁରତି ଯନ୍ତ୍ର, ମନ ଯନ୍ତ୍ର, ବିମନ ଯନ୍ତ୍ର, କୁମନ ଯନ୍ତ୍ର, ସୁମନ ଯନ୍ତ୍ର, ଅମନ ଯନ୍ତ୍ର, ଜ୍ଞାନ ଯନ୍ତ୍ର,

ଧ୍ୟାନଯନ୍ତ୍ର, ମନ୍ତ୍ରଯନ୍ତ୍ର, ସଙ୍ଗୀତ ଯନ୍ତ୍ର, ସୂର୍ଯ୍ୟଯନ୍ତ୍ର, ଚନ୍ଦ୍ରଯନ୍ତ୍ର, ବାରିଦ ଯନ୍ତ୍ର, କରମ ଯନ୍ତ୍ର, ଜୀବଯନ୍ତ୍ର, କୃଷ୍ଣ ନୀଳାଦ୍ରି ଯନ୍ତ୍ର, କଣ୍ଠଯନ୍ତ୍ର, କିଶୋର ଯନ୍ତ୍ର, ଶଙ୍ଖନାଭିଯନ୍ତ୍ର, ଚୂଡ଼ାମଣି ଯନ୍ତ୍ର, ଶିରୋମଣି ଯନ୍ତ୍ର, ପ୍ରଣବ ଯନ୍ତ୍ର, ବିରାଟ ଯନ୍ତ୍ର, ବ୍ରହ୍ମାଣ୍ଡ ଯନ୍ତ୍ର, ମନ ମହିମା ଯନ୍ତ୍ର, ମୁଦ୍ରଯନ୍ତ୍ର, ଭକ୍ତିଜ୍ଞାନ ଯନ୍ତ୍ର, ନାରାୟଣ ଯନ୍ତ୍ର, ବୁଦ୍ଧିଯନ୍ତ୍ର, ବଜ୍ରଯନ୍ତ୍ର, ଅଣ୍ଡଯନ୍ତ୍ର, ଶିଂଘାଯନ୍ତ୍ର, ଗୁଞ୍ଜମାଳା ଯନ୍ତ୍ର, ମୁରଲୀଯନ୍ତ୍ର, ଗୁଞ୍ଜାରାଯନ୍ତ୍ର, କାଛଟା ଯନ୍ତ୍ର, ପଇତା ଯନ୍ତ୍ର ପ୍ରଭୃତି ।

ଅଚ୍ୟୁତାନନ୍ଦ ବ୍ରହ୍ମ, ଜଗନ୍ନାଥ ଓ ଗୁରୁଙ୍କ ସହିତ ମନ୍ତ୍ର-ଯନ୍ତ୍ର-ତନ୍ତ୍ରର ସଂପର୍କ ଥିବା ପ୍ରସଙ୍ଗ ବିଭିନ୍ନ ଗ୍ରନ୍ଥରେ ବର୍ଣ୍ଣନା କରିଛନ୍ତି । ଏହି ମନ୍ତ୍ର-ଯନ୍ତ୍ର-ତନ୍ତ୍ର ଦ୍ୱାରା ଅନାଦି ବ୍ରହ୍ମଙ୍କ ଦର୍ଶନ ମିଳେ ବୋଲି ସେ କହିଛନ୍ତି-

*"ଯନ୍ତ୍ରଂମନ୍ତ୍ରଂତନ୍ତ୍ରଂ ସମତୁଲ ହେଲେ ଦେଖିବୁ ଅନାଦି ବ୍ରହ୍ମ*
*କ୍ଷଣକେ ଦୁରିତ ମାନ ଦୂରଯିବ ବିନାଶ ହୋଇବ ଭ୍ରମ*
*ମନ୍ତ୍ର ଯନ୍ତ୍ର ତନ୍ତ୍ର ତ୍ରିବିଧ ପ୍ରକାରେ ନୀଳାଞ୍ଚଳରେ ପ୍ରକାଶ*
*ସେହି ଏହି ସେହି କେତେ ଭିନ୍ନ ନୋହି ହେତୁକର ରାମଦାସ ।"*

*-ଅଣାକାର ସଂହିତା*

ଅଚ୍ୟୁତାନନ୍ଦ ଛାୟା, ଜ୍ୟୋତି, ଅବାଡ଼ ଓ ସମାଧିକୁ ନିର୍ଗୁଣ ଭାବରେ ଗ୍ରହଣ କରି ବିଭିନ୍ନ ଗ୍ରନ୍ଥରେ ଏସବୁ ସାଧନାର ସ୍ୱରୂପ ବର୍ଣ୍ଣନା କରିଛନ୍ତି । ଛାୟାକୁ ସେ ଗ୍ରହଣ କରିଛନ୍ତି ଛାୟାବ୍ରହ୍ମ ଭାବରେ ଓ ସ୍ଥାବର ଜଙ୍ଗମ, କୀଟ, ପତଙ୍ଗ ସର୍ବତ୍ର ସେହି ଛାୟାବ୍ରହ୍ମ ପୂରି ରହିଛନ୍ତି । ତାଙ୍କୁ ଦର୍ଶନ କଲେ ସମସ୍ତ ପ୍ରକାର ପାପ ନାଶ ହୁଏ । 'ଶୂନ୍ୟ ସଂହିତା'ରେ ଏହି ସାଧନା କିପରି କରିବାକୁ ହେବ ତାର ସୂଚନା କବି ପ୍ରଦାନ କରିଛନ୍ତି । ତାଙ୍କ ମତରେ ଛାୟା ଯେଉଁ ଦିଗରେ ଥିବ ସାଧକ ସେ ଦିଗକୁ ମୁହଁ କରି ଠିଆ ହେବ । ହୃଦୟରେ 'ଓଁକାର ବ୍ରହ୍ମଣେ୍ୟା" ଏବଂ ମନ ମଧରେ ଷଡ଼ାକ୍ଷର ମନ୍ତ୍ର ଉଚ୍ଚାରଣ କରିବ । ଆକାଶକୁ ଦୃଷ୍ଟି ନିକ୍ଷେପ କରିବା ମାତ୍ରେ ସାଧକ ଛାୟାବ୍ରହ୍ମଙ୍କୁ ଦର୍ଶନ କରିପାରିବ ।

*"ଛାୟା ଯେଉଁ ଦିଗେ ଥିବ ସେ ଦିଗକୁ ମୁଖ*
*ଅଗ୍ରେ ଛାୟା ଦେହ ଗୋଟି ଚାହିଁଣ ନିରେଖ ।*
*କଣ୍ଠମୂଳେ ନେତ୍ର ରଖି ମନେ ମନ୍ତ୍ର ସ୍ମର*
*ଓଁକାର ବ୍ରହ୍ମଣେ୍ୟା ବୋଲି ହୃଦରେ ଉଚ୍ଚାର ।*
*ମନ ଦେଇ ଷଡ଼ାକ୍ଷର ମନ୍ତ୍ର ଯେ ଭଜିବ*
*ଆଡ଼ବାଙ୍କ ନୋହିଣ ଯେ ଅଲଗା ରହିବ ।*
*ନେତ୍ରକୁ ଅଲଗା ରଖି ଆକାଶେ ନିରେଖ*
*ଆପଣା ସ୍ୱରୂପ ପ୍ରାୟେ ଛାୟା ବ୍ରହ୍ମ ଦେଖ ।"* *-୫ମ ଅଧ୍ୟାୟ*

ପୁଣି କମଳାସନରେ ବେନିଭୁଜକୁ ଛନ୍ଦି ବସିବ ଓ ଛାୟାଙ୍ଗରେ ମନୋନିବେଶ କରିବ । ପ୍ରତିଦିନ ସୂର୍ଯ୍ୟାୟଣ ପ୍ରହରେ ଏବଂ ଚାନ୍ଦ୍ରାୟଣ ଦୁଇ ପ୍ରହର ଅବଧି ଯୋଗ କରିବାକୁ ହେବ । ତା'ପରେ ସାଧକ ଆକାଶରେ ଯେଉଁ ଛାୟାର ପ୍ରତିରୂପ ଦର୍ଶନ କରିବ ତାକୁ ଅଚ୍ୟୁତାନନ୍ଦ ପରିକଳ୍ପନା କରିଛନ୍ତି ଯେ, ପ୍ରଥମେ ଇଷତ୍ ଲାଲ, ତା'ପରେ ମଳିନ ଓ ଶେଷରେ ଦେଖାଯିବ ଶ୍ୱେତବର୍ଣ୍ଣ । ବିଭିନ୍ନ ବର୍ଣ୍ଣରୁ ଏହାର ଫଳାଫଳ ମଧ୍ୟ ସେ ନିର୍ଣ୍ଣୟ କରିଛନ୍ତି ।

ବିଭିନ୍ନ ପ୍ରକାର ସାଧନା ମଧ୍ୟରେ ଜ୍ୟୋତି ସାଧନା ଅନ୍ୟତମ । ସାଧକ କୌଣସି ଗୋଲାକାର ଶ୍ୱେତବିନ୍ଦୁ ବା ଦିବ୍ୟଜ୍ୟୋତିକୁ ଧ୍ୟାନ କରିଥାଏ । ଜ୍ୟୋତି ବିନ୍ଦୁ ଉପରେ ସାଧକ ଦୃଷ୍ଟିକୁ ସ୍ଥିର ଭାବରେ ରଖିବାର ଅଭ୍ୟାସ କରିବା ଦ୍ୱାରା ଜ୍ୟୋତିତତ୍ତ୍ୱ ଉପଲବ୍ଧି କରେ । ଏହି ସାଧନା ବଳରେ ସେ ସହସ୍ରଦଳସ୍ଥ ଜ୍ୟୋତିକୁ ଦର୍ଶନ କରି ଅବିଚଳିତ ରହେ । ଅଚ୍ୟୁତାନନ୍ଦଙ୍କ ମତରେ ପିଛଡ଼ା ଟେକି ଲଲାଟ ଉପରେ ରଖି ଶୂନ୍ୟକୁ ଦୃଷ୍ଟିଦେଲେ ସାଧକ ଜ୍ୟୋତି ମଣ୍ଡଳ ଦର୍ଶନ କରିପାରିବେ । ଏହିପରି ଜ୍ୟୋତି ଦର୍ଶନ ଅଭ୍ୟାସ କଲେ ସାଧକ ପରମ ଗତି ଲାଭ କରେ । ଉକ୍ତ ଜ୍ୟୋତି ଏକାକ୍ଷର ନାମରେ କଥିତ ।

*''ପିଛଡ଼ା ଟେକିଣ ଯେ ଲଲାଟ ପରେ ରଖ*
*ନୟନକୁ ସ୍ଥିର କରି ଶୂନ୍ୟକୁ ନିରେଖ ।*
*ମଣ୍ଡଳ ସ୍ୱରୂପେ ଜ୍ୟୋତି ପ୍ରକାଶ ହୋଇବ*
*ନୟନକୁ ନେଇ ତହିଁ ନିଶ୍ଚଳେ ଥୋଇବ ।*
*ଅଭ୍ୟାସ କରନ୍ତେ ଜ୍ୟୋତି ପ୍ରକାଶିବ ଯେବେ*
*ପାଇବ ପରମ ଗତି ଭ୍ରାନ୍ତି ଯିବ ତେବେ ।''*

*-ଶୂନ୍ୟ ସଂହିତା-୫ମ ଅଧ୍ୟାୟ*

*''ଜ୍ୟୋତି ବୋଲିଣ ଯାହା କହି । ଏକାକ୍ଷର ହୋଇଛି ସେହି ।*
*ପିଛଡ଼ା ନପାରି ଟେକିଣ । ଉର୍ଦ୍ଧ୍ୱକୁ ରଖ ସୁସ୍ଥରେଣ ।*
*ମଣ୍ଡଳ ସ୍ୱରୂପରେ ଜ୍ୟୋତି । ଶୂନ୍ୟରେ ହୋଇଅଛି ସ୍ଥିତି ।*
*ନୟନ ନେଇ ନିଶ୍ଚଳରେ । ଥୋଇବ ଯତନେ ସେଠାରେ ।*
*ଝଟକ ଦାମିନୀ ପରାଯେ । ନେତ୍ର ଅଗ୍ରରେ ଉଦେ ହୁଏ ।*
*ଜ୍ୟୋତି ପ୍ରକାଶ ହେଲେ ତହିଁ । ସ୍ୱରୂପ ଦେଖିବୁ ଯେ ତୁହି ।''*

*-ଛୟାଳିଶ ପଟଳ- ୨୮ଶ ପଟଳ*

ଦୀପଶିଖାରେ ଦୃଷ୍ଟିକୁ ସ୍ଥିର ଭାବରେ ରଖି ଜ୍ୟୋତି ମଧ୍ୟରେ ପରଂବ୍ରହ୍ମଙ୍କୁ ଦର୍ଶନ କରିବା ହେଉଛି ଅବାଡ଼ ସାଧନାର ମୁଖ୍ୟ ଉଦ୍ଦେଶ୍ୟ । ଅଚ୍ୟୁତାନନ୍ଦ ଏହି ସାଧନ ପ୍ରଣାଳୀକୁ ନିମ୍ନୋକ୍ତ ପ୍ରକାରେ ବର୍ଣ୍ଣନା କରିଛନ୍ତି ।

*"ଗୁରୁ ଦେଲା ମନ୍ତ୍ର ହୃଦରେ ଧରି । ପଲକ ନିଷ୍ପଳେ ଥିବ ଉଭାରି ।*
*ସୂର୍ଯ୍ୟ ମଣ୍ଡଳକୁ କରିବ ଦୃଷ୍ଟି । ତେବେ ସେ ତୋର ବାଡ଼ଯିବ ଫିଟି ।*
*ଫିଟିଲେ ବାଡ଼ ଦେଖିବୁ ଅବାଡ଼ । ଦେଖିଲେ ତୋ ମନ ହୋଇବ ଦୃଢ଼ ।*
*ପଞ୍ଚକଳା ହୋଇ ରୂପ ଦିଶିବ । ବୃନ୍ଦାବୃନ୍ଦା ହୋଇ ଫିଟିଣ ଯିବ ।*
*ଯେ ରୂପେ ଦିଶଇ ଗାଳ ଟାଙ୍ଗୁଡ଼ି । ଅନ୍ୟାନ୍ୟ ଗୋଟରେ ରହିବୁ ବୁଡ଼ି ।*
*ପ୍ରାତଃ କାଳରୁ ଏମନ୍ତ କରିବ । ଅଣ ଉଦୟରୁ ଉଭାଇ ଥିବ ।*
*ଅଙ୍ଗ ନିର୍ମଳ ହୋ ନିର୍ମଳ ମନ । ତେବେ ପାଇବ ଅବାଡ଼ ଦର୍ଶନ ।"*

**-ତତ୍ତ୍ୱବୋଧିନୀ - ୧୩ଶ ଅଧ୍ୟାୟ**

'ଗୁରୁଭକ୍ତି ଗୀତା'ରେ ସେ ଦୀର୍ଘ ବାରବର୍ଷର ଏକ ପୂର୍ଣ୍ଣ ସାଧନାକ୍ରମ ଦେଖାଇଛନ୍ତି । ତାହା ହେଲା- ମନ୍ତ୍ର, ଯନ୍ତ୍ର, ତନ୍ତ୍ର, ପୂଜା, ଛାୟା, ଅବାଡ଼, ଜ୍ୟୋତି, ପବନ ବା ପ୍ରାଣାୟାମ, ସମାଧି, ରୂପ, ଆଧାର ଓ ଦକ୍ଷିଣ । ପ୍ରତ୍ୟେକ ସାଧନା ପାଇଁ ଗୋଟିଏ ବରଷ କରି ଏପରି ସମୁଦାୟ ବାରବର୍ଷ ସାଧନା କରିବା ପାଇଁ କୁହାଯାଇଛି । ଅଚ୍ୟୁତାନନ୍ଦ ସାଧନାର ସବୁ ପର୍ଯ୍ୟାୟକୁ ନିଜେ ହୃଦୟଙ୍ଗମ କରି ପୂର୍ଣ୍ଣାଙ୍ଗ ସାଧନା ମାର୍ଗରେ ଗ୍ରହଣ କରିଥିଲେ । ସେଥିପାଇଁ ସେ ପ୍ରତ୍ୟେକ ସାଧନାର ସ୍ତରକୁ ନେଇ ମଧ୍ୟ ଗ୍ରନ୍ଥ ରଚନା କରିଛନ୍ତି । ଏପରି ଗ୍ରନ୍ଥମାନଙ୍କ ମଧ୍ୟରେ ଅବାଡ଼ ସଂହିତା, ଛାୟା ସଂହିତା, ଜ୍ୟୋତି ସଂହିତା ପ୍ରଭୃତି ପ୍ରଧାନ ।

## (୫) ଯୋଗ ସାଧନା-

ଭାରତର ଆଧ୍ୟାତ୍ମିକ ପରମ୍ପରାରେ କର୍ମଯୋଗ, ଜ୍ଞାନଯୋଗ, ରାଜଯୋଗ ଓ ଭକ୍ତିଯୋଗ ନାମରେ ଚାରୋଟି ମାର୍ଗ ନିର୍ଦ୍ଦିଷ୍ଟ ହୋଇଥିଲେ ହେଁ ସାଧାରଣତଃ ଭକ୍ତିଯୋଗକୁ ଏସବୁ ମଧ୍ୟରେ ଶ୍ରେଷ୍ଠ ବୋଲି ଗ୍ରହଣକରାଯାଇଛି । କିନ୍ତୁ ବାସ୍ତବରେ ସମସ୍ତ ପ୍ରକାର ଯୋଗ ମାର୍ଗର ଲକ୍ଷ୍ୟ ହେଉଛି ପରଂବ୍ରହ୍ମ ପ୍ରାପ୍ତି । ଜୀବାତ୍ମା ଓ ପରମାତ୍ମାଙ୍କର ମିଳନ ଯୋଗ ମାଧ୍ୟମରେ ହିଁ ସମ୍ଭବ ହୋଇଥାଏ । ସେଥିପାଇଁ ମନ ଓ ଚିତ୍ତକୁ ସ୍ଥିର କରିବା,ନାଦ ବିନ୍ଦୁକୁ ଏକତ୍ର କରିବା, ଶିବଶକ୍ତିର ମିଳନ କରିବାର ନାମ ହେଉଛି ଯୋଗ । ଶରୀର ମଧ୍ୟସ୍ଥ ଲଲାଟ ଚକ୍ରରେ ଅବସ୍ଥାନ କରୁଥିବା ପରଂବ୍ରହ୍ମଙ୍କ ସହିତ କୁଣ୍ଡଳିନୀ ଶକ୍ତିର ସଂଯୋଗ କରିବାକୁ ହିଁ ଯୋଗ ବୋଲି କୁହାଯାଇଛି । ବିଶିଷ୍ଟ ଦାର୍ଶନିକ କପିଳ, ପତଞ୍ଜଳି, କଣାଦ, ଗୌତମ, ଜୈମିନି ଓ ବ୍ୟାସଦେବ ପ୍ରମୁଖ ବିଭିନ୍ନ ଯୋଗଦର୍ଶନର ବିଶଦ ବ୍ୟାଖ୍ୟା କରିଥିଲେ ହେଁ ସେସବୁର ମୂଳଲକ୍ଷ୍ୟ ଭଗବତ୍ ପ୍ରାପ୍ତି ।

ଅଚ୍ୟୁତାନନ୍ଦ ବିଭିନ୍ନ ଯୋଗ ସାଧନାକୁ ପରଂବ୍ରହ୍ମ ପ୍ରାପ୍ତିର ମାର୍ଗ ରୂପେ ଗ୍ରହଣ କରିଥିଲେ । ସ୍ୱରଚିତ ଗ୍ରନ୍ଥମାନଙ୍କରେ ସେ ନାନାପ୍ରକାର ପ୍ରସଙ୍ଗ ବର୍ଣ୍ଣନା କରିଛନ୍ତି । ମନ୍ତ୍ର ଜପ କରୁକରୁ ମନକୁ ଲୟ କରାଯାଏ ମନ୍ତ୍ରଯୋଗ ଦ୍ୱାରା । ବ୍ରହ୍ମ ଏକାକ୍ଷର ଓଁକୁ ଜପ କରି କପୋଳରେ ବ୍ରହ୍ମଙ୍କୁ ଧ୍ୟାନ କଲେ ଅନ୍ଧକାର ଦୂର ହୋଇ ସୂର୍ଯ୍ୟୋଦୟ ଦେଖାଦିଏ ।

*"ଏ ବ୍ରହ୍ମ ଏକାକ୍ଷର ଜପେ କର । ବ୍ରହ୍ମ କପୋଳକୁ ଧ୍ୟାନକୁ ଧର ।*
*ଜପେ ମାତ୍ରକେ ଘୁଞ୍ଚିଯିବ । ତିମିର ନାଶି ଅର୍କ ଉଦେ ହେବ ।"*

*-ଅଜ୍ଜଳିତ ସଂହିତା*

ହଠଯୋଗରେ 'ହ'ଅର୍ଥ ସୂର୍ଯ୍ୟ ଏବଂ 'ଠ' ଅର୍ଥ ଚନ୍ଦ୍ର । ପୁଣି ଅପାନ ବାୟୁକୁ ଚନ୍ଦ୍ର ଓ ପ୍ରାଣବାୟୁକୁ ସୂର୍ଯ୍ୟ କୁହାଯାଏ । ତେଣୁ ଚନ୍ଦ୍ର ସୂର୍ଯ୍ୟ ବା ଅପାନ ବାୟୁ ଓ ପ୍ରାଣବାୟୁକୁ ଏକତ୍ର ସଂଯୋଗ କରାଯାଏ ହଠ ଯୋଗରେ । ଅଚ୍ୟୁତାନନ୍ଦଙ୍କ ମତରେ-

*"ଚନ୍ଦ୍ରକୁ ନେଇ ସୂର୍ଯ୍ୟେଭର । ସୂର୍ଯ୍ୟରେ ଜାଣି ହେତୁ କର ।*
*x x x x*
*ରବିର ଘରେ ଚନ୍ଦ୍ର ସାଜି । ଯିବଟି କାଳବେଳ ଭାଜି ।*
*ଚନ୍ଦ୍ର ସୂର୍ଯ୍ୟକୁ କଲେ ଗୋଷ୍ଠି । ବିଷମ ବ୍ରହ୍ମ ଅଗ୍ନି ଉଠି ।*
*ପ୍ରଳୟ ତାକୁ ନ ବାଧଇ । ତେବେଟି ସିଦ୍ଧ ଅଙ୍ଗହୋଇ ।"*

*-ବ୍ରହ୍ମ ଶାଙ୍କୁଳି*

ଚିତ୍ତକୁ ଯେକୌଣସି ବସ୍ତୁରେ ସନ୍ନିବିଷ୍ଟ କରି ବା ଲୟ କରି ଯେଉଁ ସାଧନା କରାଯାଏ ତାହାକୁ ଲୟଯୋଗ କୁହାଯାଏ । ଏହି ଯୋଗ ଦ୍ୱାରା ଅନ୍ତରରେ ଭକ୍ତି ଜାତ ହୁଏ ବୋଲି ଅଚ୍ୟୁତାନନ୍ଦ କହିଛନ୍ତି ।

*'ଲୟ ଅଙ୍ଗ ଏକ କରି ଲୀଳାକୁ ସୁମର*
*ଲାବଣ୍ୟ ମୂରତି ହେତୁ ଅଙ୍ଗେ ଠାବ କର ।"*

*-ଭବିଷ୍ୟ ଚଉତିଶା*

*"ଯେକ ଭାବ ଧରି ଯେ କରିଲୟ*
*ଦୃଢ଼ ଭକ୍ତି ତାର ଚହୁଂ ଉଦୟ ।"*

*-ଅନନ୍ତ ରାସ*

ଦ୍ୱୈତଭାବକୁ ବର୍ଜନ କରି ଏକ ଭାବରେ ସାଧନା କରିବା ହିଁ ରାଜଯୋଗ । ଅଚ୍ୟୁତାନନ୍ଦ ଏ ସଂପର୍କରେ କୁହନ୍ତି-

*''ସିଷୁମ୍ନା ନାଡ଼ିକୁ ତୁ ଧ୍ୟାନ ଲଗାଇବୁ*
*ଉଦେ ଅସ୍ତ ଲଙ୍ଘିଣ ତୁ ପାହାଚି ଲାଗିବୁ ।*

x x x x

*ତିନି ଦଣ୍ଡ ଚାନ୍ଦ୍ରାୟଣ ପ୍ରହରେକ ହୋଇ*
*ଯୋଗଙ୍କର ଉପରେଟି ରାଜଯୋଗ ଏହି ।''*

*-ଗଣେଶ ବିଭୂତି ଟୀକା*

ସାଧନା କ୍ଷେତ୍ରରେ ଅଷ୍ଟାଙ୍ଗ ଯୋଗର ଭୂମିକା ଗୁରୁତ୍ୱପୂର୍ଣ୍ଣ । ଏହି ଯୋଗ ସାଧନା ଦ୍ୱାରା ଦିବ୍ୟଜ୍ଞାନ ଓ ଅମରତ୍ୱ ଲାଭ ହେବା ସଙ୍ଗେ ସଙ୍ଗେ ମନୁଷ୍ୟ କାମ, କ୍ରୋଧ, ଲୋଭ, ମୋହ, ମାୟା, ହିଂସା, ତମ ଓ ଅହଂକାର ପ୍ରଭୃତି କବଳରୁ ରକ୍ଷା ପାଇ ପରଂବ୍ରହ୍ମଙ୍କ ସାନ୍ନିଧ ପାଇଥାଏ । ଅଷ୍ଟାଙ୍ଗ ଯୋଗ ସାଧନ ପ୍ରସଙ୍ଗ ପତଞ୍ଜଳିଙ୍କ ଯୋଗଶାସ୍ତ୍ର ଓ ନାଥପନ୍ଥୀମାନଙ୍କର ବିଭିନ୍ନ ଗ୍ରନ୍ଥରେ ବିଶଦ ଭାବରେ ବର୍ଣ୍ଣିତ । 'ଯୋଗୀ ଯାଜ୍ଞବଲ୍କ୍ୟ'ରେ ଏ ସଂପର୍କରେ ଉଲ୍ଲେଖ ଅଛି ଯେ,

*''ଯମଶ୍ଚ ନିୟମ ଶ୍ଚୈବ ଆସନଞ୍ଚ ତଥୈବ ଚ*
*ପ୍ରାଣାୟାମ ସ୍ତଥା ଗାର୍ଗୀ ପ୍ରତ୍ୟାହାରଶ୍ଚ ଧାରଣା ।*
*ଧ୍ୟାନଂ ସମାଧି ରେତାନି ଯୋଗାଙ୍ଗାନି ବରାନନେ ।''*

ଅଚ୍ୟୁତାନନ୍ଦ ବିଭିନ୍ନ ଗ୍ରନ୍ଥରେ ଯମ, ନିୟମ, ଆସନ, ପ୍ରାଣାୟାମ, ପ୍ରତ୍ୟାହାର, ଧାରଣା, ଧ୍ୟାନ ଓ ସମାଧି ପ୍ରଭୃତି ଅଷ୍ଟାଙ୍ଗ ଯୋଗ କଥା ବର୍ଣ୍ଣନା କରିଛନ୍ତି । ଏ ସଂପର୍କରେ ହରିବଂଶରେ ଉଲ୍ଲେଖ ଅଛି-

*''ଶରୀର ସାଧନା ଏ ଯେ ପୁଣ୍ୟର ଏ ମାର୍ଗ*
*ଅଷ୍ଟାଙ୍ଗ ଯୋଗ କହିବି ଏବେ ତୋର ଆଗ ।*
*ଜଗନ୍ନାଥ ନାମ ଏକ ତାର ପ୍ରତିକାର*
*ଧ୍ୟାନ ଧାରଣା ଯେ ଯୋଗ ସମାଧି ବିଚାର ।''*

*-୨ୟ ଖଣ୍ଡ*

ପାତଞ୍ଜଳି, ଯୋଗର ଏହି ଅଷ୍ଟାଙ୍ଗ ସଂପର୍କରେ ଯେପରି ସାଧନ ପ୍ରଣାଳୀ ନିରୂପଣ କରିଛନ୍ତି ଅଚ୍ୟୁତାନନ୍ଦ ମଧ ସେହିପରି ଅଷ୍ଟାଙ୍ଗ ଯୋଗର ନୀତି-ନିୟମ କଥା କହିଛନ୍ତି । ହରିବଂଶ, ବ୍ରହ୍ମଶଙ୍କୁଳି, ଗୁରୁଭକ୍ତି ଗୀତା, କଳି ଚଉତିଶା, ଗଣେଶ ବିଭୂତି ଟୀକା,

ଅନହତ ସଂହିତା, ଶବ୍ଦବ୍ରହ୍ମ ସଂହିତା, କଳିକଳ୍ପ ବ୍ରହ୍ମବିଦ୍ୟା, ଶୂନ୍ୟ ସଂହିତା ପ୍ରଭୃତି ଗ୍ରନ୍ଥରେ ସେ ଯୋଗସାଧନ ପ୍ରସଙ୍ଗ ବିଶଦ ଭାବରେ ବର୍ଣ୍ଣନା କରିଛନ୍ତି । ଅଷ୍ଟାଙ୍ଗ ଯୋଗ ସାଧନା ସହିତ ଷଡ଼ଚକ୍ର, ସପ୍ତାଙ୍ଗ ବିଷୟ ମଧ୍ୟ ତାଙ୍କର ବିଭିନ୍ନ ଗ୍ରନ୍ଥରେ ସ୍ଥାନ ପାଇଛି । ମୋଟାମୋଟି ଭାବରେ ଶରୀରକୁ ସାଧନାର ଉପଯୁକ୍ତ କ୍ଷେତ୍ରକରି ତାରି ମାଧ୍ୟମରେ ପରଂବ୍ରହ୍ମଙ୍କୁ ଲାଭ କରିବା ପାଇଁ ଏସବୁ ମାର୍ଗ ଅନୁସରଣ କରାଯାଇଛି ।

**(୬) ଗୁରୁବାଦ-** ବ୍ରହ୍ମଜ୍ଞାନ ସାଧନା କ୍ଷେତ୍ରରେ ଗୁରୁଙ୍କୁ ଗୁରୁତ୍ୱପୂର୍ଣ୍ଣ ଆସନ ଦିଆଯାଇଛି । ସଦ୍‌ଗୁରୁ ନ ହେଲେ ଶିଷ୍ୟ କେବେହେଲେ ଦିବ୍ୟଜ୍ଞାନ ଲାଭ କରିପାରିବ ନାହିଁ । ସେଥିପାଇଁ ବୈଦିକ ଯୁଗରୁ ଗୁରୁଙ୍କ ଶ୍ରେଷ୍ଠତ୍ୱ ପ୍ରତିପାଦନ କରାଯାଇ ସିଦ୍ଧିଲାଭ ପାଇଁ ତାଙ୍କର ଏକାନ୍ତ ଆବଶ୍ୟକତାକୁ ସ୍ୱୀକାର କରାଯାଇଛି । ତନ୍ତ୍ର ସମେତ ବୌଦ୍ଧ ସହଜିୟା, ନାଥ ଓ ସୁଫୀ ଧର୍ମରେ ଗୁରୁବାଦର ମଧ୍ୟ ମହତ୍ୱପୂର୍ଣ୍ଣ ଭୂମିକା ରହିଛି । ଇନ୍ଦ୍ରଭୂତି ତାଙ୍କର 'ଜ୍ଞାନସିଦ୍ଧି' ଗ୍ରନ୍ଥରେ କହିଛନ୍ତି ଯେ, ଯାହା ଉପରେ ଗୁରୁ କୃପା କରନ୍ତି ସେ ଉତ୍ତମ ତତ୍ତ୍ୱ ଲାଭ କରେ, ଅନ୍ୟଥା ସେ ଚିରକାଳ ମୂଢ଼ ହୋଇ ରହେ । ତାଙ୍କ ମତରେ ଗୁରୁହିଁ ବୁଦ୍ଧ, ଧର୍ମ ଓ ସଂଘ । ତାଙ୍କ କୃପା ଦ୍ୱାରା ତ୍ରିରତ୍ନ ଜ୍ଞାନ ଲାଭ ହୁଏ । ତାନ୍ତ୍ରିକ ସାଧନାରେ ଗୁରୁ ହେଉଛନ୍ତି ପ୍ରଧାନ ପଥ ପ୍ରଦର୍ଶକ । ଚର୍ଯ୍ୟାପଦରେ ସିଦ୍ଧସାଧକମାନେ ସଦ୍‌ଗୁରୁଙ୍କୁ ସଂସାର ସାଗରରୁ ପାରି କରିବାର ଏକମାତ୍ର ତ୍ରାଣକର୍ତ୍ତା ରୂପେ ଗ୍ରହଣ କରିଛନ୍ତି ।

*''ସଦ୍‌ଗୁରୁ ବୋହେଁ ଜିତେଲ ଭବଜଲ ।''*

*-କୃଷ୍ଣପାଦାନାମ୍*

*''ସଦ୍‌ଗୁରୁ ବଅଣେ ଧର ପତୱାଲ ।''*

*-ସରହପା*

'ଗୋରେଖ ବାଣୀ'ରେ କୁହାଯାଇଛି-

*''ଗୁରୁବିନ ଗ୍ୟାନଂ ନ ପାଇଲାରେ ଭଇଲା*
*ସଦ୍‌ଗୁରୁ ମିଳେ ତୋ ଭବଭୈବାବୁ ନହିଂ ତୋ ପରଚେ ହୁଆ ।*

ସର୍ବଭାରତୀୟ କ୍ଷେତ୍ରରେ ମଧ୍ୟଯୁଗୀୟ ଭକ୍ତକବିମାନଙ୍କ ମଧ୍ୟରେ କବୀର, ନାନକ, ଦାଦୁ, ସୁନ୍ଦର ଦାସ ପ୍ରମୁଖ ଗୁରୁବାଦ ଉପରେ ଯଥେଷ୍ଟ ଗୁରୁତ୍ୱ ଦେଇଛନ୍ତି । ବାସ୍ତବରେ ମଧ୍ୟଯୁଗରେ ଧର୍ମ ସାଧନାର ପ୍ରମୁଖ ଅଙ୍ଗଥିଲା ଗୁରୁବାଦ ଓ ଓଡ଼ିଶାରେ ପଞ୍ଚସଖାଙ୍କ ସମେତ ବହୁ ସାଧକ ଗୁରୁତତ୍ତ୍ୱକୁ ସେମାନଙ୍କ ସାଧନା କ୍ଷେତ୍ରରେ ଉଚ୍ଚ ସ୍ଥାନ

ଦେଇଛନ୍ତି । ଗୁରୁଙ୍କୁ ସେମାନେ ଦୁରିତ ବିନାଶକାରୀ, ମୁକ୍ତିଦାତା, ଦିବ୍ୟଜ୍ଞାନ ପ୍ରଦାନକାରୀ ଭାବରେ ବର୍ଣ୍ଣନା କରିଛନ୍ତି । ଗୁରୁ ଓ ଭଗବାନ ଏକ ଏବଂ ଅଭିନ୍ନ । ଗୁରୁ ହେଉଛନ୍ତି ବ୍ରହ୍ମା-ବିଷ୍ଣୁ-ଶିବ । ସଂସାର ରୂପକ ସାଗର ପାରିହେବା ପାଇଁ ଗୁରୁ ହେଉଛନ୍ତି ନାବ ସ୍ୱରୂପ । ଏପରି ଭାବରେ ଗୁରୁଙ୍କ ପ୍ରଶସ୍ତି ବହୁଳ ଭାବରେ ବର୍ଣ୍ଣନା କରାଯାଇଥିଲେ ହେଁ ଏଠାରେ ସାମାନ୍ୟ କେତୋଟି ଉଦାହରଣ ଦେଲେ ଯଥେଷ୍ଟ ହେବ ।

*"ସାକ୍ଷାତେ ଗୁରୁ ଯେ ଈଶ୍ୱର । ଗୁରୁଙ୍କୁ ନ ମଣିବ ନର ।*
*ଗୁରୁଟି ସର୍ବଧର୍ମ ମୟେ । ମୁହିଁ ବସଇ ଗୁରୁ ଦେହେ ।*
*ଏ ଘେନି ଗୁରୁ ଭଗବାନ । ସେ ନୋହେ ମନୁଷ୍ୟ ସମାନ ।"*

*-ଭାଗବତ- ଜଗନ୍ନାଥ ଦାସ*

*"ନମଇଁ ଶ୍ରୀଗୁରୁ ପୟର । ପୟର ଅଟେ ଗଙ୍ଗାନୀର ।*
*ସେ ନୀର ସ୍ପରଶର ମାତ୍ରେ । ଦୁରିତ ନ ରହଇ ଗାତ୍ରେ ।"*

*-ନାମଚନ୍ଦ୍ରିକା- ୧ମ ଅଧ୍ୟାୟ- ଜଗନ୍ନାଥ ଦାସ*

*"ଗୁରୁଟି ବ୍ରହ୍ମା ହରିହର । ଗୁରୁଟି ସ୍ୱୟଂ ନିରାକାର ।*
*ଏ ଘେନି ଗୁରୁ ଭଗବାନ । ସେ ନୁହେଁ ମନୁଷ୍ୟ ସମାନ ।"*

*-ଗୁପ୍ତଗୀତା- ୩ୟ ଅଧ୍ୟାୟ- ବଳରାମ ଦାସ*

ଅଚ୍ୟୁତାନନ୍ଦ ସ୍ୱରଚିତ ବିଭିନ୍ନ ଗ୍ରନ୍ଥରେ ଗୁରୁବାଦ ପ୍ରସଙ୍ଗ ବର୍ଣ୍ଣନା କରିଛନ୍ତି । ତେବେ ଏ ସଂର୍ପକରେ ତାଙ୍କର 'ଗୁରୁଭକ୍ତି ଗୀତା' ବିଶେଷ ମହତ୍ୱପୂର୍ଣ୍ଣ । ଗୁରୁଙ୍କ ସ୍ୱରୂପ, ଗୁରୁ ଲକ୍ଷଣ, ଶିଷ୍ୟ ଲକ୍ଷଣ, ଦୀକ୍ଷା ପଦ୍ଧତି ସମେତ ଅନେକ ପ୍ରସଙ୍ଗ, ପ୍ରଶ୍ନୋତ୍ତର ଛଳରେ ଗ୍ରନ୍ଥରେ କୁହାଯାଇଛି । ଗୁରୁ ହେଉଛନ୍ତି ବ୍ରହ୍ମା, ବିଷ୍ଣୁ ଓ ଶିବ । ତେଣୁ ଶିଷ୍ୟ ତାଙ୍କୁ ଦେବତା ତୁଲ୍ୟ ପୂଜା ଓ ସ୍ତୁତି କରିବା ଉଚିତ । ବ୍ରହ୍ମା, ବିଷ୍ଣୁ ଓ ଶିବଙ୍କୁ ଦର୍ଶନ କଲେ ଯେଉଁ ଫଳ ମିଳେ ଗୁରୁ ଦର୍ଶନରେ ମଧ ସେହି ଫଳଲାଭ ହୁଏ ।

*"ବିଷ୍ଣୁ ପରାଯେ ଗୁରୁଙ୍କୁ ମଣିବ । ଶିବ ପରାଯେ ଗୁରୁଙ୍କୁ ପୂଜିବ ।*
*ଗୁରୁଙ୍କୁ ବ୍ରହ୍ମା ପ୍ରାୟେ ସ୍ତୁତି କରି । ଆଜ୍ଞାକୁ ହୋଇଥିବ ଅବଧାରି ।*
*ଏତେ ଗୁଣ ଶିଷ୍ୟ ବୋଲି ଜାଣିବ । ଏମନ୍ତ ଶିଷ୍ୟ ଜଗତି ଗଣିବ ।"*

*-ଗୁରୁଭକ୍ତି ଗୀତା- ୧/୪୨ ଛାନ୍ଦ*

*"ଗୁରୁବ୍ରହ୍ମା ଗୁରୁ ବିଷ୍ଣୁ ଗୁରୁ ମହେଶ୍ୱର*
*ତିନି ଦେବତାର ଫଳ ଗୁରୁ ଦର୍ଶନର ।"*

*-ଗୁରୁଭକ୍ତି ଗୀତା- ୧ମ/୩୫ ଛାନ୍ଦ*

ଅଚ୍ୟୁତାନନ୍ଦ ବିଭିନ୍ନ ଗ୍ରନ୍ଥରେ ଯେପରି ଭାବରେ ନାନାପ୍ରକାର ସାଧନତତ୍ତ୍ୱ ବଖାଣିଛନ୍ତି ସେଥିରୁ ତାଙ୍କର ଜ୍ଞାନ ତଥା ପାଣ୍ଡିତ୍ୟର ପରିଚୟ ମିଳେ । ସେ ଯନ୍ତ୍ର-ମନ୍ତ୍ର-ତନ୍ତ୍ର ସବୁରେ ବିଶାରଦ ଥିଲେ ଓ ତାହାହିଁ ହେଉଛି ଜଣେ ସଦ୍‌ଗୁରୁର ଲକ୍ଷଣ । ଯେଉଁ ଗୁରୁ ପରମ ବ୍ରହ୍ମଜ୍ଞାନ ଶିକ୍ଷା ପ୍ରଦାନ କରିପାରେ ସେ ହେଉଛନ୍ତି ପ୍ରକୃତ ଗୁରୁ । ତାଙ୍କ ମତରେ-

*''ଯେଉଁ ଗୁରୁ ଠାରେ ପରମ ଦୀକ୍ଷା*
*ସେ ଗୁରୁପାଦରେ କରିବ ଇଚ୍ଛା ।''*

*-ବାରମାସ ଚଉିଶ ଉପଦେଶ*

ଗୁରୁଙ୍କ ଦକ୍ଷତା ସଂପର୍କରେ ସେ କୁହନ୍ତି-

*''ଗୁରୁଙ୍କୁ କି ଦେବା ଉପମା । କେ ଜାଣେ ଗୁରୁ କୃଷ୍ଣ ସୀମା ।*
*ଯେ ଗୁରୁ ଜାଣେ ଯନ୍ତ୍ରସାର । ଶିର ଲମିବ ତା ପୟର ।*
*ଗୁରୁ ସେ ଗତିର କରତା । ବେଦରେ ସାର ଏହି କଥା ।*
*ଓଁକାର ଭେଦ ସେ ଜାଣନ୍ତି । ତେବେ ଜାଣିବ ଗୁରୁଶକ୍ତି ।''*

*-ଗୁରୁଭକ୍ତି ଗୀତା- ୧/୧ଛାନ୍ଦ*

ଗୁରୁଙ୍କ ଆଶୀର୍ବାଦରୁ ଧନ, ବଂଶ, ରାଜ୍ୟ ପ୍ରାପ୍ତି ତଥା ସୁଖ ସମୃଦ୍ଧି ଲାଭ ହୋଇଥାଏ । ଗୁରୁଙ୍କ ଦର୍ଶନ ଦ୍ୱାରା ସମସ୍ତ ପ୍ରକାର ପାପ ମଧ କ୍ଷୟ ହୁଏ ଓ ମୁକ୍ତି ମିଳେ ।

*''ଗୁରୁଟି ଗତିର ପୁରୁଷ । ଗୁରୁ କଲ୍ୟାଣେ ଧନ ବଂଶ ।*
*ଗୁରୁ କଲ୍ୟାଣେ ରାଜ୍ୟ ଶିରି । ଗୁରୁ ଦର୍ଶନ ପାପହରି ।*
*ଗୁରୁ ମୁକତି ଗତି ଦାତା । ଗୁରୁଟି ଜୀବ ଉଦ୍ଧାରତା ।''*

*-ଗୁରୁଭକ୍ତି ଗୀତା- ୩/୩ ପଟଳ*

ଏ ସଂସାର ରୂପକ ସମୁଦ୍ରକୁ ପାରିହେବା ପାଇଁ ଗୁରୁ ହେଉଛନ୍ତିନାବ ସ୍ୱରୂପ । ପୁଣି ଦୀପ ସଦୃଶ ଗୁରୁଙ୍କ ଦ୍ୱାରା ଶିଷ୍ୟ ସଂସାରରେ ସବୁ କିଛି ପାଇପାରେ । ସେହି ଦୀପର ଆଲୋକରେ ସେ ସବୁ ଦେଖିପାରେ ଓ ନିଜ ଜୀବନକୁ ଆଲୋକିତ କରିଥାଏ ।

*''ଏ ଭବ ସମୁଦ୍ର ଅଟଇ । ଗୁରୁ ଚହିଁକି ନାବ ହୋଇ ।''*

*-ଗୁରୁଭକ୍ତି ଗୀତା- ୩/୧୨ ପଟଳ*

*''ଦୀପ ଲାଗିଲେ ସର୍ବ ପାଇ । ସଂସାରେ ଗୁରୁ ଦୀପ ହୋଇ ।''*

*-ଗୁରୁଭକ୍ତି ଗୀତା- ୩/୧୩ ପଟଳ*

ଗୁରୁଙ୍କୁ ପୂଜାରେ ସନ୍ତୁଷ୍ଟ କରି ଶିଷ୍ୟ ଯେପରି ଗୁରୁ ଆଶୀର୍ବାଦ ଦ୍ୱାରା ସୌଭାଗ୍ୟଶାଳୀ ହୋଇଥାନ୍ତି, ସେହିପରି ଗୁରୁଙ୍କୁ ନିନ୍ଦା କରି ନର୍କରେ ପଡ଼ିଥାନ୍ତି । ଗୁରୁଙ୍କୁ ଅବଜ୍ଞା ଅଥବା ନିନ୍ଦା କରି ଶିଷ୍ୟ କିପରି ଚରମ ଦୁର୍ଦ୍ଦଶାର ସମ୍ମୁଖୀନ ହୋଇଥାନ୍ତି, ତାହା ଅଚ୍ୟୁତାନନ୍ଦ ବିଶଦ ଭାବରେ ବର୍ଣ୍ଣନା କରିଛନ୍ତି ।

*''ଗୁରୁ ଆଗେ ଶିଷ୍ୟ କହିଲେ ମିଛ । ଲାଗଇ ଗୋହତ୍ୟା ଦୋଷ ପ୍ରତ୍ୟକ୍ଷ ।*
*ଗୁରୁଠାରେ ଯଦି କପଟ କରି । ବ୍ରହ୍ମହତ୍ୟା ଦୋଷ ପାତକ କରି ।*
*ଛଳକରି ଗୁରୁଠାରେ କହିଲେ । ସୁରାପାନ ଦୋଷ ଲାଗଇ ଭଲେ ।*
*ମାୟା କଥା ଯେବେ ଗୁରୁଙ୍କୁ କହି । ବିଶୁଦ୍ଧ ମାତୃ ହରଣ ଯେ ହୋଇ ।''*

*-ଗୁରୁଭକ୍ତି ଗୀତା*

ଅଚ୍ୟୁତାନନ୍ଦ ଗୁରୁ ନିନ୍ଦାର ଘୋର ବିରୋଧୀ ଥିଲେ । ତେଣୁ ନିଜ ଗୁରୁଙ୍କର ନିନ୍ଦା ହେବା ସ୍ଥାନରେ କ୍ଷଣେ ମାତ୍ର ନ ରହିବା ପାଇଁ ସେ ଶିଷ୍ୟଙ୍କୁ ଉପଦେଶ ପ୍ରଦାନ କରିଛନ୍ତି । ଏପରିକି ନିନ୍ଦା ରଚନା କରୁଥିବା ବ୍ୟକ୍ତି ନିଜର ସ୍ତ୍ରୀ କି ସଖା ହୋଇଥିଲେ ମଧ ତାଙ୍କୁ ପରିତ୍ୟାଗ କରିବ ।

*''ନିଜ ଗୁରୁ ନିନ୍ଦା କରିବା ସ୍ଥାନରେ କ୍ଷଣେ ମାତ୍ର ନ ରହିବ*
*ଭାରିଯା ହୋଇଲେ ତାହାଙ୍କୁ ତେଜିବ ସଖା ବା କାହିଁ ରଖିବ ।''*

*-ତେରଜନ୍ମ ଶରଣ*

ଗୁରୁଙ୍କୁ ଦକ୍ଷିଣା ଦେବା ଉପରେ କବି ଗୁରୁତ୍ୱ ପ୍ରଦାନ କରିଛନ୍ତି । ଯେଉଁ ଶିଷ୍ୟ ଗୁରୁଙ୍କୁ ଦକ୍ଷିଣା ନଦିଏ ସେ ପଶୁଜନ୍ମ ପ୍ରାପ୍ତ ହୁଏ ।

*''ଗୁରୁଙ୍କୁ ଦକ୍ଷିଣା ନଦେଇ । ଯେ ଶିଷ୍ୟ ନାମଗ୍ରାହୀ ହୋଇ ।*
*ନିଷ୍ଫଳ ତାହାର ଜୀବନ । ଲଭଇ ସେହୁ ପଶୁଜନ୍ମ ।''*

*-ଗୁରୁଭକ୍ତି ଗୀତା- ୧/୫ମ ଛାନ୍ଦ*

ଗୁରୁଦର୍ଶନ ବିଧି ମଧ ଅଚ୍ୟୁତାନନ୍ଦ ଉଲ୍ଲେଖ କରିଛନ୍ତି । ପ୍ରତି ମାସରେ ଦୁଇଟି ଏକାଦଶୀ, ସଂକ୍ରାନ୍ତି, ଅମାବାସ୍ୟା ଓ ପୂର୍ଣ୍ଣମୀ ଏପରି ପାଞ୍ଚଦିନ ହୋଇ ବର୍ଷକେ ଷାଠିଏ ଦିନ ଶିଷ୍ୟ ଗୁରୁଙ୍କୁ ଦର୍ଶନ କରିବା ଉଚିତ ବୋଲି ସେ କହିଛନ୍ତି ।

*''ଦ୍ୱି ଏକାଦଶୀ ସଂକରାନ୍ତି । ପୂର୍ଣ୍ଣମୀ ଅମାବାସ୍ୟା ଚିହ୍ନି ।*
*ଏମନ୍ତେ ଷାଠିଏ ଯେ ଦିନ । ଗୁରୁଙ୍କୁ କରିବ ଦର୍ଶନ ।*
*ଯେ ଅବା ଫଳେ ପୁଷ୍ପେ ମିଳେ । ଦେବ ଯେ ଗୁରୁଙ୍କର ଆଗେ ।''*

*-ଗୁରୁଭକ୍ତି ଗୀତା-୧ମ/୫ ଛାନ୍ଦ*

ଅଚ୍ୟୁତାନନ୍ଦ ଗୁରୁଙ୍କୁ ସର୍ବଶ୍ରେଷ୍ଠ ସ୍ଥାନ ଦେଇଛନ୍ତି । ଗୁରୁ ହେଉଛନ୍ତି ସମସ୍ତ ଜ୍ଞାନଲାଭର ଏକମାତ୍ର ଉପାୟ । ନାନା ତୀର୍ଥ ପର୍ଯ୍ୟଟନ, ବ୍ରତ ଓ ତପ ଆଚରଣ ଦ୍ୱାରା ଯେଉଁ ଫଳ ଲାଭ ହୁଏ, କେବଳ ଗୁରୁଙ୍କ ଚରଣରେ ଧ୍ୟାନ ଲଗାଇଲେ ସେହି ଫଳ ମିଳିଥାଏ । ତେଣୁ ସେ କହିଛନ୍ତି-

*''ଚରଣ ଟେକି ଗୁରୁପାଦେ ଭଜିଲେ ପାଇବୁ ଜ୍ଞାନର ଭୂଇଁ*
*ତୀର୍ଥ ବ୍ରତ ତପ ଫଳ ହିଁ ପାଇବୁ ଶ୍ରୀଗୁରୁ ଚରଣେ ଧାୟି ।''*

*-ଶୂନ୍ୟ ସଂହିତା- ୧୯ ଅଧ୍ୟାୟ*

ଅଚ୍ୟୁତାନନ୍ଦଙ୍କ ଗୁରୁବାଦ ବେଦ, ଉପନିଷଦ, ପୁରାଣ ପ୍ରଭୃତିର ପରମ୍ପରା ଦ୍ୱାରା ସ୍ୱୀକୃତ । ତାଙ୍କ ମତରେ ଗୁରୁ ମାନବ ଦେହ ଧାରଣକରି ଜନ୍ମ ଗ୍ରହଣ କରଥିଲେ ହେଁ ସେ ମଣିଷ ନୁହନ୍ତି- ସେ ହେଉଛନ୍ତି ଦେବତା । ସେ ଶୂନ୍ୟ ସଂହିତା ସ୍ୱରୂପୀ- ନିର୍ଗୁଣ ପର୍ଯ୍ୟାୟବାଚୀ- ତାଙ୍କର ସ୍ୱରୂପ ହେଉଛି ଓଁକାର ।

*''ଗୁରୁଟି ଶୂନ୍ୟମୟ ରୂପ । ଓଁରାମ ଗୁରୁଙ୍କ ସ୍ୱରୂପ ।*

*-ଗୁରୁଭକ୍ତି ଗୀତା- ୧/୧ ଛାନ୍ଦ*

**(୭) ରାସଲୀଳା-** ରାସ ଶବ୍ଦର ଅର୍ଥ ମଣ୍ଡଳାକାରରେ ସାମୂହିକ ନୃତ୍ୟ । ଶ୍ରୀକୃଷ୍ଣଙ୍କୁ କେନ୍ଦ୍ରକରି ଗୋପୀମାନେ ଯେଉଁ ନୃତ୍ୟ ପରିବେଷଣ କରନ୍ତି, ସେଥିରୁ ହିଁ ରାସଲୀଳାର ସୃଷ୍ଟି । ଏହି ରାସଲୀଳାର ପରମ୍ପରା ଅତି ପ୍ରାଚୀନ । ଖ୍ରୀଷ୍ଟୀୟ ଦ୍ୱିତୀୟ ଶତାବ୍ଦୀର ତାମିଲ କାବ୍ୟ ''ଶିଳପଦୀକାରମ୍''ରେ ଗୋପୀ ନୃତ୍ୟ ଓ ଗୋପୀମାନଙ୍କର ବସ୍ତ୍ରହରଣ ପ୍ରସଙ୍ଗ ବର୍ଣ୍ଣନା କରାଯାଇଛି । ଏଥିରେ ନାୟକ ମାୟାବନ୍ ଓ ନାୟିକା ପିନ୍ନଇ । ଖ୍ରୀଷ୍ଟୀୟ ପଞ୍ଚମ ଶତାବ୍ଦୀରେ ରଚିତ ହାଳଙ୍କ ''ଗାଥା ସପ୍ତସତୀ'', ନବମ ଶତାବ୍ଦୀରେ ଆବିର୍ଭୂତ ଭଟ୍ଟନାରାୟଣଙ୍କ 'ବେଣୀ ସଂହାର', ଆନନ୍ଦ ବର୍ଦ୍ଧନଙ୍କ ଧ୍ୱନ୍ୟାଲୋକ, ଅଭିନନ୍ଦଙ୍କ ରଚନା, ପରବର୍ତ୍ତୀ ସମୟରେ ରଚିତ ଜୟଦେବ, ବିଦ୍ୟାପତି, ଚଣ୍ଡୀଦାସ ପ୍ରମୁଖଙ୍କ ସୃଷ୍ଟି, ବିଲ୍ୱମଙ୍ଗଳଙ୍କ 'ଶ୍ରୀକୃଷ୍ଣ କର୍ଣ୍ଣାମୃତ'ରେ ରାଧା, କୃଷ୍ଣ ଓ ଗୋପୀମାନଙ୍କର ରାସଲୀଳା ବହୁଳ ଭାବରେ ବର୍ଣ୍ଣିତ ହୋଇଛି । ଦକ୍ଷିଣ ଭାରତର ଆଲବାର୍‌ମାନଙ୍କ ପଦାବଳୀରେ ମଧ୍ୟ ଗୋପୀମାନଙ୍କର କୃଷ୍ଣଭକ୍ତି ଅତି ଚମତ୍କାର ଭାବରେ ପ୍ରତିଫଳିତ ହୋଇଛି ।

ପୂର୍ବରୁ ପ୍ରଚଳିତ ଏସବୁ ପରମ୍ପରାକୁ ଗୌଡ଼ୀୟ ବୈଷ୍ଣବଗଣ ଗ୍ରହଣ କରି ନେଇଥିଲେ । ତେଣୁ ବୃନ୍ଦାବନରେ ରାଧାକୃଷ୍ଣ ଓ ଗୋପୀମାନଙ୍କୁ ନେଇ ନାଟକୀୟ

ଲୀଳାର ବିସ୍ତୃତ ବର୍ଣ୍ଣନା କରିଛନ୍ତି ସେମାନେ । ଷୋଳକୋଶ ବ୍ୟାପି ଏହି ବୃନ୍ଦାବନରେ ଗିରି ଗୋବର୍ଦ୍ଧନ, ସପ୍ତ ସରୋବର, ସପ୍ତବଟ, ସପ୍ତନଦୀ, କାଳିନ୍ଦୀ, ରାଧାକୁଣ୍ଡ, ଶ୍ୟାମକୁଣ୍ଡ, ଯଶୋଦାକୁଣ୍ଡ, ଲଳିତା କୁଣ୍ଡ, ସୂର୍ଯ୍ୟକୁଣ୍ଡ, ଚବିଶବନ, ଅଷ୍ଟକୁଞ୍ଜ ଓ ବିଭିନ୍ନ ଘାଟ ପ୍ରଭୃତିର ଅବସ୍ଥିତି ଏହାକୁ ଅତ୍ୟନ୍ତ ରମଣୀୟ କରିଛି । ବୃନ୍ଦାବନର ଯମୁନା କୂଳରେ ପୁଣି ମହାରାସ ସ୍ଥଳୀର ସ୍ଥିତି । ଏହି ରାସସ୍ଥଳୀର ମଧ୍ୟଭାଗରେ ମଣିମୟ ମଣ୍ଡପ ବିଦ୍ୟମାନ । ମଣ୍ଡପର ଚାରିଦ୍ୱାରରେ ଅନିରୁଦ୍ଧ, ପ୍ରଦ୍ୟୁମ୍ନ, ବାସୁଦେବ ଓ ସଂକର୍ଷଣ ଦ୍ୱାରୀ ରୂପେ ରହିଛନ୍ତି । ମଣ୍ଡପର ମଧ୍ୟ ସ୍ଥଳରେ ପଦ୍ମାକୃତି ସିଂହାସନ ଓ ଚତୁର୍ଦ୍ଦିଗରେ ରତ୍ନ ନିର୍ମିତ ଅଷ୍ଟଦଳ ବିଦ୍ୟମାନ । ଏହି ଅଷ୍ଟଦଳରେ ଲଳିତା, ବିଶାଖା ଆଦି ଅଷ୍ଟସଖୀଙ୍କର ଆସ୍ଥାନ । ସିଂହାସନରେ ରାଧାକୃଷ୍ଣଙ୍କୁ ବିଜେ କରାଇ ସଖୀମାନେ ତାଙ୍କର ସେବାରେ ନିଜକୁ ନିୟୋଜିତ କରିଥାନ୍ତି । ପୁଣି ଏହି ରାସସ୍ଥଳୀରେ ଷୋଳ ସହସ୍ର ଗୋପନାରୀଙ୍କ ସହିତ କୃଷ୍ଣଙ୍କର ରାସଲୀଳା ହୁଏ । ଶ୍ରୀକୃଷ୍ଣଙ୍କ ବଂଶୀନାଦ ଶ୍ରବଣରେ ବିମୋହିତା ଗୋପୀକୁଳ, ଗୃହ, ପତି, ଲଜ୍ଜା, ସବୁକିଛି ଭୁଲି ମିଳନ କୁଞ୍ଜକୁ ଆବେଗରେ ଧାଇଁ ଆସନ୍ତି । ଏହି ପ୍ରକାର ରାସଲୀଳାକୁ ଷଡ଼ଗୋସ୍ୱାମୀଙ୍କ ସମେତ ଅତ୍ୟାନ୍ୟ ଗୌଡ଼ୀୟ ବୈଷ୍ଣବ ଧର୍ମର ପ୍ରବକ୍ତାମାନେ ବିଶଦ ଭାବରେ ବର୍ଣ୍ଣନା କରିବା ସଙ୍ଗେ ସଙ୍ଗେ ବୃନ୍ଦାବନର ନିତ୍ୟତାକୁ ସ୍ୱୀକାର କରିଛନ୍ତି । ଫଳରେ ପରକୀୟା ପ୍ରେମ ସର୍ବସ୍ୱ ଏହି ରାସଲୀଳା ଗୌଡ଼ୀୟ ବୈଷ୍ଣବ ଧର୍ମରେ ଗୁରୁତ୍ୱପୂର୍ଣ୍ଣ ସ୍ଥାନ ଲାଭ କରିଛି ।

ଓଡ଼ିଶାରେ ଏହି ରାସଲୀଳାକୁ ସମୟାନୁଯାୟୀ ଦୁଇ ଭାଗରେ ବିଭକ୍ତ କରାଯାଇଛି । ଯଥା- ଶରତ ଋତୁରେ ଶରତ ରାସ ଓ ବସନ୍ତ ଋତୁରେ ବସନ୍ତ ରାସ । ବଳରାମ, ଜଗନ୍ନାଥ, ଅଚ୍ୟୁତ, ଅନନ୍ତ ଓ ଯଶୋବନ୍ତ ପ୍ରମୁଖ ପଞ୍ଚସଖା ବହୁଳ ଭାବରେ ସେମାନଙ୍କ ରଚନାରେ ଏହି ରାସଲୀଳାର ବର୍ଣ୍ଣନା କରିଛନ୍ତି । ଏହା ବ୍ୟତୀତ କବି ଅଭିମନ୍ୟୁ, ଉପେନ୍ଦ୍ର ଭଞ୍ଜ, ଶିଶୁ ବନମାଳୀ ଦାସ, ପିଣ୍ଡିକ ଶ୍ରୀଚନ୍ଦନଙ୍କ ସମେତ ବହୁ କବିଙ୍କ କୃଷ୍ଣଭକ୍ତି ସମ୍ବଳିତ କାବ୍ୟରେ ରାସଲୀଳାର ପ୍ରଭାବ ସ୍ପଷ୍ଟଭାବରେ ପ୍ରତିଫଳିତ ହୋଇଛି । ପଞ୍ଚସଖା ବୃନ୍ଦାବନର ରାସଲୀଳା ପରି ରାଧାକୃଷ୍ଣ-ଗୋପୀ, ବିଭିନ୍ନ ସଖୀ, କୋଣ, ପଦ୍ମର ଦଳ ପ୍ରଭୃତିକୁ ଗ୍ରହଣ କରିଥିଲେ ମଧ୍ୟ ବାସ୍ତବରେ ସେସବୁ ବୃନ୍ଦାବନ ରାସଲୀଳାର ଅନ୍ତର୍ଭୁକ୍ତ ନୁହେଁ । ବାହ୍ୟ ଭାବରେ ଏସବୁ ବୃନ୍ଦାବନ ରାସପରି ଜଣା ପଡୁଥିଲେ ହେଁ ପଞ୍ଚସଖା ଏଥିରେ ଆଧାତ୍ମିକ ବ୍ୟଞ୍ଜନା ଦେଇଛନ୍ତି । ସାଧାରଣତଃ ସେମାନେ ଏହି ରାସକୁ ନିତ୍ୟରାସ ବା ନିତ୍ୟରାହାସ ନାମରେ ନାମିତ କରିଛନ୍ତି । ଏହି ନିତ୍ୟ ରାସଲୀଳା ଦୁଇଟି ସ୍ଥାନରେ ଲାଗି ରହିଛି । ପ୍ରଥମତଃ ନୀଳାଚଳରେ ଓ ଦ୍ୱିତୀୟତଃ ମଣିଷ ଶରୀର ମଧ୍ୟରେ ।

ଗୌଡ଼ୀୟ ବୈଷ୍ଣବମାନେ ବୃନ୍ଦାବନକୁ ନିତ୍ୟସ୍ଥଳୀ ରୂପେ ସ୍ୱୀକାର କରିଥିବା ସ୍ଥଳେ ଉତ୍କଳର ବୈଷ୍ଣବମାନେ ନୀଳାଚଳର ନିତ୍ୟତା ପ୍ରତିପାଦନ କରିଛନ୍ତି । ନୀଳାଚଳରେ ବିଜେ କରିଥିବା ଶ୍ରୀଜଗନ୍ନାଥ ମୂର୍ତ୍ତି ରାସଲୀଳାର ନାୟକ ରୂପେ ସେମାନଙ୍କ ଦ୍ୱାରା ଗୃହୀତ । ଯଶୋବନ୍ତ ଦାସଙ୍କ ମତରେ -

*"ଯେଉଁ ଜଗନ୍ନାଥ ମୂରତି ନୀଳାଚଳରେ ସ୍ଥିତ*
*ସେହି ଜଗନ୍ନାଥ ମୂରତି ପଦ୍ମବନେ ଉଦିତ ।"*

*-ପଦ୍ମବନ ରାସ*

ପଦ୍ମବନ ରୂପେ ପରିକଳ୍ପିତ ନୀଳାଚଳ ହେଉଛି ରାସସ୍ଥଳୀ । ପଞ୍ଚସଖାଙ୍କ ମତରେ ଏହି ପଦ୍ମବନସ୍ଥ ମଣିମଣ୍ଡପର ଚାରିଦ୍ୱାରରେ ଚାରିବେଦ ଦ୍ୱାରପାଳ ରୂପେ ଜଗି ରହିଛନ୍ତି । ଦଶ ଦିଗରେ ଷୋଳ ସହସ୍ର ଗୋପୀ ଓ ଅଷ୍ଟକୋଣରେ ଅଷ୍ଟସଖୀ ରାଧାକୃଷ୍ଣଙ୍କ ସେବାରେ ନିଯୁକ୍ତା ଅଛନ୍ତି । ଏଠାରେ କଳ୍ପନା କରାଯାଇଥିବା ଦ୍ୱାଦଶ କୁଞ୍ଜ ଓ ବିଭିନ୍ନ ବଟ ମୂଳରେ ସଖୀମାନେ ଏକତ୍ର ହୋଇଛନ୍ତି । ମଣିବେଦୀ ବା ମଣି ମଣ୍ଡପରେ ଦୁଇ, ତିନି, ଛଅ, ଆଠ ଓ ସହସ୍ର ଦଳ ଅଛି । ସହସ୍ର ଦଳର ମହାନିତ୍ୟ ସ୍ଥଳରେ ରାଧାକୃଷ୍ଣ ବିଜେ କରିଛନ୍ତି । ପଞ୍ଚସଖାଙ୍କ ରଚିତ 'ପଦ୍ମବନ ରାସ' ଗ୍ରନ୍ଥରେ ଏ ପ୍ରସଙ୍ଗ ବିଶଦ ଭାବରେ ବର୍ଣ୍ଣନା କରାଯାଇଛି । ଦିବାକର ଦାସ କିନ୍ତୁ 'ଜଗନ୍ନାଥ ଚରିତାମୃତ'ଗ୍ରନ୍ଥରେ ନୀଳାଚଳର ରାସଲୀଳା ସଂପର୍କୀୟ ତାତ୍ତ୍ୱିକ ବ୍ୟାଖ୍ୟା ଅତି ସ୍ପଷ୍ଟ ଭାବରେ କରିଛନ୍ତି । ତାଙ୍କ ମତରେ ଆଦ୍ୟରେ ଷଟକୋଣ, ମଧ୍ୟରେ ଅଷ୍ଟଦଳ ପଦ୍ମ, ତପ୍ରେ ଷୋଳ ଦଳ, ବତିଶ ଦଳ, ଚୌଷଠି ଦଳ, ଶତଦଳ, ସହସ୍ରଦଳ କ୍ରମାନ୍ୱୟରେ ରହିଛି । ଷଟ୍‌କୋଣ, ଷଟଶକ୍ତି ଓ ଅଷ୍ଟକୋଣ ଅଷ୍ଟଶକ୍ତିଙ୍କ ଆସ୍ଥାନ ପୀଠ । ଷୋଳଦଳ ପୋଖରିଆ, ବତିଶ ଦଳ କଳା ଗାହାଟ, ଚୌଷଠି ଦଳ ଶ୍ରୀ ଜଗମୋହନ, ଶତଦଳ ଭିତର ବେଢ଼ା ଓ ସହସ୍ର ଦଳ ହେଉଛି ନୀଳାଚଳ । ନୀଳାଚଳର ଶୀର୍ଷସ୍ଥାନ ହେଉଛି କୁଞ୍ଜବନ । ପୁଣି କଳ୍ପଦ୍ରୁମ ତଳେ ଅନନ୍ତର ସହସ୍ରଫଣା ମଧ୍ୟରେ ସହସ୍ର ଦଳଯୁକ୍ତ ପଦ୍ମରେ ରାଧାକୃଷ୍ଣ ରାସଲୀଳାରେ ନିମଗ୍ନ ଅଛନ୍ତି । ଏହିଠାରେ ପ୍ରତ୍ୟେକ ସଖୀଙ୍କ ଆଶ୍ରିତରେ ଅଷ୍ଟସଖୀ ରହି ସମୁଦାୟ ଚୌଷଠୀ ସଖୀ ସେବାରେ ରତ ଅଛନ୍ତି । ରାସଲୀଳାର ଏହି ରାଧାକୃଷ୍ଣ ଦୁଇଟି ଅଙ୍ଗ ପରି ଜଣାପଡୁଥିଲେ ହେଁ ପ୍ରକୃତରେ ସେମାନେ ଗୋଟିଏ ଅଙ୍ଗ । ଯଶୋବନ୍ତ ଦାସଙ୍କ ମତରେ-

*"ରାଧାକୃଷ୍ଣ ବେନି ମୂରତି ଏକ ଅଙ୍ଗରେ ସ୍ଥିତି ।"*

*-ପଦ୍ମବନ ରାସ*

ପୁଣି ଅଚ୍ୟୁତାନନ୍ଦ କୁହନ୍ତି-

*"ସଖୀ ଗୋ ବେନି ମୂରତି ଏକ*
*ଶବଦ ଫେରୁଅଛି ଅତିରେକ ।"* *-ନିତ୍ୟରାହାସ*

ଏ ବୃନ୍ଦାବନର ରାଧାକୃଷ୍ଣ ନୁହନ୍ତି, ଏ ହେଉଛନ୍ତି ଆତ୍ମା-ପରମାତ୍ମା, ଜୀବ-ପରମ, ପ୍ରକୃତି-ପୁରୁଷ ।

*"ଆତ୍ମାକୁ ଫିରୀ ବେଶ କରି । ଶ୍ରୀରାଧା ଅଙ୍ଗରେ ବିହରି ।*
*କୃଷ୍ଣେ ଆସ୍ୱାଦ ରସ ଦେଇ । ଏହାକୁ ପ୍ରେମ ଭକ୍ତି କହି ।"*

*-ବଳରାମ ଦାସ- ବେଦାନ୍ତସାର ଗୁପ୍ତଗୀତା*

*"ଯେ ମିଶି ରାଧାକୃଷ୍ଣ ଥିଚି । ଜୀବ ପରମ ହିଁ ବୋଲାନ୍ତି ।"*

*-ଯଶୋବନ୍ତ ଦାସ- ପ୍ରେମଭକ୍ତି ବ୍ରହ୍ମଗୀତା*

ଶରୀର ମଧ୍ୟରେ ରାଧାକୃଷ୍ଣଙ୍କ ରାସଲୀଳାର ସମସ୍ତ ତତ୍ତ୍ୱ ପୂରିରହିଛି । ସ୍ୱୟଂ ରାଧାକୃଷ୍ଣ ଶରୀରରେ ଥିବା ସହସ୍ର ଦଳ ଠାରେ ବିଜେ କରିଛନ୍ତି । ତ୍ରିକୂଟ ସନ୍ଧିରେ ତ୍ରିଭଙ୍ଗିମା ରୂପର ଯେଉଁ ଭଜନ ଲାଗିଛି ତାକୁ ଲୟ କଲେ ରାଧାକୃଷ୍ଣଙ୍କର ଭେଟ ମିଳେ । ଆତ୍ମା ଭିତରେ ଅଯୋଧ୍ୟା, ଦ୍ୱାରକା, ଗୋପନଗର ପ୍ରଭୃତିକୁ ସ୍ମରଣ କରି ତିନି ତିହୁଡ଼ି ବା ତ୍ରିବେଣୀ ଧାରଠାରେ ବସି ତର୍ପଣ କଲେ ଏହି ରାସଲୀଳା ଅବଲୋକନ କରିହୁଏ ।

*"ତିନି ତିହୁଡ଼ି ଏ ତ୍ରିବେଣୀ ଧାର*
*ସେହିଠାରେ ବସି ତର୍ପଣ କର ।*
*ଅଯୋଧା ଦ୍ୱାରକା ଗୋପ ନଗର ।*
*ଜ୍ଞାନ ସୁମର ହୋ ଆତ୍ମା ଭିତର ।"*

*-ଶୂନ୍ୟରାସ- ଅଚ୍ୟୁତାନନ୍ଦ*

ଶରୀର ମଧ୍ୟସ୍ଥ ନାଦ-ବିନ୍ଦୁ, ବଙ୍କନାଳ, ଇଁଳା, ପିଅଁଳା, ସିଷୁମ୍ନା ପ୍ରଭୃତି ସହିତ ରାସଲୀଳାର ସଂପର୍କ ସ୍ଥାପନ କରିଛନ୍ତି ପଞ୍ଚସଖା । ମନ୍ତ୍ର, ଯନ୍ତ୍ର, ତନ୍ତ୍ର, ଛାୟା, ଅବାଡ଼, ସମାଧି ଦ୍ୱାରା ସିଦ୍ଧିଲାଭ କଲେ ଏହି ରାସଲୀଳା ଦର୍ଶନ କରିବା ସମ୍ଭବ ।

ଏସବୁ ଦୃଷ୍ଟିରୁ ସ୍ପଷ୍ଟ ପ୍ରତୀୟମାନ ହୁଏ ଯେ ପଞ୍ଚସଖା ରାଧାକୃଷ୍ଣଙ୍କୁ ଜୀବ-ପରମ ଭାବରେ ଗ୍ରହଣ କରି ଶରୀର ମଧ୍ୟରେ ସେମାନଙ୍କର ନିତ୍ୟ ରାସଲୀଳାକୁ ସ୍ୱୀକାର କରିଛନ୍ତି । ବାହ୍ୟ ଭାବରେ ଏହା ବୃନ୍ଦାବନର ରାସଲୀଳା ପରି ଜଣା ପଡୁଥିଲେ ହେଁ ଏଥିରେ ଶରୀର ତତ୍ତ୍ୱ ମୂଳକ ବ୍ରହ୍ମଜ୍ଞାନ ନିହିତ ଅଛି । ପୁଣି ସେମାନେ ନିତ୍ୟ ବୃନ୍ଦାବନକୁ ଶ୍ରୀକ୍ଷେତ୍ର ନୀଳାଚଳ ଧାମ ସହିତ ଆରୋପ କରି ଶ୍ରୀଜଗନ୍ନାଥଙ୍କୁ ରାସଲୀଳାର ନାୟକ ରୂପେ ଗ୍ରହଣ କରିଛନ୍ତି ।

ମହାପୁରୁଷ ଅଚ୍ୟୁତାନନ୍ଦ ରାସ ସଂପର୍କରେ ବହୁ ଗ୍ରନ୍ଥ ରଚନା କରିଥିଲେ । ସେସବୁ ମଧ୍ୟରେ ନିତ୍ୟ ରାହାସ, ମହାନିତ୍ୟରାସ, ଶୂନ୍ୟ ରାହାସ,ଠୂଳଶୂନ୍ୟ ରାସ, ବୃନ୍ଦାରାସ, ଦୂତୀରାସ ବା ଗୁକ୍ଷରୀ ରାହାସ ପରମ ରାହାସ, ଅନନ୍ତ ରାହାସ, ପଦ୍ମବନ ରାସ, ରାଧାରାସ, ରାହାସ ବନ୍ଦନା ଓ ରାହାସ ପ୍ରେମ ପଞ୍ଚାମୃତ ପ୍ରଭୃତି ପ୍ରଧାନ । ପୁଣି ତାଙ୍କ ରଚିତ 'ବରଣ ଚରିତ ଗୀତା'ରେ ରାହାସର ବରଣ ବିଧି ବିଶଦ ଭାବରେ ବର୍ଣ୍ଣିତ ହୋଇଛି ।

ଅଚ୍ୟୁତାନନ୍ଦ ଶ୍ରୀକ୍ଷେତ୍ର ସମେତ ପାଞ୍ଚକୋଶକୁ ଗୋଲୋକ ରାହାସ ସ୍ଥଳୀ ରୂପେ ଗ୍ରହଣ କରିଛନ୍ତି । ସେ ଅଠରନଳା ଠାରୁ ସିଂହଦ୍ୱାର ପର୍ଯ୍ୟନ୍ତ ନିତ୍ୟ ଗୋଲୋକ, ବାଇଶି ପାହାଚ ଠାରୁ ଗରୁଡ଼ ସ୍ତମ୍ଭ ପର୍ଯ୍ୟନ୍ତ ମହାନିତ୍ୟ ଗୋଲୋକ ଓ ସିଂହାସନକୁ ଅନିତ୍ୟ ଗୋଲୋକ ବୋଲି କହିଛନ୍ତି । ସେହି ସିଂହାସନରେ ଶଙ୍ଖ, ଚକ୍ର, ଗଦା, ପଦ୍ମଧାରୀ ଚତୁର୍ଦ୍ଧାମୂର୍ତ୍ତି ବିଜେ କରିଛନ୍ତି ।

ତାଙ୍କ ମତରେ-

*"ପଞ୍ଚକୋଶ ଯେନି ରାହାସ ସ୍ଥଳି । ନିତ୍ୟ ଅନିତ୍ୟ ଗୋଲୋକ ମଣ୍ଡଳୀ ।*

x x x x x

*ଅଠରନଳା ସିଂହଦ୍ୱାର ଯାଏ । ନିତ୍ୟ ଗୋଲୋକ ଏଥି ମଧେ ରହେ ।*
*ପାବଚ୍ଛ ଠାରୁ ଖମ୍ବଯାଏ ଯେନି । ମହାନିତ୍ୟ ଏଥି ମଧେ ମଣଣି ।*

x x x x x

*ଅରଗଳି ଯେନି ଏ ସିଂହାସନ । ଅନିତ୍ୟ ଗୋଲୋକ ଅଟେ ଭୁବନ ।"*

*-ମହାନିତ୍ୟ ରାହାସ*

ଅଚ୍ୟୁତାନନ୍ଦ ବର୍ଣ୍ଣନା କରିଛନ୍ତି ଯେ ଅନନ୍ତ ଶିରରେ ନିତ୍ୟପୁର ଓ ନିତ୍ୟପୁର ଉର୍ଦ୍ଧ୍ୱରେ ମହାନିତ୍ୟପୁର ଗୋଲୋକ ଅବସ୍ଥିତ । ସେହି ମହାନିତ୍ୟପୁର ଗୋଲୋକ ଠାରେ ଅହର୍ନିଶି ରାସଲୀଳା ଲାଗି ରହିଛି ନିତ୍ୟେଶ୍ୱରୀଙ୍କ ସହିତ ଶ୍ରୀହରିଙ୍କର । ଏହି ରାସଲୀଳାକୁ କବି ରହସ୍ୟମୟ ତତ୍ତ୍ୱପୂର୍ଣ୍ଣ ଭାବରେ ବର୍ଣ୍ଣନା କରିଛନ୍ତି ।

*"ସପ୍ତସ୍ୱରରେ ମୁରଲୀ ବାଜଇ । ମଧୁକର ନାଦ ଶବଦ ଦେଇ ।*
*ଆରତ ରତିରଙ୍ଗ ମୁଖରସ । କୋଟି ଯୁଗେ ବିହୁ ନୁହଁଇ ଶେଷ ।*
*ସେ ସ୍ଥଳ ମହିମା କହି ନସରେ । ଲେଖି ନ ପାଇଲେ ଶେଷ ଶଙ୍କରେ ।*
*ବ୍ରହ୍ମାଣ୍ଡ ଲୀଳା ସୁଖ ଯେତେଯେତେ । ସେହି ଠାବରୁ ହୁଏ ଉତପାତେ ।*
*ଏକ ଏକ ଅଙ୍ଗ ଇଚ୍ଛା ସୁଖରେ । ପ୍ରକୃତି ପୁରୁଷ ଜାତ ସେଠାରେ ।"*

*-ମହାନିତ୍ୟ ରାହାସ*

ବାସ୍ତବରେ ଏହି ରାହାସ ହେଉଛି ପ୍ରକୃତି ଓ ପୁରୁଷ ଏବଂ ଜୀବ ପରମର ମହାମିଳନ । ରାସତତ୍ତ୍ୱରେ ଜୀବାତ୍ମା ଓ ପରମାତ୍ମାଙ୍କର ମିଳନ ସମ୍ଭବପର ହୋଇଥାଏ । ଅଚ୍ୟୁତାନନ୍ଦ ଶରୀର ତତ୍ତ୍ୱ ମାଧ୍ୟମରେ ରହସ୍ୟମୟ ରାସଲୀଳାର ବର୍ଣ୍ଣନା କରିଛନ୍ତି । ତାଙ୍କ ମତରେ ଏହି ଶରୀର ହେଉଛି ଶ୍ରୀକ୍ଷେତ୍ର, ବଡ଼ଦେଉଳ ଓ ସବୁପ୍ରକାର ମନ୍ତ୍ର-ଯନ୍ତ୍ରର ଆସ୍ଥାନ । ବଡ଼ଦାଣ୍ଡ, ସିଂହଦ୍ୱାର, ବାଇଶିପାହାଚ, ଗରୁଡ଼, କଳ୍ପବଟ, ବାଆବଟ, ଚାରିଗୁମ୍ଫା, ପଞ୍ଚକୁଣ୍ଡ, ଚାରିଯୁଗ ପ୍ରଭୃତିକୁ ସେ ଶରୀର ମଧ୍ୟରେ ଠାବ କରିଛନ୍ତି । ସ୍ୱୟଂ ପଦ୍ମମୁଖ ଅବସ୍ଥାନ କରିଛନ୍ତି ଏହି ଶରୀର ମଧ୍ୟରେ ।

*''ସଖୀରେ ତୋର ଦେହରେ ଦେଖ*
*ବସି ଅଛନ୍ତି ପ୍ରଭୁ ପଦ୍ମମୁଖ ।''* *-ବୃନ୍ଦାରାସ*

ଶରୀର ମଧ୍ୟରେ ରହିଛି ସହସ୍ରାର କମଳ ଓ ସେଠାରେ ଏହି ପରମାତ୍ମା ଅବସ୍ଥାନ କରୁଛନ୍ତି । ସାଧକ ଷଡ଼ଚକ୍ର ସାଧନା ମାଧ୍ୟମରେ କୁଣ୍ଡଳିନୀ ଶକ୍ତିକୁ ଜାଗ୍ରତ କରି ଉର୍ଦ୍ଧ୍ୱଗାମୀ କରାଇ ସହସ୍ରାର କମଳ ବା ଲଲାଟ ଚକ୍ରରେ ପହଞ୍ଚାଇ ପାରିଲେ ପରମାତ୍ମାଙ୍କର ସାନ୍ନିଧ ଲାଭ କରିପାରେ । ଲଲାଟ ଚକ୍ରରେ ଜୀବ-ପରମ ବା ରାଧାକୃଷ୍ଣଙ୍କର ନିତ୍ୟ ରାସଲୀଳା ଲାଗିଛି । ନାନାପ୍ରକାର ଶରୀର ସାଧନା ମାଧ୍ୟମରେ ସାଧକ ସେହି ନିତ୍ୟ ରାସଲୀଳା ଦର୍ଶନ କରିଥାଏ । କବିଙ୍କ ମତରେ -

*''ତିନି ତିହୁଡ଼ି ତ୍ରିବେଣୀ ତ୍ରିକୂଟ । ସେହି ସଙ୍କଟେ ଆକାଶକୁ ବାଟ*
*ତହିଁ ତିନିଧାର ନଦୀ ବହୁଛି । ନାବ ଖଟାଇ ତରାଇ ରହିଛି ।''*

*-ଶୂନ୍ୟରାସ*

ସେହି ପରମାତ୍ମା ହେଉଛନ୍ତି ଶୂନ୍ୟ ପୁରୁଷ ଓ ସେ ଶୂନ୍ୟ ମନ୍ଦିରରେ ରାସ କରୁଛନ୍ତି । ମନ ପବନକୁ ସଂଯତ କରି ଚାଳନା କଲେ ତାଙ୍କୁ ପାଇହେବ ।

*''ସଖୀ ଗୋ, ଶୂନ୍ୟ ମନ୍ଦିରେ ବାସ । ଜ୍ୟୋତି ପରେ ଛନ୍ତି ଶୂନ୍ୟ ପୁରୁଷ ।*
X X X X
*ସଖୀଗୋ, ଶୂନ୍ୟେ ଲାଗିଛି ଲୀଳା । ମନ ପବନକୁ ଚହିଁକି ଚଳା ।*
X X X X
*ସଖୀଗୋ, ମହାଶୂନ୍ୟରେ ଅଛି । ଶୂନ୍ୟରେ ରହିସେ ରାସ କରୁଛି ।''*

*-ଶୂନ୍ୟରାସ*

ଏହିପରି ଶରୀର ମଧ୍ୟରେ ଶୂନ୍ୟରୂପୀ ପରଂବ୍ରହ୍ମଙ୍କର ଯେଉଁ ନିତ୍ୟ ରାସଲୀଳା ଲାଗି ରହିଛି ତାର ତାତ୍ତ୍ୱିକ ବ୍ୟାଖ୍ୟା କରିଛନ୍ତି ଅଚ୍ୟୁତାନନ୍ଦ ବିଭିନ୍ନ ରାସଗ୍ରନ୍ଥରେ । ନିତ୍ୟ

ରାସସ୍ଥଳୀରେ ଅଶେଷ ବ୍ରହ୍ମାଣ୍ଡ ପୁରି ରହିଛି, ହେଲେ ସେସବୁ ଶୂନ୍ୟ ପର୍ଯ୍ୟାୟବାଚୀ । ଏହା ନିଗମ ଭୂମି । ପୁଣି ମନ ପବନ ଏ ସ୍ଥାନକୁ ଗମି ପାରୁନଥିବାରୁ ଏହା ଅମନ ଭୁବନ । ସେହିଠାରେ ରହି ଲୀଳା କରୁଥିବା ହଂସକୁ ଧ୍ୟାନରେ ସେବା କରିବା ପାଇଁ ଅଚ୍ୟୁତାନନ୍ଦ ଉପଦେଶ ପ୍ରଦାନ କରିଛନ୍ତି ।

*"ସଖୀଗୋ, ସେବ ହଂସ ପାଦକୁ*
*ଅଚ୍ୟୁତ ଭାବନା ସେହି ପାଦକୁ ।"* *-ଶୂନ୍ୟରାସ*

ଶ୍ରୀମଦ୍‌ଭାଗବତର ରାସ ପଞ୍ଚାଧ୍ୟାୟୀରେ ରାଧାଙ୍କ ନାମ ନଥିବା ସ୍ଥଳେ ଅଚ୍ୟୁତାନନ୍ଦ ରାସଲୀଳାରେ ଗୋପୀମାନଙ୍କ ସହିତ ରାଧାଙ୍କୁ ଗ୍ରହଣ କରିଛନ୍ତି । ରାଧାକୃଷ୍ଣ ଏକ ଏବଂ ଅଭିନ୍ନ । ନିତ୍ୟ ସ୍ଥଳରେ ଅଷ୍ଟସଖୀ ସେବା କରୁଥିବା ରାଧାକୃଷ୍ଣ ବେନି ତନୁ ପରି ଦେଖାଯାଉଥିଲେ ମଧ୍ୟ ବାସ୍ତବରେ ସେ ଦୁହେଁ ଏକ । ଶ୍ରୀରାଧା ହେଉଛନ୍ତି ରାସଲୀଳାର ରାସେଶ୍ୱରୀ ।

*"ରାଧାକୃଷ୍ଣ ଭିନ୍ନାଭିନ୍ନ ମଣି ବେଦିକାରେ ନାହିଁ ସେ ଚିହ୍ନ ।*
*ସଜନୀଗୋ, ବେନି ତନୁ ଏକ ବର୍ଣ୍ଣ ।"* *-ପଦ୍ମବନ ରାସ*

ଶ୍ରୀକୃଷ୍ଣ ସର୍ବ ବ୍ୟାପକ । ସେ ରାସ ମଣ୍ଡଳୀରେ ଷୋଳ ସହସ୍ର ଗୋପୀମାନଙ୍କ ସହିତ ମିଳିତ ହୋଇ ସେମାନଙ୍କୁ ଆତ୍ମାସୁଖ ପ୍ରଦାନ କଲେ । ଗୋପୀ ଗୋଟିକେ କୃଷ୍ଣ ଗୋଟିଏ ହୋଇ ସେମାନଙ୍କ ସହିତ ରମଣ କଲେ । କବିଙ୍କ ଭାଷାରେ-

*"ଯେକ ଯେକକୁ କଲେ ରାସ । ଗୋପୀ ହୋଇଲେ ସର୍ବେ ତୋଷ ।*
*ଯାହାର ନାହିଁ ରୂପ ରେଖ । ଗୋପୀଙ୍କି ଦେଲେ ଆତ୍ମା ସୁଖ ।*
*ତୋଷେ ରମିଲେ ପୀତବାସ । ସଜ୍ଜିଲେ ସେ ମାହା ରାହାସ ।"*

*-ରାହାସ ପ୍ରେମ ପଞ୍ଚାମୃତ*

ରାସଲୀଳାରେ ପଦ୍ମବନ କ୍ଷେତ୍ର ନେମାଳକୁ କବି ଉଚ୍ଚ ସ୍ଥାନ ଦେଇଛନ୍ତି । ଏହି ପଦ୍ମବନ ହେଉଛି ନିତ୍ୟ ଗୋଲୋକ । ଏଠାରେ ଥିବା କଦମ୍ବ ମୂଳରେ ନିତ୍ୟରାସ ଲାଗିଛି । କଳ୍ପବଟ ମୂଳରେ ଗୋଲୋକ ରାସ ଲୀଳା ଗୁପ୍ତଭାବରେ ଚାଲିଛି । କବିଙ୍କ ମତରେ-

*"ବେନି ନଦୀ ମଧ୍ୟେ ପଦ୍ମକାନନ । ଗ୍ରାମ ଯେ ନେମାଳ ମଝି ଲାଗେଣ ।*
*ସେ ସ୍ଥାନେ ଅଛଇ ରାସ ମଣ୍ଡୋଳ । ତାହା ମଧ୍ୟେ ମଣି ବେଦୀ ସୁତୃଳ ।*
*ସଖୀଗୋ, ତହିଁ ରାସ ଲାଗିଛି । ଦେଖିଲେ ମନ ନ ଆସେ ମୁରୁଛି ।"*

*-ପଦ୍ମବନ ରାସ*

ଉକ୍ତ ପବିତ୍ର ପଦ୍ମବନରେ କଣ୍ଟ, କପିଳ, ଗୌତମ ଓ ଅତ୍ରି ଆଦି ଋଷିଗଣ ଶ୍ରୀକୃଷ୍ଣଙ୍କ ନାମ ଜପ କରୁଛନ୍ତି । ଏପରି ପବିତ୍ର ସ୍ଥାନରେ ଶୂନ୍ୟବାଣୀ ଶ୍ରବଣ କରି ସେ ଜନ୍ମଲାଭ କରିଥିବା କଥା ଅଚ୍ୟୁତାନନ୍ଦ 'ମହାନିତ୍ୟ ରାହାସ'ଗ୍ରନ୍ଥରେ ଉଲ୍ଲେଖ କରିଛନ୍ତି ।

ତାଙ୍କ ମତରେ କୌଣସି ତୀର୍ଥ ପର୍ଯ୍ୟଟନ କରିବାର ଆବଶ୍ୟକତା ନାହିଁ । ଶରୀର ମଧ୍ୟରେ ସମସ୍ତ ତୀର୍ଥ ଅବସ୍ଥାନ କରୁଛନ୍ତି । କେବଳ ଜ୍ଞାନବଳରେ ସେସବୁକୁ ଚିହ୍ନି ସାଧନା କରିବା ଉଚିତ । ତେଣୁ ସେ କହିଛନ୍ତି-

*''ଚିନି ଚିହ୍ନରି ଏ ତ୍ରିବେଣୀ ଧାର । ସେହିଠାରେ ବସି ତର୍ପଣ କର ।*
*ଅଯୋଧ୍ୟା, ଦ୍ୱାରକା, ଗୋପ ନଗର । ଜ୍ଞାନ ସୁମର ହୋ ଆତ୍ମା ମଧର ।''*

*-ଶୂନ୍ୟରାସ*

ରାସଲୀଳା ସଂପର୍କରେ ଅଚ୍ୟୁତାନନ୍ଦ ଯେଉଁ ନୂତନ ତଥ୍ୟ ପରିବେଷଣ କରିଛନ୍ତି ସେ ସବୁକୁ ସଂକ୍ଷେପରେ ନିମ୍ନୋକ୍ତ ପ୍ରକାରେ ଆଲୋଚନା କରାଯାଇପାରେ ।

(୧) ଅଚ୍ୟୁତାନନ୍ଦ ଶରୀର ମଧ୍ୟରେ ନିତ୍ୟ ରାସଲୀଳା ଅହରହ ଲାଗି ରହିଥିବା କଥା କହିଛନ୍ତି । ଜୀବ-ପରମ ତଥା ଆତ୍ମା-ପରମାତ୍ମାଙ୍କର ମିଳନ ଏହି ରାସଲୀଳା ଦ୍ୱାରା ସମ୍ଭବପର ହୋଇଛି ।

(୨) ପୂର୍ବ ପରମ୍ପରାରେ ରାସଲୀଳା କେବଳ ବୃନ୍ଦାବନରେ ସଂଘଟିତ ହେଉଥିବା ସ୍ଥଳେ ସେ ଏହାକୁ ସର୍ବତ୍ର ସମ୍ଭବ ବୋଲି ପ୍ରକାଶ କରିଛନ୍ତି । ନିଜେ ମଧ ଶିଷ୍ୟ ଓ ପ୍ରଶିଷ୍ୟମାନଙ୍କ ଦ୍ୱାରା ବିଭିନ୍ନ ସ୍ଥାନରେ ଏପରି ରାସଲୀଳା ଅଭିନୀତ କରାଇ ଯଥେଷ୍ଟ ଲୋକପ୍ରିୟତା ଅର୍ଜନ କରିଥିଲେ ।

(୩) ରାସଲୀଳାରେ ରାଧା,କୃଷ୍ଣ, ଗୋପୀ ଓ ବ୍ରଜବାଳକ ଆଦି ଚରିତ୍ରମାନଙ୍କୁ ନିଆଯାଉଥିବା ସ୍ଥଳେ ସେ ଏଥି ସହିତ ଶୂନ୍ୟ ପର୍ଯ୍ୟାୟବାଚୀ ଅରୂପ ବ୍ରହ୍ମର ରାସଲୀଳା କଥା ସଂଯୋଗ କରିଛନ୍ତି ।

(୪) ସେ ଶ୍ରୀକ୍ଷେତ୍ରକୁ ନିତ୍ୟ ବୃନ୍ଦାବନ ରୂପେ ଗ୍ରହଣ କରିଥିଲେ ମଧ୍ୟ ପଦ୍ମବନ ନେମାଳ ରାସଲୀଳାର ଶ୍ରେଷ୍ଠସ୍ଥଳୀ ରୂପେ ତାଙ୍କ ଦ୍ୱାରା ସ୍ୱୀକୃତ ହୋଇଛି ।

(୫) ପାରମ୍ପରିକ ରାସରେ ଥିବା ଲୀଳାକୁ ସେ ତତ୍ତ୍ୱଭିତ୍ତିକ କରିଛନ୍ତି । ସେଥିପାଇଁ ରାସଲୀଳାର କଥାବସ୍ତୁ ତତ୍ତ୍ୱାଭିମୁଖୀ ହୋଇପଡ଼ିଛି ।

(୬) ବାଦ୍ୟ, ସଂଗୀତ ଓ ନୃତ୍ୟର ଅପୂର୍ବ ସମନ୍ୱୟରେ ରାସଲୀଳାର କଥାବସ୍ତୁକୁ ପରିବେଷଣ କରିବା ଥିଲା ତାଙ୍କର ଅନ୍ୟତମ ଲକ୍ଷ୍ୟ । ଏହାଦ୍ୱାରା ଦର୍ଶକ ସହଜ ଭାବରେ ଆଧ୍ୟାତ୍ମିକ ଭାବଧାରା ଦ୍ୱାରା ପ୍ରଭାବିତ ହେଉଥିଲେ ।

ଓଡ଼ିଶାରେ ଅଚ୍ୟୁତାନନ୍ଦ ରାସଲୀଳାର ସ୍ରଷ୍ଟା ରୂପେ ସୁପରିଚିତ ଥିଲେ ମଧ୍ୟ ସେ ଜଗନ୍ନାଥ ଦାସଙ୍କୁ ରାସଲୀଳାର ଗୁରୁ ରୂପେ ସ୍ୱୀକାର କରିଛନ୍ତି । ନିଜର ଶିଷ୍ୟମାନଙ୍କୁ ନେଇ ସେ ରାସଲୀଳା ମଣ୍ଡଳ ଗଠନ କରିଥିଲେ ଓ ବିଭିନ୍ନ ସ୍ଥାନରେ ସେମାନଙ୍କ ଦ୍ୱାରା ରାସଲୀଳା ଅଭିନୀତ ହେଉଥିଲା । ନିଜର ଷୋଳ ସହସ୍ର ଗୋପାଳ ଶିଷ୍ୟମାନଙ୍କୁ ନେଇ ସେ ରାସଲୀଳା କରୁଥିବା କଥା ପ୍ରକାଶ କରିଛନ୍ତି । ତାଙ୍କ ଦ୍ୱାରା ମଞ୍ଚସ୍ଥ ହେଉଥିବା ରାସଲୀଳାର ଗୁରୁତ୍ୱ ଓ ସେଥିରେ ଶିଷ୍ୟମାନଙ୍କ ଭୂମିକା ପ୍ରସଙ୍ଗ ବିଶେଷ ଉଲ୍ଲେଖନୀୟ । କେବଳ ଏତିକି କହିଲେ ଯଥେଷ୍ଟ ହେବ ଯେ ନୃତ୍ୟ, ସଂଗୀତ ଓ ଆଧ୍ୟାତ୍ମିକ ତତ୍ତ୍ୱ ଦୃଷ୍ଟିରୁ ଓଡ଼ିଶାରେ ରାସଲୀଳାର ପ୍ରବକ୍ତା ହେଉଛନ୍ତି ମହାପୁରୁଷ ଅଚ୍ୟୁତାନନ୍ଦ ।

## ଶ୍ରୀଜଗନ୍ନାଥ-ରାମ-କୃଷ୍ଣ

ବହୁ ପ୍ରାଚୀନ କାଳରୁ ଶ୍ରୀଜଗନ୍ନାଥ ଓଡ଼ିଶାର ଇଷ୍ଟଦେବତା ରୂପେ ପୂଜା ପାଇ ଆସୁଛନ୍ତି । ସେ ହେଉଛନ୍ତି ସର୍ବଧର୍ମ ସମନ୍ୱୟର ଦେବତା । ସେଥିପାଇଁ ବହୁ ଭକ୍ତ-ସିଦ୍ଧ-ସାଧକ କବି ଧର୍ମପ୍ରଚାରକ ମାନେ ଯୁଗଯୁଗ ଧରି ତାଙ୍କର ଗୁଣ କୀର୍ତ୍ତନ କଲେ ମଧ୍ୟ ତାହା ଅପୂର୍ଣ୍ଣ ହୋଇରହିଛି । ବାସ୍ତବରେ ସେ ହେଉଛନ୍ତି ଅଲେଖ, ଅବ୍ୟକ୍ତ, ଅଣାକାର, ନିରାକାର । ତାଙ୍କର ମହିମା ବର୍ଣ୍ଣନା କରିବା ଓ ତାଙ୍କର ଗୁଣ କୀର୍ତ୍ତନ କରିବା ସଂପୂର୍ଣ୍ଣ ଅସମ୍ଭବ ବ୍ୟାପାର । ତାଙ୍କ ସଂପର୍କରେ ଅଶେଷ ଶାସ୍ତ୍ର, ପୁରାଣ, କାବ୍ୟ, କବିତା ରଚନା କରାଯାଇଥିଲେ ମଧ୍ୟ ସେ ସବୁ ସମୁଦ୍ରକୁ ଶଙ୍ଖେପରି । ପ୍ରତ୍ୟେକ ଭକ୍ତର ସେ ଆରାଧ୍ୟ ଦେବତା, ଅମୂଲ୍ୟ ନିଧି ତଥା ଚିନ୍ତାମଣି ।

ଓଡ଼ିଶାର ପଞ୍ଚସଖା ନିଜର ସାଧନା କ୍ଷେତ୍ରରେ ଶ୍ରୀଜଗନ୍ନାଥଙ୍କୁ ସର୍ବଶ୍ରେଷ୍ଠ ସ୍ଥାନ ପ୍ରଦାନ କରିଥିଲେ । ସେମାନଙ୍କ ଆଧ୍ୟାତ୍ମିକ ଚିନ୍ତାଧାରାର କେନ୍ଦ୍ରବିନ୍ଦୁ ଥିଲେ ପ୍ରଭୁ ଜଗନ୍ନାଥ । ସେମାନେ ଜଗନ୍ନାଥ, ବଳଭଦ୍ର, ସୁଭଦ୍ରା, ସୁଦର୍ଶନ ଆଦି ଚତୁର୍ଦ୍ଧା ମୂର୍ତ୍ତିଙ୍କ ସଂପର୍କରେ ବହୁ ଗ୍ରନ୍ଥ ରଚନା କରିଯାଇଛନ୍ତି ଓ ପ୍ରତ୍ୟେକ ଗ୍ରନ୍ଥରେ ଚତୁର୍ଦ୍ଧା ମୂର୍ତ୍ତି ତତ୍ତ୍ୱକୁ ଅତି ସୁନ୍ଦର ଭାବରେ ବର୍ଣ୍ଣନା କରିଛନ୍ତି । ପୁଣି ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ସହିତ ରାମ ଓ କୃଷ୍ଣଙ୍କୁ ଏକୀଭୂତ କରି ସେମାନଙ୍କର ଗୁଣ କୀର୍ତ୍ତନ କରିବା ସଙ୍ଗେସଙ୍ଗେ ସେମାନଙ୍କ ଚରିତର ଅବତାରଣା ମଧ୍ୟ କରିଛନ୍ତି । ଜଗନ୍ନାଥ-ରାମ ଓ କୃଷ୍ଣଙ୍କୁ ଅଭିନ୍ନ ରୂପେ ପରିକଳ୍ପନା କରିଥିଲେ ହେଁ ସେମାନଙ୍କ ଦ୍ୱାରା ସର୍ବଦା ଶ୍ରୀଜଗନ୍ନାଥଙ୍କ ଶ୍ରେଷ୍ଠତ୍ୱ ପ୍ରତିପାଦିତ ହୋଇଛି । ପରମ ବୈଷ୍ଣବ ଭକ୍ତ ଭାବରେ ସେମାନେ ନିଜ ନିଜର ଭକ୍ତି ନୈବେଦ୍ୟ ବାଢ଼ିଛନ୍ତି ଶ୍ରୀଜଗନ୍ନାଥଙ୍କ ଶ୍ରୀଚରଣ ତଳେ । ସେ ହେଉଛନ୍ତି ସେମାନଙ୍କର ମୁକ୍ତିଦାତା ଓ ତ୍ରାଣକର୍ତ୍ତା ।

ମହାପୁରୁଷ ଅଚ୍ୟୁତାନନ୍ଦ ସ୍ୱରଚିତ ଗ୍ରନ୍ଥ ସବୁରେ ଶ୍ରୀଜଗନ୍ନାଥଙ୍କ ଚରିତ, ଧର୍ମ, ସଂସ୍କୃତି ଓ ମାହାତ୍ମ୍ୟକୁ ଅତି ଚମତ୍କାର ଭାବରେ ବର୍ଣ୍ଣନା କରିଛନ୍ତି । ହରିବଂଶରେ ନୀଳାଚଳ କ୍ଷେତ୍ରରେ ଶ୍ରୀଜଗନ୍ନାଥଙ୍କର ଆବିର୍ଭାବ ପ୍ରସଙ୍ଗ ବର୍ଣ୍ଣିତ ହୋଇଛି । ଦ୍ୱାପର ଯୁଗ ଶେଷରେ ଶ୍ରୀକୃଷ୍ଣଙ୍କର ମର୍ତ୍ତ୍ୟଲୀଳା ଶେଷ ହେବାରୁ ସେ ଜରାଶବରର ଶରାଘାତରେ ଦେହତ୍ୟାଗ କଲେ । ପାଣ୍ଡବମାନେ ଶ୍ରୀକୃଷ୍ଣଙ୍କ କଳେବରକୁ ସମୁଦ୍ରରେ ଭସାଇ ଦେଇ ଚାଲିଯିବା ପରେ ତାହା ଆସି ବାଙ୍କି ମୁହାଣରେ ଲାଗିଲା । ରାଜା ଇନ୍ଦ୍ରଦ୍ୟୁମ୍ନଙ୍କୁ ସ୍ୱପ୍ନାଦେଶ ହେଲାପରେ ସେ ମନୋରମ ମନ୍ଦିର ନିର୍ମାଣ କରିଥିଲେ । ପୁଣି ରାଜାଙ୍କୁ ସ୍ୱପ୍ନାଦେଶ ହେଲା ଯେ, ସେ ଦାରୁ ବିଗ୍ରହ ରୂପ ଧାରଣ କରି ବାଙ୍କିମୁହାଣରେ ଅଛନ୍ତି । ସେଠାରୁ ତାଙ୍କୁ ଆଣି ମନ୍ଦିରରେ ପ୍ରତିଷ୍ଠା କରନ୍ତୁ । ରାଜା ଇନ୍ଦ୍ରଦ୍ୟୁମ୍ନ ଦାରୁ ମୂର୍ତ୍ତିଙ୍କୁ ଆଣି ଶ୍ରୀମନ୍ଦିରରେ ପ୍ରତିଷ୍ଠାକଲେ ଓ ଉକ୍ତଦାରୁ ମୂର୍ତ୍ତି ସ୍ୱଇଚ୍ଛାରେ ଚତୁର୍ଦ୍ଧା ମୂର୍ତ୍ତି ଧାରଣକଲେ । ହରିବଂଶରେ ଅଛି-

*''ସେ ଦାରୁକୁ ରତ୍ନ ସିଂହାସନେ ସେ ଥୋଇଲେ*
*ଆପଣା ଇଚ୍ଛାରେ ପ୍ରଭୁ ନିର୍ମିତ ହୋଇଲେ ।*
*ଚତୁର୍ଦ୍ଧା ମୂରତି ତହିଁ ହେଲେ ଭଗବାନ ।*
*ବଳଭଦ୍ର ଜଗନ୍ନାଥ ଭଦ୍ରା ସୁଦର୍ଶନ ।''*

*-୭ମ ଖଣ୍ଡ*

ନୀଳାଚଳରେ ବିଜେ କରିଥିବା ଶ୍ରୀଜଗନ୍ନାଥଙ୍କୁ ଅଚ୍ୟୁତାନନ୍ଦ ପୂର୍ଣ୍ଣ ବ୍ରହ୍ମ ଅବତାରୀ ଓ ସ୍ୱୟଂ ପରଂବ୍ରହ୍ମ ବିଷ୍ଣୁ ବୋଲି ଗ୍ରହଣ କରିଛନ୍ତି । ତାଙ୍କ ମତରେ ଯେତେ ସବୁ ଅବତାର ରହିଛି ସେସବୁ ଶ୍ରୀଜଗନ୍ନାଥଙ୍କ ଅଙ୍ଗରୁ ପ୍ରକାଶ ଲାଭ କରି ପୁଣି ସେହିଠାରେ ଲୀନ ହୋଇଯାନ୍ତି । ସେ ନୀଳାଦ୍ରି ନାୟକ ନିର୍ବିକାର ଭାବରେ କେବଳ ଲୀଳା କରିବାପାଇଁ ସେଠାରେ ବିଜେ କରିଛନ୍ତି ।

*''ଅବତାର ଯେତେ ଯେହି ଜଗନ୍ନାଥ ଅଙ୍ଗରୁ କ୍ଷରି ମିଶନ୍ତି*
*ଲୀଳା ନିମନ୍ତେ ସେ ନୀଳାଦ୍ରି ନାୟେକ ନିର୍ବିକାରେ ବସିଛନ୍ତି ।''*

*-ଶୂନ୍ୟସଂହିତା*

ଶ୍ରୀଜଗନ୍ନାଥ ଓ ଶ୍ରୀକୃଷ୍ଣଙ୍କ ମଧ୍ୟରେ ଅଭେଦ ପରିକଳ୍ପନା କରିଛନ୍ତି ଅଚ୍ୟୁତାନନ୍ଦ । ପୁଣି ଏହି ଜଗନ୍ନାଥ ବୁଦ୍ଧରୂପରେ ମହୋଦଧି କୂଳରେ ପ୍ରତିଷ୍ଠା ଲାଭ କରିଛନ୍ତି । କବିଙ୍କ ମତରେ-

*''ଯଦୁବଂଶ ନାଶକରି ହୃଷିକେଶ ତୁହି ପୁଣ ଯିବୁ କାଳେ*
*ବଉଧ ରୂପେଣ ମହୋଦଧି କୂଳେ ଭୋଗ ବିଳସିବୁ ବେଳେ ।''*

*-ଶୂନ୍ୟସଂହିତା*

ଶ୍ରୀଜଗନ୍ନାଥଙ୍କୁ କବି ଶୂନ୍ୟପୁରୁଷ, ନିରାକାର ଓ କୋଟିବ୍ରହ୍ମାଣ୍ଡ ଲୀଳାର କାରଣରୂପେ ଗ୍ରହଣ କରିଛନ୍ତି । ଶରୀର ମଧ୍ୟସ୍ଥ ତ୍ରିକୂଟରେ ତାଙ୍କର ଅବସ୍ଥିତି । ଜୀବଭିତରେ ସେ ପରମ ଭାବରେ ଲୀଳା କରୁଛନ୍ତି । ତାଙ୍କୁ ବାଦଦେଇ ସଂସାରର କୌଣସି କଥା ପରିକଳ୍ପନା କରିବା ସମ୍ଭବପର ନୁହେଁ । ଭକ୍ତମାନଙ୍କୁ ତାରିବା ପାଇଁ ସେ ନୀଳକନ୍ଦରରେ ବିଜେ କରିଛନ୍ତି । କବିଙ୍କ ମତରେ-

*"ନୀଳକନ୍ଦରରେ ବିଜେ କରିଅଛ ବଉଦ୍ଧ ରୂପ ଧରିଣ*
*ଜଗତ ନିମନ୍ତେ ରୂପ ଧରିଅଛ ସବୁ ତୋହରି ଜିଆଣ ।"*

*-ଅଚ୍ୟୁତାନନ୍ଦ ରଚନାବଳୀ- କବିତା ଖଣ୍ଡ*

ଚତୁର୍ଦ୍ଧାମୂର୍ତ୍ତି ତତ୍ତ୍ୱ କବି ଯେପରି ଭାବରେ ବର୍ଣ୍ଣନା କରିଛନ୍ତି, ସେଥିରୁ ଜଗନ୍ନାଥଙ୍କ ତତ୍ତ୍ୱ ସଂପର୍କରେ ତାଙ୍କର ଗଭୀର ଜ୍ଞାନ ଥିବା ଜଣାଯାଏ । ସ୍ୱରୂପ, ତତ୍ତ୍ୱନାମ, ଭାବନାମ, ବୀଜନାମ, ବୀଜଅକ୍ଷର, ମନ୍ତ୍ର, ମାତ୍ରା, ଇନ୍ଦ୍ରିୟ, ବର୍ଣ୍ଣ ଆଦି କ୍ଷେତ୍ରରେ ଚତୁର୍ଦ୍ଧା ମୂର୍ତ୍ତି ତତ୍ତ୍ୱକୁ ସେ ଅତି ବିଶଦ ଭାବରେ ବିଭିନ୍ନ ଗ୍ରନ୍ଥରେ ବର୍ଣ୍ଣନା କରିଛନ୍ତି । ଏହି ଚତୁର୍ଦ୍ଧାମୂର୍ତ୍ତି ଭିନ୍ନ ରୂପ ଧାରଣ କରିଥିଲେ ହେଁ ବାସ୍ତବରେ ସେମାନେ ହେଉଛନ୍ତି ଏକ ଆତ୍ମା । ଅଚ୍ୟୁତଙ୍କ ଭାଷାରେ-

*"ଜଗନ୍ନାଥ ବଳଭଦ୍ର ସୋଭଦ୍ରା ଯେ ସୁଦର୍ଶନ ରୂପ ଚାରି*
*ଚତୁର୍ଧା ମୂରତି ଏକ ଆତ୍ମା ଭିନ୍ନାଭିନ୍ନ ରୂପଛନ୍ତି ଧରି ।"* *-ଶୂନ୍ୟସଂହିତା*

ଚତୁର୍ଦ୍ଧାମୂର୍ତ୍ତିର ପରସ୍ପର ସଂପର୍କ କିପରି ଭାବରେ ରହିଛି ତାହା ଏଠାରେ ପ୍ରଦାନ କରାଗଲା ।

| ବିଷୟ | ଜଗନ୍ନାଥ | ବଳଭଦ୍ର | ସୁଭଦ୍ରା | ସୁଦର୍ଶନ |
|---|---|---|---|---|
| ସ୍ୱରୂପ | ଭଗବାନ | ଅନନ୍ତ | ରାଧା | ବୈଭବୀ |
| ନାମ | କୃଷ୍ଣ | ହରେ | ରାମ | ଶ୍ୟାମ |
| ତତ୍ତ୍ୱନାମ | କାମ | ସାଧୁ | ମଧୁ | ବ୍ରହ୍ମ |
| ଭାବନାମ | ଦୀନ | ନନ୍ଦ | କନ୍ଦ | ଧର୍ମ |
| ବୀଜନାମ | କାମବୀଜ | ପରାବୀଜ | ରମାବୀଜ | ଧାମବୀଜ |
| ବୀଜଅକ୍ଷର | କ୍ଳୀଂ | ହ୍ଳୀଂ | ଶ୍ଳୀଂ | ଧ୍ଳୀଂ |
| ମନ୍ତ୍ର | ଓଁ ମହୟଂ | ଓଁ ସହାୟ | ଓଁ ଶ୍ରୀଂପ୍ରୀଂ | ଓଁ ଆଂଗ୍ଲାଂଆଙ୍ଗ |
| ମାତ୍ରା | କକାର | ଇକାର | ଲକାର | ଅକାର |
| ଇନ୍ଦ୍ରିୟ | ନୟନ | ମୁଖ | ନାସା | କର୍ଣ୍ଣ |
| ବର୍ଣ୍ଣ | କଳା | ଧଳା | ହରିଦ୍ରା | ଲୋହିତ |

ଅଚ୍ୟୁତାନନ୍ଦ ମନ ସହିତ ଚତୁର୍ଦ୍ଧାମୂର୍ତ୍ତିକୁ ଯୋଡ଼ି ଦେଇଛନ୍ତି । ତାଙ୍କ ମତରେ ଏହି ମନ ହେଉଛି ଚତୁର୍ଦ୍ଧା ମୂର୍ତ୍ତି । ତେଣୁ ବାହାରର କୌଣସି ତୀର୍ଥ, ପର୍ଯ୍ୟଟନ, ଦେବତା ଦର୍ଶନ, ମନ୍ଦିର ନିର୍ମାଣ, କୂପ-ତଡ଼ାଗ ଖନନ ଆଦି କାର୍ଯ୍ୟ କରିବା ଉଚିତ୍ ନୁହେଁ । ତେଣୁ ସେ କହିଛନ୍ତି-

*''ଏହି ମନସିନା ଚତୁର୍ଦ୍ଧା ମୂରତିରେ ମୂକ୍ଷମତି ।*

x x x x x

*ନଖୋଳ ତଡ଼ାଗ କୂପ । ଦେଉଳ ତୋଟା ନରୋପ*
*ସ୍ଥାପନା ଦିଅଁ ନ ସ୍ଥାପ । ନ ଯା ବୃନ୍ଦାବନ ଗୋପ ।*
*ନ ଯା ତୁହି ଗୟା ଗୋମତୀ ହେ ।''*

*-ଭଜନ (ପଞ୍ଚସଖା ଭଜନ)*

ଶ୍ରୀଜଗନ୍ନାଥଙ୍କ ମନ୍ଦିରର ସେବା-ପୂଜା-ନୀତି ସଂପର୍କରେ ସେ ଭଲ ଭାବରେ ଅବଗତ ଥିଲେ । ସେଥିପାଇଁ ମନ୍ଦିରର ନିଯୋଗ, ପୂଜା, ପଦ୍ଧତି, ପାଳିତ ପର୍ବପର୍ବାଣୀ, ଠାକୁରଙ୍କ ବିଭିନ୍ନ ବେଶ ଆଦି ପ୍ରସଙ୍ଗ ତାଙ୍କ ଲେଖନୀରେ ରୂପାୟିତ ହୋଇଛି । ଶ୍ରୀମନ୍ଦିରରେ ମହାପ୍ରସାଦ ପାଇବାରେ ସମସ୍ତଙ୍କର ସମାନ ଅଧିକାର ରହିଛି । ଏଥିରେ କେହି ସାନ ବଡ଼ ନୁହେଁ । ଚଣ୍ଡାଳ, ବ୍ରାହ୍ମଣ, ଗୁରୁ ଓ ଶିଷ୍ୟ ମଧ୍ୟରେ କୌଣସି ଭେଦାଭେଦ ନାହିଁ । ସେଥିପାଇଁ ସେ କହିଛନ୍ତି-

*''ଶେଷଭୋଗ ମୋର ନିର୍ମାଲ୍ୟ ହୋଇବ କୈବଲ୍ୟ ପସରା ବିକା*
*କିଣାବିକା ଲାଗିଥିବ ନିରବଧି ନ ଥିବ ତ କାହିଁ ଶଙ୍କା ।*
*ଚାଣ୍ଡାଳ ବ୍ରାହ୍ମଣ ଗୁରୁଶିଷ୍ୟ ପୁଣ ବାରଣ ନଥିବ ତହିଁ*
*ବିକାର ନଥିବ ଯେକାକାର ହେବ ନିରାକାର ଆଜ୍ଞା ଏହି ।''*

*-ଶୂନ୍ୟସଂହିତା*

ଶ୍ରୀକ୍ଷେତ୍ରର ମାହାତ୍ମ୍ୟ ଓ ଲୀଳା କବିଙ୍କ ଭାଷାରେ ଅତି ଚମତ୍କାର ଭାବରେ ବର୍ଣ୍ଣିତ ହୋଇଛି ତାଙ୍କର ବିଭିନ୍ନ ରଚନାରେ ସର୍ବୋପରି ଏହି ପବିତ୍ର ପୁରୁଷୋତ୍ତମ କ୍ଷେତ୍ରରେ ବିଜେ କରିଥିବା ଲୀଳାମୟ ଶ୍ରୀଜଗନ୍ନାଥଙ୍କୁ କବି ଭକ୍ତି ନିବେଦନ କରି ତାଙ୍କର ସ୍ତୁତି ଗାନ କରିଛନ୍ତି ।

*"ଜୟ ଜୟ ଜଗନ୍ନାଥ ପରମ ପୁରୁଷ*
*ଜୟଜୟ ଜଗନ୍ନାଥ କମଳା ବିଳାସ ।*
*ଜୟଜୟ ଜଗନ୍ନାଥ ଚତୁର୍ଦ୍ଧାମୂରତି*
*ଅଚ୍ୟୁତାନନ୍ଦ ଦାସତୋ ଦାସ ଦିନରାତି ।"*

*-ହରିବଂଶ/ ପ୍ରଥମ ଖଣ୍ଡ*

ରାମ ଥିଲେ ଅଚ୍ୟୁତାନନ୍ଦଙ୍କ ପାଇଁ ମର୍ଯ୍ୟାଦା ପୁରୁଷୋତ୍ତମ । ରାମ ନାମର ମାହାତ୍ମ୍ୟ, ତତ୍ତ୍ୱ ଓ ରାମତାରକ ମନ୍ତ୍ର ପ୍ରସଙ୍ଗ ତାଙ୍କ ରଚନାରେ ସ୍ଥାନ ପାଇଛି । ତାଙ୍କ ରଚିତ ଶ୍ରୀରାମଚରିତ ଓ ରାମରସ ବୋଲିରେ ସେ ରାମାୟଣର ସଂକ୍ଷିପ୍ତ କଥାବସ୍ତୁ ଉପସ୍ଥାପନ କରିବାବେଳେ ରାମଚନ୍ଦ୍ରଙ୍କ ମହତ୍ତ୍ୱ ପ୍ରତିପାଦନ କରିଛନ୍ତି । ରାମଚନ୍ଦ୍ର ସ୍ୱୟଂ ବିଷ୍ଣୁ । ସେ ଅସୁରମାନଙ୍କୁ ନିଧନ କରି ମୁନିମାନଙ୍କ ଯାଗ ଯଜ୍ଞ ରକ୍ଷା କରିବା ପାଇଁ ମାନବ ଶରୀର ଧାରଣ କରି ଧରାପୃଷ୍ଠରେ ଅବତାର ଗ୍ରହଣ କରିଥିଲେ । ତାଙ୍କର ଜନ୍ମ, ବିବାହ, ପିତୃସତ୍ୟ ପାଳନ, ବନଗମନ, ଅହଲ୍ୟା ଉଦ୍ଧାର, ରାବଣ ନିଧନ ଆଦି ପ୍ରସଙ୍ଗ କବି ଶ୍ରୀରାମ ଚରିତ ଗ୍ରନ୍ଥରେ ବର୍ଣ୍ଣନା କରିଛନ୍ତି ।

ରାମନାମର ମହିମା ବର୍ଣ୍ଣନା କରିବାକୁ ଯାଇ କବି ଲେଖିଛନ୍ତି-

*"ରାମନାମ ଭଜି ସେ ରତ୍ନାକର । ଦିବ୍ୟଜ୍ଞାନ ପାଇ ହେଲା ଉଦ୍ଧାର ।*
*ଦସ୍ୟୁ ହେଲା ଋଷି ସେ ବାଲ୍ମିକ । ରାମନାମକୁ କରିଣ ସେ ଜପ ।*
*ରାମନାମକୁ ଭୁଷଣ୍ଡ ଜପିଲା । କାକ ଜନ୍ମୁ ତରି ଅମର ହେଲା ।"*

*-ରାମରସ ବୋଲି*

'ରାମ' ଏହି ଦୁଇଟି ଅକ୍ଷର ମଧ୍ୟରୁ ସେ 'ରା'କୁ ଜୀବ ଓ 'ମ'କୁ ପରମ ଭାବରେ ଗ୍ରହଣ କରିଛନ୍ତି । 'ରା'ଜୀବ ରୂପୀ ପ୍ରକୃତି ଓ 'ମା' ପରମ ରୂପକ ପୁରୁଷ । ପୁଣି ଏହି 'ରା' ପ୍ରକୃତି ସ୍ୱରୂପିଣୀ ହୋଇଥିବାରୁ ସେ ରାଧା ଏବଂ 'ମ' ପୁରୁଷ ହୋଇଥିବାରୁ କୃଷ୍ଣ ମହାମନ୍ତ୍ରରେ ସର୍ବମୋଟ ୪ଥର 'ରାମ' ଶବ୍ଦ ରହିଛି । ଅଚ୍ୟୁତାନନ୍ଦ ଏଥିପାଇଁ ୪ଟି ଅର୍ଥ ପ୍ରଦାନ କରିଛନ୍ତି । ତାହା ହେଲା- ସୁଭଦ୍ରା, ରମା, କନ୍ଦ, ମଧୁ (ଶୂନ୍ୟ ସଂହିତା- ୧ମ ଅଧ୍ୟାୟ) । କିନ୍ତୁ ଦିବାକର ଦାସ 'ଜଗନ୍ନାଥ ଚରିତାମୃତ'ରେ 'ରାମ'ଶବ୍ଦ ପାଇଁ ଗୁରୁ, ମାତୃ, ସୁଭଦ୍ରା, ସୁଦର୍ଶନ, ପରମ ପିତା, ସିଦ୍ଧଭକ୍ତି ଦାତା, ରାଧା, ପରମ ସୁଖମୟ, ମହାନିତ୍ୟ, ପ୍ରାଣାତ୍ମା, ରାହାସ, ହାରିଦ୍ର ବର୍ଣ୍ଣ ଆଦି ଅର୍ଥକୁ ଗ୍ରହଣ କରିଛନ୍ତି । ଅଚ୍ୟୁତାନନ୍ଦ ରାମତାରକ ମନ୍ତ୍ର ସଂପର୍କରେ 'ଗୁରୁଭକ୍ତି ଗୀତା'ରେ ବିଶଦ ଭାବରେ ବର୍ଣ୍ଣନା କରିଛନ୍ତି । ରାମ ହେଉଛନ୍ତି ଅଗତିର ଗତି ଓ ତତ୍ତ୍ୱ ମଧ୍ୟରେ ସାର । ତାଙ୍କୁ ସର୍ବଦା ସ୍ମରଣ କରିବା ପାଇଁ ସେ ଉପଦେଶ ପ୍ରଦାନ କରିଛନ୍ତି ।

**''ରାମ ଅଗତିକି ଗତି ରାମ ତତ୍ତ୍ୱ ସାର**
**ନିରଞ୍ଜନ ତାରକ ଯେ ରାମଙ୍କୁ ସୁମର ।''**

**-ଗୁରୁଭକ୍ତି ଗୀତା- ୧ମ ଖଣ୍ଡ/୨୦ଛାନ୍ଦ**

ଅଚ୍ୟୁତାନନ୍ଦ ବୈଷ୍ଣବ ଧର୍ମାବଲମ୍ବୀ ଥିବାରୁ ସର୍ବଦା ଶ୍ରୀକୃଷ୍ଣଙ୍କ ଗୁଣ କୀର୍ତ୍ତନ କରିବା ଥିଲା ତାଙ୍କର ମୁଖ୍ୟ ଉଦ୍ଦେଶ୍ୟ । ଶ୍ରୀକୃଷ୍ଣଙ୍କ ଚରିତ ବର୍ଣ୍ଣନା କରିବାରେ ସେ ପରମ ସୁଖ ଲାଭ କରୁଥିଲେ । ସେଥିପାଇଁ ସେ ଯେତେ ଗ୍ରନ୍ଥ ରଚନା କରିଛନ୍ତି ସେଥିମଧ୍ୟରୁ ଅଧିକାଂଶ ରାଧାକୃଷ୍ଣ ଚରିତ ବିଷୟକ ।

ରାମଙ୍କ ପରି କୃଷ୍ଣଙ୍କୁ ସେ ଭଗବାନଙ୍କର ଅବତାର ଭାବରେ ଗ୍ରହଣ କରିଛନ୍ତି । ସଂସାରରେ ସାଧୁ ସନ୍ଥମାନଙ୍କୁ ସୁରକ୍ଷା ପ୍ରଦାନ କରି ଦୁଷ୍ଟ ଦାନବମାନଙ୍କୁ ସଂହାର କରିବା ପାଇଁ ଭଗବାନ ଶ୍ରୀକୃଷ୍ଣ ରୂପରେ ଅବତାର ଗ୍ରହଣ କରିଥିଲେ । ସେହି ଶ୍ରୀକୃଷ୍ଣଙ୍କ ପୂର୍ଣ୍ଣାଙ୍ଗ ଚରିତକୁ ଅଚ୍ୟୁତାନନ୍ଦ 'ହରିବଂଶ' ଗ୍ରନ୍ଥରେ ବିଶଦ ଭାବରେ ବର୍ଣ୍ଣନା କରିଛନ୍ତି । ଶ୍ରୀକୃଷ୍ଣଙ୍କ ନାନାପ୍ରକାର ଲୌକିକ ଓ ଅଲୌକିକ ଲୀଳା ପ୍ରକାଶ କରିବାରେ ତାଙ୍କର ଲେଖନୀ ତତ୍ପର ହୋଇଉଠିଛି । ପୁରାଣ, ଗୀତା, ସଂହିତା, ପଟଳ, ମାଳିକା, ଚଉତିଶା, କୋଇଲି, ବୋଲି, ରାହାସ, ଟୀକା, ଭଜନ-ଜଣାଣ ଓ ଅସଂଖ୍ୟ କ୍ଷୁଦ୍ର ରଚନା କେବଳ ରାଧାକୃଷ୍ଣ ତତ୍ତ୍ୱକୁ ନେଇ ସୁସମୃଦ୍ଧ ହୋଇପାରିଛି ।

ଶ୍ରୀକୃଷ୍ଣ ହେଉଛନ୍ତି ପରଂବ୍ରହ୍ମ । ତାଙ୍କ ମତରେ ସ୍ୱୟଂବିଷ୍ଣୁ ହିଁ କୃଷ୍ଣ । ବିଷ୍ଣୁ ବୈକୁଣ୍ଠପୁରରୁ ଆସି ଗୋପପୁରରେ ଅବତାର ଗ୍ରହଣ କରିଛନ୍ତି ।

***''ସେ ବିଷ୍ଣୁ କଳାରେ କୃଷ୍ଣ ମର୍ତ୍ତ୍ୟରେ ଜନମ***
***ଅଷ୍ଟକଳା ଧରି କଲେ ଲୀଳା ଗୋପଧାମ ।''***

***-ଚିଉବୋଧ-୧ମ ଅଧ୍ୟାୟ***

ଅଚ୍ୟୁତାନନ୍ଦ କୃଷ୍ଣଙ୍କୁ ବୌଦ୍ଧରୂପରେ ପରିକଳ୍ପନା କରି ସେ ଜଗନ୍ନାଥଙ୍କ ଠାରୁ ଭିନ୍ନାଭିନ୍ନ ନୁହଁନ୍ତି ବୋଲି ପ୍ରକାଶ କରିଛନ୍ତି । ଯିଏ ଜଗନ୍ନାଥ ସେ ହେଉଛନ୍ତି କୃଷ୍ଣ । ତାଙ୍କୁ ଜଗତର ସୃଷ୍ଟିକର୍ତ୍ତା, ପାଳନ କର୍ତ୍ତା ଓ ସଂହାର କର୍ତ୍ତା ଭାବରେ ସେ ଗ୍ରହଣ କରିଛନ୍ତି । ତାଙ୍କ ମତରେ-

***''ଆପେ ସଂହାରି ପାଳଇ ଆପେ କରି ଜାତ***
***ଏ ଖେଳ ଲୀଳା ଅଟଇ ଯାହାର ଜଗତ ।''***

***-ହରିବଂଶ -୨ୟ ଖଣ୍ଡ***

ଶରୀର ତତ୍ତ୍ୱରେ ଶ୍ରୀକୃଷ୍ଣଙ୍କୁ ଗୁରୁତ୍ୱପୂର୍ଣ୍ଣ ସ୍ଥାନ ଦିଆଯାଇଛି । 'କୃ'ଅକ୍ଷର ଜିହ୍ୱା ଓ 'ଷ' ଅକ୍ଷର ଚକ୍ଷୁ ମଧ୍ୟରେ ବାସ କରନ୍ତି ବୋଲି 'ଶୂନ୍ୟସଂହିତା'ରେ କୁହାଯାଇଛି । ପୁଣି 'କୃ' ଅକ୍ଷରର ସ୍ଥିତି କପାଳରେ ଓ 'ଷ' ଅକ୍ଷରର ଭ୍ରୂ ମଧ୍ୟରେ ବୋଲି ଶ୍ରୀଗୁରୁଭକ୍ତି ଗୀତାରେ ଉଲ୍ଲେଖ ଅଛି ।

*"କୃ ଯେ ଅକ୍ଷର ପୁଣ ବସିବ କପାଳ*

*x x x x x*

*ଷ ଯେ ଅକ୍ଷର ପୁଣ ବସିବ ଭ୍ରୂ ମଧେ ।"*

*-୧ମ ଖଣ୍ଡ/ ୨୭ ଛାନ୍ଦ*

ମହାମନ୍ତ୍ର, ଅଷ୍ଟାଦଶାକ୍ଷର ଗୋପାଳ ମନ୍ତ୍ରରେ ଥିବା 'କୃଷ୍ଣ'ନାମର ତତ୍ତ୍ୱ ନିରୂପଣ କରିଛନ୍ତି ସେ । ଶରୀର ମଧ୍ୟରେ ଏହାର ସ୍ଥିତି ସ୍ଥିର କରିବା ସଙ୍ଗେସଙ୍ଗେ ଅକ୍ଷରର ଅର୍ଥତତ୍ତ୍ୱ ମଧ୍ୟ ପ୍ରଦାନ କରାଯାଇଛି । 'କୃଷ୍ଣ'ନାମକୁ ମନ୍ତ୍ର ଓ ଯନ୍ତ୍ର ତତ୍ତ୍ୱ ଦୃଷ୍ଟିରୁ ବିଶଦ ଭାବରେ ବର୍ଣ୍ଣନା କରିଛନ୍ତି ଅଚ୍ୟୁତାନନ୍ଦ ।

ଅଚ୍ୟୁତାନନ୍ଦ ଥିଲେ ଶ୍ରୀକୃଷ୍ଣଙ୍କର ପରମ ଭକ୍ତ । ତେଣୁ ସେ ନିଜର ଶିଷ୍ୟ ପ୍ରଶିଷ୍ୟମାନଙ୍କ ଦ୍ୱାରା ରାସଲୀଳା ପରିବେଷଣ କରି ଲୋକଙ୍କ ମନରେ ଭକ୍ତିଭାବ ଜାଗ୍ରତ କରିଥିଲେ । ସଂକୀର୍ତ୍ତନ ମାଧ୍ୟମରେ କୃଷ୍ଣଭକ୍ତିରସ ପରିବେଷଣ କରିବା ଥିଲା ତାଙ୍କର ଅନ୍ୟତମ ଉଦ୍ଦେଶ୍ୟ । ସର୍ବୋପରି ସେ କୃଷ୍ଣାନୁଗତ-ପ୍ରାଣ ହୋଇ ସର୍ବଦା ପ୍ରଭୁଙ୍କୁ ସ୍ମରଣ କରିବା ପାଇଁ ଉପଦେଶ ପ୍ରଦାନ କରିଛନ୍ତି । ସେହି ପ୍ରଭୁ କୃଷ୍ଣଙ୍କ ନାମ ସ୍ମରଣ ମାତ୍ରେ ସମସ୍ତ ପାପ କ୍ଷୟ ହୁଏ । ତେଣୁ ସେ ଶ୍ରୀକୃଷ୍ଣଙ୍କ ପାଦପଦ୍ମକୁ ଆଶ୍ରୟ କରି କହିଛନ୍ତି-

*"କୃଷ୍ଣ କୃଷ୍ଣ ସୁମର ହେ ପାପ ହେବ ନାଶ*
*ପାମର ଅଚ୍ୟୁତ ରଙ୍ଗାଚରଣକୁ ଆଶ ।*
*କରୁଣା କରିବ ନାଥ ଏ ଭବ ସାଗରେ*
*ଶ୍ରୀକୃଷ୍ଣ କରୁଣା କଲେ ଭବସିନ୍ଧୁ ତରେ ।"*

*-ଶ୍ରୀଗୁରୁଭକ୍ତି ଗୀତା- ୧/୧୮ ଛାନ୍ଦ*



# ବ୍ୟକ୍ତିତ୍ୱ ଓ ଜୀବନ ଦୃଷ୍ଟି

ଭଗବାନଙ୍କର ଜଣେ ପରମ ଭକ୍ତ, ସିଦ୍ଧସାଧକ, କବି ତଥା ରାସଲୀଳାର ସ୍ରଷ୍ଟା ଅଚ୍ୟୁତାନନ୍ଦ ଓଡ଼ିଶାରେ ବେଶ ପ୍ରସିଦ୍ଧି ଲାଭ କରିଥିଲେ । ବିଶେଷତଃ ଆଗତ ଭବିଷ୍ୟ ମାଳିକାର ପ୍ରବକ୍ତା ଭାବରେ ତାଙ୍କର ଲୋକପ୍ରିୟତା ବୋଧହୁଏ ସର୍ବାପେକ୍ଷା ଅଧିକ । ଦୀର୍ଘ ପାଞ୍ଚଶହ ବର୍ଷଧରି ଓଡ଼ିଶାର ଧର୍ମ, ଭାଷା, ସାହିତ୍ୟ, ସମାଜ ଓ ସଂସ୍କୃତିକୁ ତାଙ୍କର କୃତି ସମୂହ ପ୍ରଭାବିତ କରିଆସିଛି । ଓଡ଼ିଆ ଭାଷାର ଭିତ୍ତି ପ୍ରସ୍ତର ସ୍ଥାପନ କରିବାରେ ତାଙ୍କର ଅବଦାନ ଅବିସ୍ମରଣୀୟ । ସେ ନିଜର ସାଧନା ବଳରେ ଚରମ ସୋପାନକୁ ଉନ୍ନୀତ ହୋଇ ଭଗବାନଙ୍କର ସାନ୍ନିଧ୍ୟ ମଧ୍ୟ ଲାଭ କରିପାରିଥିଲେ । ବିପଦବେଳେ ସ୍ୱୟଂ ଜଗନ୍ନାଥ ମହାପ୍ରଭୁ ତାଙ୍କୁ ସାହାଭରସା ହେଉଥିଲେ । ଏପରିକି ତାଙ୍କୁ 'ଶୂନ୍ୟଭଜନ' କଥା କହିବାକୁ ନିର୍ଦ୍ଦେଶ ମିଳିଥିଲା ଜଗନ୍ନାଥଙ୍କଠାରୁ । ପୁଣି ଶ୍ରୀକ୍ଷେତ୍ର ଛାଡ଼ି ପଦ୍ମବନରେ ଯାଇ ସାଧନା କରିବା ପାଇଁ ଜଗନ୍ନାଥଙ୍କଠାରୁ ତାଙ୍କୁ ଆଦେଶ ମିଳିଥିଲା । ତାଙ୍କର ଦୃଢ଼ ଭକ୍ତିଭାବ ଯୋଗୁଁ ସ୍ୱୟଂ ଜଗନ୍ନାଥ ତାଙ୍କ ମା'ଙ୍କୁ ଦର୍ଶନ ଦେଇଥିଲେ । ତାଙ୍କ ଜୀବନର ଅନେକ ଘଟଣାରୁ ସ୍ପଷ୍ଟ ପ୍ରତୀୟମାନ ହୁଏଯେ ତାଙ୍କର ମହାପ୍ରଭୁ ଜଗନ୍ନାଥଙ୍କ ସହିତ ପ୍ରତ୍ୟକ୍ଷ ସଂପର୍କ ଥିଲା ।

ସନ୍ଥ ଓ ମହାତ୍ମାମାନେ ମହାନ ଆଦର୍ଶ ପ୍ରତିଷ୍ଠା କରିବା ଉଦ୍ଦେଶ୍ୟରେ ଏ ସଂସାରକୁ ଆସିଥାନ୍ତି । ସେମାନଙ୍କର ଚରମ ଲକ୍ଷ୍ୟ ହେଉଛି ଆତ୍ମା ସହିତ ପରମାତ୍ମାର ମିଳନ-ଜୀବ ସହିତ ପରମର ମିଳନ । ସେତକ ହୋଇପାରିଲେ ଜୀବ ମୁକ୍ତିପାଏ ବା ନିର୍ବାଣ ଲାଭ କରେ । ମଣିଷ ଭ୍ରମରେ ପଡ଼ି ନିଜ ଭିତରେ ଥିବା ଦେବତାଙ୍କୁ ଚିହ୍ନିପାରେ ନାହିଁ ଅଥଚ ନାନାତୀର୍ଥ ପର୍ଯ୍ୟଟନରେ ଅଯଥା ସମୟ ଅପଚୟ କରେ । କିନ୍ତୁ ଏହି ପିଣ୍ଡ ଭିତରେ ବ୍ରହ୍ମାଣ୍ଡର ପରିକଳ୍ପନା କରାଯାଇଛି ଓ ତାକୁ ପରଚେ କରାଇଥାନ୍ତି ସନ୍ଥ ଓ ମହାତ୍ମାମାନେ । ମହାତ୍ମାଙ୍କ ଲକ୍ଷଣ ସଂପର୍କରେ ଅଚ୍ୟୁତାନନ୍ଦ କୁହନ୍ତି :

*''ଯେଜନ ଅନ୍ନବସ୍ତ୍ର ଦେଇ । ମହାତ୍ମା ପୁରୁଷଟି ସେହି ।*
*ବୃକ୍ଷ ଲଗାଇ ଛତ୍ରଦେଇ । ମହାତ୍ମା ପୁରୁଷଟି ସେହି ।*
*ମୌଚ୍ଛବ କରି ଅନ୍ନ ଦିଏ । ମହାତ୍ମା ଲକ୍ଷଣ ସେ ହୁଏ ।*
*ଜୀବରେ ହିଂସା ଯାର ନାହିଁ । ମହାମା ଲକ୍ଷଣ ଅଛଇ ।*
*ମିଥ୍ୟା ବଚନ ଯେ ନ କହେ । ମହାତ୍ମା ଲକ୍ଷଣ ତା ଦେହେ ।''*

*(ଗୁରୁଭକ୍ତିଗୀତା- ୩ଯ/୧୮ ପଟଳ)*

ସଂସାରର ମାୟାରେ ପଡ଼ି ମଣିଷ ଘାଣ୍ଟି ଚକଟି ହେଉଛି । ଧୂଳିମାଟିର ଧରଣୀରେ ଭୂମିଷ୍ଠ ହେଲାପରେ ସେ ଭୁଲି ଯାଉଛି କାହିଁକି ଏଠାକୁ ଆସିଛି ବୋଲି । ତାକୁ କିଏ ଏଠାକୁ କେଉଁ ଉଦ୍ଦେଶ୍ୟରେ ପଠାଇଛି ? ତା'ର ''କୁଆଁ ବୋଲନ୍ତେଣ ସବୁ ଗଲା ପାଶୋର ।''

କ୍ଷଣ ଭଙ୍ଗୁର ଜୀବନର ଅଳୀକତାକୁ ଭୁଲି ଯାଇ ସେ ମିଛ ମାୟା ମୋହରେ ପଡ଼ି କଳବଲ ହେଉଛି । ଅଚ୍ୟୁତାନନ୍ଦଙ୍କ ଭାଷାରେ :

*''ଚିର ଯେ ନୁହଇ ଧନ ଆବର ଜୀବନ*
*ଚିର ଯେ ନୁହଇ ପୁଣ ପୁତ୍ର ବନ୍ଧୁଜନ ।''*

*-ଗୁ.ଭ.ଗୀ.- ୩ଯ ଖଣ୍ଡ/ ୯ମ ପଟଳ*

ଏଇ ମଣିଷ ଭିତେର ଅଛି ଦେବ ପ୍ରବର ଓ ରାକ୍ଷସ ପ୍ରବୃତ୍ତି । ନିଜ ଭିତରୁ ରାକ୍ଷସ ପ୍ରବୃତ୍ତିକୁ ପରିହାର କଲେ ମଣିଷ ହେବ ମଣିଷ ପରି ମଣିଷ । ଯେତେଦିନ ପର୍ଯ୍ୟନ୍ତ ମଣିଷ ଭିତରେ ରାକ୍ଷସ ପ୍ରବୃତ୍ତି ଆସ୍ଥା ଜମାଇ ରହିଥିବ ସେତେଦିନ ପର୍ଯ୍ୟନ୍ତ ତାର ଜୀବନ କଳୁଷିତ ଓ ସେ ନର୍କକୁଣ୍ଡରେ ପଡ଼ି ରହିଥିବ । ସେଥିପାଇଁ ମଣିଷ ଭିତରୁ ରାକ୍ଷସ ପ୍ରବୃତ୍ତିକୁ ଦୂରେଇ ଦେବା ପାଇଁ ଯୁଗେଯୁଗେ ସନ୍ଥ ଓ ମହାତ୍ମାମାନେ ଜନ୍ମଗ୍ରହଣ କରିଥାନ୍ତି । ସେମାନଙ୍କର ଚରମ ଲକ୍ଷ୍ୟ ଥାଏ ମଣିଷ ଭିତରୁ ରାକ୍ଷସ ପ୍ରବୃତ୍ତିକୁ ଦୂରେଇ ଦେଇ ତା ଭିତରେ ଦେବପ୍ରବୃତ୍ତି ପ୍ରତିଷ୍ଠା କରିବା । ତା'ହେଲେ ଏକ ସୁସ୍ଥ ଓ ଆଦର୍ଶ ସମାଜ ଗଠନ ହୋଇପାରିବ । ତେଣୁ ଭେଲକୁ ଭଲରେ ବା 'କୁ'କୁ 'ସୁ'ରେ ପରିଣତ କରିବା ହେଉଛି ସେମାନଙ୍କର ମୁଖ୍ୟ ଉଦ୍ଦେଶ୍ୟ ।

ମହାତ୍ମା ଅଚ୍ୟୁତାନନ୍ଦ ଏପରି ଆଦର୍ଶ ପ୍ରତିଷ୍ଠା ପାଇଁ ଜନ୍ମଗ୍ରହଣ କରିଥିଲେ । ମଣିଷ ନିକଟରେ କେତେକ ସଦ୍‌ଗୁଣ ରହିବା ଉଚିତ୍‌ବୋଲି ଅଚ୍ୟୁତାନନ୍ଦ ପ୍ରକାଶ କରିଛନ୍ତି ଯାହାକି ତାଙ୍କର ବିଭିନ୍ନ ରଚନାରେ ସ୍ଥାନ ପାଇଛି । ଏଠାରେ ତାର ସଂକ୍ଷିପ୍ତ ସୂଚନା ଦିଆଗଲା ।

୧-. ସର୍ବଦା ସତକଥା କହିବା ।
୨- ଗୁରୁଙ୍କ ଉପଦେଶ ପାଳନ କରିବା ଓ ଗୁରୁନିନ୍ଦା ନ କରିବା ।
୩- ଜୀବ ପ୍ରତି ଦୟା କରିବା ଓ ଜୀବହତ୍ୟା ନ କରିବା ।
୪- ସମସ୍ତଙ୍କର ମଙ୍ଗଳକାମନା କରିବା ।
୫- ସମସ୍ତଙ୍କୁ ସମାନ ଦୃଷ୍ଟିରେ ଦେଖିବା ।
୬- ହିଂସା ନ କରିବା ।
୭- କାହାରିକୁ ଘୃଣା ନ କରିବା ।
୮- ଧର୍ମପଥରେ ଚାଲିବା ।
୯- ମିଛକଥା ନ କହିବା ।
୧୦- କପଟ ଆଚରଣ ନ କରିବା ।
୧୧- ପରଧନ ଅପହରଣ ନ କରିବା ।
୧୨- ପରଦାରା ପ୍ରତି ଆସକ୍ତ ନହେବା ।
୧୩- ମାଛ, ମାଂସ ପରିତ୍ୟାଗ କରିବା ।
୧୪- ଧୂମପାନ ନ କରିବା ।
୧୫- ଅତିଥି ଓ ଦେବତାଙ୍କୁ ପୂଜା କରିବା ।
୧୬- ମାତା ପିତାଙ୍କର ସେବା କରିବା ।
୧୭- ଅନ୍ନବସ୍ତ୍ର ଦାନ ଦେବା ।
୧୮- ସ୍ତ୍ରୀ ଜାତିକୁ ଉପଯୁକ୍ତ ସମ୍ମାନ ଦେବା ।

କବିଙ୍କ ରଚିତ ହରିବଂଶ ପୁରାଣ ଓ ଅନ୍ୟାନ୍ୟ ରଚନାରେ ଏପରି ଅନେକ ସଦ୍‌ଗୁଣ କଥା ବର୍ଣ୍ଣିତ ହୋଇଛି । ବୌଦ୍ଧଧର୍ମରେ ଏସବୁକୁ କୁହାଯାଉଥିଲା ସଦାଚାର । ସମାଜର ସର୍ବବିଧ ମଙ୍ଗଳ ସାଧନ ପାଇଁ ସବୁଧର୍ମରେ ପ୍ରବକ୍ତାମାନେ ନୀତି ଉପଦେଶ ପ୍ରଦାନ କରୁଥିଲେ । ତେବେ ସମାଜରେ ସବୁଲୋକ ଏପରି ଉପଦେଶକୁ ମାନୁ ନଥିଲେ । କେତେକ ଲୋକ ଥିଲେ ଯେଉଁମାନଙ୍କର କଥା ଓ କାମ ମଧ୍ୟରେ ଅନେକ ପାର୍ଥକ୍ୟ ଥିଲା । ସେମାନେ ମିଛକଥା କହି ଲୋକଙ୍କୁ ଠକୁଥିଲେ ଓ କଳେବଳେ କୌଶଳେ ପରଧନ ଅପହରଣ କରିବାକୁ କୁଣ୍ଠାବୋଧ କରୁନଥିଲେ । ଏହାଦ୍ୱାରା ସମାଜରେ ଅନ୍ୟାୟ, ଅନୀତି, ଶୋଷଣ-କଷଣ ତଥା ବ୍ୟଭିଚାର ମୁଣ୍ଡଟେକି ଉଠିଥିଲା । ହେଲେ ସାଧୁସନ୍ଥମାନଙ୍କର କଥା ଓ କାମ ମଧ୍ୟରେ କୌଣସି ପାର୍ଥକ୍ୟ ନଥିଲା । ସେମାନେ ଯେଉଁ ନୀତି ଉପଦେଶ ପ୍ରଦାନ କରୁଥିଲେ ତାକୁ ନିଜେ ଅକ୍ଷରେଅକ୍ଷରେ ପାଳନ କରୁଥିଲେ । ତେଣୁ ସମାଜରେ ସେମାନେ ଥିଲେ ଆଦର୍ଶ ସ୍ଥାନୀୟ ଓ ସ୍ୱତନ୍ତ୍ର ସମ୍ମାନର ଅଧିକାରୀ । ଏହିପରି ଜଣେ ସନ୍ଥ ମହାତ୍ମା ଥିଲେ ମହାପୁରୁଷ ଅଚ୍ୟୁତାନନ୍ଦ ।

ବ୍ୟକ୍ତିତ୍ୱର ପ୍ରଥମ ପରିଚୟ ମିଳେ ବ୍ୟକ୍ତିର ରୂପ ବା ଚେହେରାରୁ । ଅଚ୍ୟୁତାନନ୍ଦ ଗୋରା ଥିଲେ କି କଳା ଥିଲେ, ଢ଼େଙ୍ଗା ଥିଲେ କି ଗେଡ଼ା ଥିଲେ, ମୋଟା ଥିଲେ କି ପତଳା ଥିଲେ- ଏକଥା ନିର୍ଦ୍ଦିଷ୍ଟ ଭାବରେ ଜାଣିବା କଷ୍ଟକର କଥା । କାରଣ ଅଚ୍ୟୁତାନନ୍ଦ ତାଙ୍କର ଶିଷ୍ୟ ବା ଅନ୍ୟ କାହାରି ରଚନାରେ ତାଙ୍କର ରୂପବର୍ଣ୍ଣନା କରାଯାଇନାହିଁ । କେବଳ ସେ ନାନା ଯୁଗରେ ଭଗବାନଙ୍କର ଅନ୍ତରଙ୍ଗ ସଖା ଭାବରେ ଜନ୍ମଗ୍ରହଣ କରିଥିବା କଥା କୁହାଯାଇଛି । ସେ ସତ୍ୟରେ କୃପାଜଳ, ତ୍ରେତୟାରେ ନଳ, ଦ୍ୱାପରରେ ସୁଦାମ ଥିଲେ ଏବଂ କଳିଯୁଗରେ ଶ୍ରୀକୃଷ୍ଣଙ୍କ ଆଦେଶରେ ଅଚ୍ୟୁତ ନାମ ଧାରଣ କରି ଜନ୍ମଗ୍ରହଣ କରିଛନ୍ତି । ସେ ଶ୍ରୀକୃଷ୍ଣଙ୍କ ଠାରୁ ଜାତ ହୋଇଥିବା କଥା ତାଙ୍କର 'ଲକ୍ଷ୍ମୀଧର ବିଳାସ' ଗ୍ରନ୍ଥରେ ବର୍ଣ୍ଣିତ ହୋଇଛି ।

*"ତୁମ୍ଭେ ଜଗତରେ କରତା ଅଟ ଯଶୋଦା ସୁତ*
*ତୁମ୍ଭଠାରୁ ମୋର ଜନମ ମୋର ନାମ ଅଚ୍ୟୁତ ।"*

ପୁଣି ନୀଳାଚଳନାଥ ଜଗନ୍ନାଥ ବିଜେ କରିଥିବା ପବିତ୍ର ପୁରୁଷୋତ୍ତମ କ୍ଷେତ୍ରରୁ ସେ ଜାତ ହୋଇଛନ୍ତି ବୋଲି ମଧ୍ୟ କହିଛନ୍ତି ।

*"ଚତୁର୍ଦ୍ଧାମୂର୍ତ୍ତି ଚଉବର୍ଗଦାତା । ଅଣସରେ ଥାଇ କରନ୍ତି ଯାତ୍ରା ।*
*ଗୁଣିଚା ବାହୁଡ଼ା ଭିଆଇଯାତ । ସ୍ଥିତ ତହିଁ ପୁରୁଷୋତ୍ତମ କ୍ଷେତ୍ର ।*
*ସେ କ୍ଷେତ୍ରୁ କ୍ଷରି ମୋ ନାମ ଅଚ୍ୟୁତ । ଆଜ୍ଞା ଉଦୟରୁ ମୁଁ ଦେହବନ୍ତ ।"*

କେବଳ ଅଚ୍ୟୁତାନନ୍ଦ ନୁହନ୍ତି, ପଞ୍ଚସଖା ପ୍ରତ୍ୟେକ ଭଗବାନଙ୍କ ଶରୀରର ବିଭିନ୍ନ ଅଙ୍ଗରୁ ଜାତ ହୋଇଥିବା କଥା ଗ୍ରନ୍ଥମାନଙ୍କରେ ଅତି ଚମତ୍କାର ଭାବରେ ବର୍ଣ୍ଣନା କରାଯାଇଛି । ସେ ଗୁରୁଙ୍କଠାରୁ ଦୀକ୍ଷା ନେବାବେଳେ ଗୁରୁ ତାଙ୍କୁ ତିଳକଧାରଣ କରିବାପାଇଁ ଆଦେଶ ପ୍ରଦାନ କରିଥିଲେ ଓ ସେ ନିଷ୍ଠାର ସହିତ ସେପରି ତିଳକ ଧାରଣ କରୁଥିଲେ । ଗୁରୁ ସନାତନ ଗୋସାଇଁ ଦକ୍ଷିଣ ପାରୁଶ ବଟ ମୂଳରେ ଦୀକ୍ଷା ଦେବାବେଳେ ଏହିପରି ତିଳକ ଧାରଣ କରାଇଥିଲେ ।

*"ଲଲାଟ ତିଳକ ହରି ମନ୍ଦିର ସେ*
*ନାମ ପ୍ରତାପ ବଢ଼ାଇ*
*ବାହୁ ଯୁଗଳରେ ହୃଦୟ ମଧ୍ୟରେ*
*ପଞ୍ଚ ତିଳକ ଚଢ଼ାଇ ।"*

*-ଅଚ୍ୟୁତାନନ୍ଦ- ଜନ୍ମ ଶରଣ*

ସେ ଲଲାଟ, ନାସା, ଦୁଇବାହୁ ଓ ହୃଦୟ ଏପରି ପାଞ୍ଚଟି ସ୍ଥାନରେ ପଞ୍ଚତିଲକ ଧାରଣ କରୁଥିବା କଥା ଏଥିରୁ ସୂଚିତ ହୁଏ । କିନ୍ତୁ 'ଗୁରୁଭକ୍ତି ଗୀତା'ରେ ସେ ତିଳକ ଧାରଣ ବିଧିରେ ଦ୍ୱାଦଶ ତିଳକ ଧାରଣକଥା ଶିଷ୍ୟମାନଙ୍କୁ ଉପଦେଶ ଦେଇଛନ୍ତି । ସେଥିରୁ ସେ ଶରୀରରେ ଦ୍ୱାଦଶ ତିଳକ ଧାରଣ କରୁଥିବାର ଜଣାପଡ଼େ । ପୁଣି ସେ ନିଜେ ନାସାଗ୍ର ଠାରୁ କେଶ ପର୍ଯ୍ୟନ୍ତ ହରିମନ୍ଦିର ତିଳକ ଧାରଣ କରୁଥିବା କଥା ସ୍ୱୀକାର କରିଛନ୍ତି ।

*''ନାସା ଅଗ୍ରଠାରୁ କେଶ ପର୍ଯ୍ୟନ୍ତ*
*ହରି ମନ୍ଦିର ତିଳକ ଶୋଭିତ ''*

*-ଉଦୟକାହାଣୀ*

ତେବେ ଶ୍ରୀଚୈତନ୍ୟ ନୀଳାଚଳରେ ଅଚ୍ୟୁତାନନ୍ଦଙ୍କୁ ରାସ ରଚନା କରି ପ୍ରଚାର କରିବା ପାଇଁ ଯେଉଁ ଉପଦେଶ ପ୍ରଦାନ କରିଥିଲେ ସେଥିରୁ ସେ ବ୍ରହ୍ମ ଗୋପାଳ ବେଶ ଧାରଣ କରିବା ଓ ତାଙ୍କର ଡ଼ାହାଣ କନ୍ଧରେ ପଇତା ଥିବା ପ୍ରସଙ୍ଗ ବର୍ଣ୍ଣିତ ହୋଇଛି ।

*''ବ୍ରହ୍ମ ଯେ ଗୋପାଳ ବେଶ ଧରିବ ଯେ ତୁମେ*
*ପଇତା ଗୋଟିଏ ଥିବ ଦକ୍ଷିଣ ଯେ କନ୍ଧେ ।''*

*-ଶୂନ୍ୟ ସଂହିତା- ୧ମ/୧ମ ଅଧ୍ୟାୟ*

ମହାପୁରୁଷଙ୍କ ବିଭିନ୍ନ ଗାଦି ବା ଆଶ୍ରମ, ଅନୁଷ୍ଠାନ ଓ ଭକ୍ତ ବିଶେଷଙ୍କ ନିକଟରେ ଦୁଇପ୍ରକାର ମୂର୍ତ୍ତି ବା ଫଟୋଚିତ୍ର ରହିଥିବାର ଜଣାଯାଏ । ଗୋଟିଏ ଶ୍ରୀଜଗନ୍ନାଥଙ୍କ ଶ୍ରୀମୁଖାକୃତି । ପ୍ରଭୁଙ୍କ ପଦ୍ମମୁଖ ସହିତ ଅନେକ ପରିମାଣରେ ଅଚ୍ୟୁତାନନ୍ଦଙ୍କ ମୁଖମଣ୍ଡଳର ସାଦୃଶ୍ୟ ରହିଅଛି । ଏଥିରେ କେବଳ ମୁଖମଣ୍ଡଳର ଚିତ୍ର ରହିଛି ଓ ମସ୍ତକରେ କିରୀଟ ବା ମୁକୁଟ ଧାରଣ କରିଛନ୍ତି । ଆଉ ଗୋଟିଏ ଫଟୋଚିତ୍ର ମାନବ ଦେହଧାରୀ ମହାପୁରୁଷଙ୍କର । ସୁଗଠିତ ପ୍ରଶାନ୍ତ ସୁନ୍ଦର ବପୁ । ଦୀର୍ଘ ପକ୍ୱ କେଶ ଓ ମୁହଁ ସ୍ମଶ୍ରୁ ସୁଶୋଭିତ । ଦୁଇବାହୁ ଓ ବକ୍ଷଦେଶରେ ରୁଦ୍ରାକ୍ଷମାଳା ଶୋଭାପାଉଛି । ମୁଖମଣ୍ଡଳରୁ ସତେ ଅବା ଦିବ୍ୟଜ୍ୟୋତି ବାହାରୁଛି । ଅମ୍ଳାନ ବସ୍ତ୍ର ପରିଧାନ କରି ମହାତ୍ମା ଶୁଦ୍ଧପୂତ ଆସନରେ ବସିଛନ୍ତି । ତେବେ ବାହ୍ୟ ରୂପରୁ ଅଚ୍ୟୁତାନନ୍ଦଙ୍କର ବ୍ୟକ୍ତିତ୍ୱର ପ୍ରକୃତ ପରିଚୟ ମିଳେନାହିଁ । ତାଙ୍କ ବ୍ୟକ୍ତିତ୍ୱର ପରିଚୟ ପାଇଁ ତାଙ୍କ ରଚିତ ଗ୍ରନ୍ଥରାଜି ଓ ତାଙ୍କ ଜୀବନ ଚରିତ ହିଁ ପ୍ରମାଣ ।

ବ୍ୟକ୍ତିତ୍ୱର ପରୀକ୍ଷା ହୁଏ ସଂଘର୍ଷରେ । ଯାହା ଜୀବନ ଯେତେ ସଂଘର୍ଷମୟ ତାର ଜୀବନ ସେତିକି ସୁଦୃଢ଼ । ଅଚ୍ୟୁତାନନ୍ଦଙ୍କ ଜୀବନରେ ବହୁ ସଂଘର୍ଷର ସୂତ୍ରପାତ ହୋଇଥିଲା ଓ ସେ ଦୃଢ଼ତାର ସହିତ ସେସବୁ ସଂଘର୍ଷର ସମ୍ମୁଖୀନ ହୋଇଥିଲେ । ତାଙ୍କ ଲୋକପ୍ରିୟତାରେ ଈର୍ଷାପରାୟଣ ହୋଇ ବ୍ରାହ୍ମଣମାନେ ରାଜାଙ୍କୁ ତାଙ୍କ ବିରୁଦ୍ଧରେ ନାନାକଥା

କହିଥିଲେ ଓ ତାଙ୍କୁ ବେଢ଼ିଯାଇ ଅପମାନ ଦେଇଥିଲେ । ସେ ରାଜାଙ୍କ କ୍ରୋଧର ଶୀକାର ହୋଇଥିଲେ ମଧ୍ୟ ପ୍ରଭୁ ଜଗନ୍ନାଥଙ୍କ କରୁଣାରୁ ବାଙ୍କୀମୁହାଣଠାରେ ଶୂନ୍ୟବାଣି ମଧରେ ଶୂନ୍ୟଭଜନର ପ୍ରମାଣ ଦେଇ ସମସ୍ତଙ୍କୁ ବିସ୍ମିତ କରିଦେଇଥିଲେ । ସେତେବେଳେ ସାମାଜିକ ତଥା ଧାର୍ମିକ କ୍ଷେତ୍ରରେ ଉପୁଜିଥିବା ଏପରି ସଙ୍କଟକୁ ସେ ଦୃଢ଼ତାର ସହିତ ମୁକାବିଲା କରିଥିଲେ । ସମାଜରେ ତାଙ୍କର ନୀତିଆଦର୍ଶ ଓ ଧର୍ମପ୍ରଚାର ବିରୁଦ୍ଧରେ ସ୍ୱର ଉତ୍ତୋଳନ ହୋଇଥିବାର ଭୂରିଭୂରି ପ୍ରମାଣ ରହିଛି । ତା' ନ ହୋଇଥିଲେ ସେ କାହିଁକି କହିଥାନ୍ତେ-

*''ଥୋକେ ଲୋକ ଶୁଣିଲେ କରିବେ ଉପହାସ*
*ଏଣୁ କରି ମୂଢଜନେ ନ କରି ପ୍ରକାଶ ।''*

*(ଗୁ.ଭ.ଗୀ- ୩ୟ/୧୦ମ ପଟଳ)*

ପୁଣି ବିପ୍ରଚାଳକ ଗ୍ରନ୍ଥରେ ତାଙ୍କର ପାଣ୍ଡିତ୍ୟ ସଂପର୍କରେ ଏକ ଚମତ୍କାର କାହାଣୀ ସନ୍ନିବେଶିତ ହୋଇଛି । ଅଚ୍ୟୁତାନନ୍ଦଙ୍କ ଲୋକପ୍ରିୟତାରେ ଈର୍ଷାକରି ବ୍ରାହ୍ମଣମାନେ ତାଙ୍କୁ କେତେକ ଜଟିଳ ପ୍ରଶ୍ନ ପଚାରିଛନ୍ତି । ଅଚ୍ୟୁତାନନ୍ଦ ସେ ସବୁ ପ୍ରଶ୍ନର ଉତ୍ତର ଦେବା ସଙ୍ଗେ ସଙ୍ଗେ ନିଜେ ବ୍ରାହ୍ମଣମାନଙ୍କୁ କେତେକ ପ୍ରଶ୍ନ ପଚାରିଛନ୍ତି ଯାହାର କି ଉତ୍ତର ସେମାନେ ଦେଇପାରି ନଥିଲେ । ପ୍ରଶ୍ନର ଉତ୍ତର ଦେଇ ନପାରିବାରୁ ବ୍ରାହ୍ମଣମାନେ ତାଙ୍କର ଶରଣାପନ୍ନ ହୋଇ ଶିଷ୍ୟତ୍ୱ ଗ୍ରହଣ କଲେ । ଶ୍ରୀକୃଷ୍ଣଙ୍କୁ ଉପାସନା କରିବା ପାଇଁ ଅଚ୍ୟୁତାନନ୍ଦ ସେମାନଙ୍କୁ ପରାମର୍ଶ ଦେଲେ । ଅସାଧୁ, ନିଶାଖୋର, ପରଧନ ଅପହରଣକାରୀ ଆମିଷାହାରୀ ପ୍ରଭୃତି ଲୋକଙ୍କୁ କୌଣସି ପ୍ରକାର ତତ୍ତ୍ୱ ନ କହିବା ପାଇଁ ବାରମ୍ବାର ସେ ଶିଷ୍ୟମାନଙ୍କୁ ଉପଦେଶ ପ୍ରଦାନ କରିଛନ୍ତି । ଏଯାବତ୍ ଶ୍ରୀକ୍ଷେତ୍ରରେ ଥିବା ଅଚ୍ୟୁତମଠ ଧର୍ମଦର୍ଶନର ପରିପ୍ରସାର କ୍ଷେତ୍ରରେ ପ୍ରମୁଖ ଭୂମିକା ଗ୍ରହଣ କରିଚାସିଛି ।

ସେହିପରି ପାରିବାରିକ ଜୀବନରେ ସେ ଘୋର ଅଭାବ ଅନଟନର ସମ୍ମୁଖୀନ ହୋଇଥିଲେ ବୋଲି ନିଜେ ପ୍ରକାଶ କରିଛନ୍ତି । ''ଅନ୍ନ ନ ମିଳଇ ଘରେ'', ଏପରି ଅଭାବରେ ଥାଇ ମଧ ତାଙ୍କର ମନୋବଳ ଦୃଢ଼ ଥିଲା । ଯେଉଁଥିପାଇଁ ସେ ରଣପୁର ରାଜା ପଦ୍ମନାଭ ନରେନ୍ଦ୍ରଙ୍କ ଆଶ୍ରିତରେ ଥାଇ ହରିବଂଶ ପରି ବିରାଟ ମହାପୁରାଣ ରଚନା କରିଥିଲେ । ରାଗ, କ୍ରୋଧ, ଅଭିମାନ ପ୍ରଭୃତି ପ୍ରକୃତ ବୈଷ୍ଣବ ଲକ୍ଷଣ ନୁହେଁ । ପ୍ରକୃତ ବୈଷ୍ଣବର ଲକ୍ଷଣ ହେଉଛି ନମ୍ରତା- ଏକଥା ଅଚ୍ୟୁତାନନ୍ଦ ଭଲ ଭାବରେ ହୃଦୟଙ୍ଗମ କରିଥିଲେ । ସେଥିପାଇଁ ଶିଷ୍ୟମାନଙ୍କୁ ସର୍ବଦା ବିନମ୍ର ହେବା ପାଇଁ ସେ ଉପଦେଶ ପ୍ରଦାନ କରିବା ସଙ୍ଗେ ସଙ୍ଗେ ନିଜ ଆଚରଣରେ ମଧ ସେକଥା ଦେଖାଇଛନ୍ତି । ଶ୍ରୀକ୍ଷେତ୍ରରେ ବ୍ରାହ୍ମଣମାନେ ଈର୍ଷା ପରାୟଣ ହୋଇ ତାଙ୍କୁ ଅପମାନ ଦେଇଥିଲେ ମଧ ସେ ସେମାନଙ୍କ ପ୍ରତି କୌଣସି

କ୍ରୋଧ ପ୍ରକାଶ କରି ନାହାନ୍ତି । ବରଂ ଶୂନ୍ୟବାଣିଠାରେ ଭଜନ ପରୀକ୍ଷାରେ ଉତ୍ତୀର୍ଣ୍ଣ ହେବା ପରେ ସେମାନଙ୍କୁ ବୈଷ୍ଣବ ସୁଲଭ ଢ଼ଙ୍ଗରେ ସମ୍ଭାଷଣ କରିଛନ୍ତି । ସେ ଚୈତନ୍ୟଙ୍କୁ ଗୁରୁ, କୃଷ୍ଣ, ଉପଦେଷ୍ଟା ତଥା ଧର୍ମ ପ୍ରଚାରକ ଭାବରେ ବିଭିନ୍ନ ସ୍ଥାନରେ ବର୍ଣ୍ଣନା କରି ନିଜ ସହିତ ତାଙ୍କର ଜନ୍ମଜନ୍ମାନ୍ତରର ସଂପର୍କ ପ୍ରକାଶ କରିଛନ୍ତି । ସେହିପରି ପ୍ରଭୁ ଜଗନ୍ନାଥଙ୍କୁ କୃଷ୍ଣ, ବିଷ୍ଣୁ, ବୁଦ୍ଧ, ପରଂବ୍ରହ୍ମ ରୂପେ ଅଭିହୀତ କରି ନିଜକୁ ତାଙ୍କର ସେବକ ତଥା ଦାସାନୁଦାସ ଭାବରେ ପ୍ରକାଶ କରିଛନ୍ତି । ଏଥିରୁ ତାଙ୍କର ବିନମ୍ର ଭାବର ସୂଚନା ମିଳେ ।

ବୈଷ୍ଣବମାନେ ଯେତେ ଜ୍ଞାନୀ-ପଣ୍ଡିତ ହୋଇଥିଲେ ମଧ କେବେହେଲେ ଗର୍ବ ଅଥବା ଅହଂକାର ଭାବ ପ୍ରକାଶ କରନ୍ତି ନାହିଁ । ବରଂ ଉଦାରତାର ସହିତ ନିଜକୁ ପ୍ରକାଶ କରିଥାନ୍ତି । ଅଚ୍ୟୁତାନନ୍ଦ ସେହିପରି ନିଜକୁ ଦୀନ, ଦୁଃଖୀ, ମୂଢ଼, ଗୁଆଁର, ନିର୍ବୋଧ, ପାମର, ମୂରୁଖ, ଅଜ୍ଞାନ, ଅଧମ, କିଙ୍କର, ଭକତଙ୍କ ଭୃତ୍ୟ ରୂପେ ବିଭିନ୍ନ ଗ୍ରନ୍ଥରେ ଉଲ୍ଲେଖ କରିଛନ୍ତି । କବି ଭଗବାନଙ୍କ ନିକଟରେ ଶେଷ ଇଚ୍ଛା ପାଇଁ ଯେପରି ଆକୁଳ ଆବେଦନ କରିଛନ୍ତି, ସେଥିରୁ ତାଙ୍କର ସରଳତା, ବିନୟ ଓ ଭକ୍ତିଭାବର ସ୍ପଷ୍ଟ ସୂଚନା ମିଳେ । ସେ ମାଗିଛନ୍ତି-

*"ବ୍ରହ୍ମା ଇନ୍ଦ୍ରପଦ ନ ବାଞ୍ଛେ ଜ୍ଞାନ ଧ୍ୟାନ ନ ଇଚ୍ଛେ*
*ସପ୍ତଦ୍ୱୀପେ ରାଜା ହୋଇବି ଏହୁ ପଦ ନ ବାଞ୍ଛେ ।*
*ଯୋଗୀ ଯତୀନ୍ଦ୍ର ମୁଁ ନୋହିବି ବ୍ରହ୍ମଜ୍ଞାନୀ ନୋହିବି*
*ସାଧୁସନ୍ଥ ମୁଁ ଯେ ନୋହିବି ମୁଁ ଯେ କବି ନୋହିବି ।*
*ମରଣ ବେଳକୁ ଶରଣ ତୁମ୍ଭ ଚରଣେ ହେବ*
*ଅଚ୍ୟୁତ ବୋଲେ ପରିତ୍ରାଣ ଗତି ଆନ ନୋହିବ ।"*

*(ନବ ଗୁଜ୍ଜରୀ)*

ବାସ୍ତବରେ ଅଚ୍ୟୁତାନନ୍ଦ ଥିଲେ ପଣ୍ଡିତ ଓ ମହାଜ୍ଞାନୀ । ନାନାପ୍ରକାର ଯୋଗ, ଯନ୍ତ୍ର, ମନ୍ତ୍ର, ତନ୍ତ୍ରଠାରୁ ଆରମ୍ଭ କରି ଜ୍ୟୋତିଷ ବିଦ୍ୟାପର୍ଯ୍ୟନ୍ତ ପ୍ରତ୍ୟେକ ଶାସ୍ତ୍ରରେ ତାଙ୍କର ଅଗାଧ ବ୍ୟୁତ୍ପତ୍ତି ଥିଲା । ପ୍ରାଚୀ ଉପତ୍ୟକାରେ ମୁନିମାନଙ୍କୁ ତାଙ୍କର ଉପଦେଶ ପ୍ରଦାନରୁ ଏହା ସୁସ୍ପଷ୍ଟ । ତାଙ୍କର ପ୍ରତ୍ୟେକ ଗ୍ରନ୍ଥରେ ପାଣ୍ଡିତ୍ୟ ଯେପରି ଭାବରେ ପ୍ରକାଶ ପାଇଛି କବିତ୍ୱ ମଧ ସେହିପରି ଫୁଟି ଉଠିଛି । ଓଡ଼ିଆ ଭାଷାରେ ସାରଳାଦାସଙ୍କ ମହାଭାରତ, ଜଗନ୍ନାଥ ଦାସଙ୍କ ଭାଗବତ ଓ ବଳରାମଙ୍କ ଜଗମୋହନ ରାମାୟଣ ପରି ଲୋକପ୍ରିୟ ଗ୍ରନ୍ଥ ହରିବଂଶ ରଚନା କରି ସେ ନିଜର କବି ପ୍ରତିଭାର ପରିଚୟ ଦେଇଥିଲେ । ଲୋକପ୍ରିୟତା ଦୃଷ୍ଟିରୁ ହରିବଂଶ ଓଡ଼ିଆ ସାମାଜିକ ଜୀବନର ଏକ ଅବିଚ୍ଛେଦ୍ୟ ଅଙ୍ଗ କହିଲେ ଅତ୍ୟୁକ୍ତି ହେବନାହିଁ । ଧର୍ମଗ୍ରନ୍ଥ ଦୃଷ୍ଟିରୁ ଓଡ଼ିଶାର ସର୍ବତ୍ର ଏହାକୁ ସ୍ୱତନ୍ତ୍ର ମାନ୍ୟତା ଦିଆଯାଇଥାଏ ।

ନିଜର ଜୀବନକାଳ ମଧ୍ୟରେ ଅଚ୍ୟୁତାନନ୍ଦ ଜୀବନ୍ତ କିମ୍ବଦନ୍ତୀରେ ପରିଣତ ହୋଇସାରିଥିଲେ । ତାଙ୍କର ଅଲୌକିକ ମହିମାର ପ୍ରଭାବ ବେଶ ଭଲଭାବରେ ପଡ଼ିଥିଲା ଲୋକଙ୍କ ଉପରେ ଓ ଲୋକମୁଖରେ ସେସବୁ ସତତ ପ୍ରଚାରିତ ହେଉଥିଲା । ଉକ୍ତଗ୍ରନ୍ଥରେ ଅନ୍ୟତ୍ର ତାଙ୍କ ସଂପର୍କିତ ଅଲୌକିକ କାହାଣୀସବୁ ସନ୍ନିବେଶିତ ହୋଇଛି । ପୁଣି ଭଗବାନଙ୍କ ସହିତ ତାଙ୍କର ପ୍ରତ୍ୟକ୍ଷ ସଂପର୍କ ରହିଛି । ସେ ତ୍ରେତୟା ଯୁଗରେ ରାମଙ୍କ ସହିତ ନଳ ଓ ଦ୍ୱାପର ଯୁଗରେ କୃଷ୍ଣଙ୍କ ସହିତ ସୁଦାମ ହୋଇ ଜନ୍ମଗ୍ରହଣ କରିଥିଲେ । ଆଉ ଏ କଳିଯୁଗରେ କୃଷ୍ଣ ହେଲେ ଶ୍ରୀଚୈତନ୍ୟ ଆଉ ସୁଦାମ ହେଲେ ଅଚ୍ୟୁତାନନ୍ଦ । ପୁଣି ତାଙ୍କର ପିତା ଜଗନ୍ନାଥଙ୍କର ଭକ୍ତଥିବାରୁ ସେ ପ୍ରଭୁଙ୍କ ସ୍ୱପ୍ନାଦେଶ ଅନୁଯାୟୀ ଶ୍ରୀମନ୍ଦିରରେ ପ୍ରଭୁଙ୍କ ଆଗରେ ଏକ ଦିବ୍ୟକଳେବର ଯୁକ୍ତ ଶିଶୁ ଦର୍ଶନ କରିଥିଲେ । ସେହି ଶିଶୁ ସଙ୍ଗେସଙ୍ଗେ ଅନ୍ତର୍ଦ୍ଧାନ ହୋଇ ମାତା ପଦ୍ମାବତୀଙ୍କ ଗର୍ଭରେ ସ୍ଥାନ ପାଇଲେ । ତେଣୁ ଅଚୁତାନନ୍ଦଙ୍କ ପଛରେ ରହିଛି ଜଗନ୍ନାଥଙ୍କର ଅପାର କରୁଣା । ଓଡ଼ିଶାରେ ସେ ଥିଲେ ରାସଲୀଳାର ସ୍ରଷ୍ଟା ଓ ଗୋପାଳମାନଙ୍କୁ ନେଇ ସର୍ବତ୍ର ରାସଲୀଳା ପ୍ରଦର୍ଶନ କରୁଥିଲେ । କେବଳ ଲୋକଙ୍କର ମନୋରଞ୍ଜନ କରିବା ଏହାର ଉଦ୍ଦେଶ୍ୟ ନଥିଲା । ଏହାର ମୁଖ୍ୟ ଉଦ୍ଦେଶ୍ୟ ଥିଲା ଲୋକଙ୍କୁ ଧର୍ମ ମାର୍ଗରେ ପରିଚାଳିତ କରି ନୀତି ଉପଦେଶ-ସଦାଚାର ଶିକ୍ଷା ଦେବା । ଫଳରେ ରାହାସ ପାଇଁ ସେ ବିଶେଷ ଭାବରେ ପ୍ରସିଦ୍ଧି ଲାଭ କରିଥିଲେ । ମାଳିକାର ସ୍ରଷ୍ଟା ବା ଆଗତ ଭବିଷ୍ୟର ପ୍ରବକ୍ତା ଭାବରେ ସେ ଥିଲେ ଓଡ଼ିଶାରେ ଅନ୍ୟତମ ଆକର୍ଷଣ । ସେ ଥିଲେ ଜାତିସ୍ମର ଓ ତ୍ରିକାଳଦର୍ଶୀ । ସେଥିପାଇଁ ଭବିଷ୍ୟତ ଘଟଣାମାନ ସେ ଯେପରି ଭାବରେ ପ୍ରକାଶ କରିଛନ୍ତି ସେ ସବୁକୁ ଲୋକେ ସତ୍ୟ ବୋଲି ଗ୍ରହଣ କରୁଥିଲେ । ଏବେ ମଧ୍ୟ ଲୋକେ ବିଶ୍ୱାସ କରୁଛନ୍ତି ଯେ ତାଙ୍କ ଲିଖିତ ପୋଥି ଅନୁଯାୟୀ ଭବିଷ୍ୟତରେ ସମସ୍ତ ଘଟଣା ନିଶ୍ଚେ ଘଟିବ ।

ଅଚ୍ୟୁତାନନ୍ଦ ଥିଲେ ବିରାଟ ବ୍ୟକ୍ତିତ୍ୱ ତଥା ପ୍ରଚଣ୍ଡ ପ୍ରତିଭାର ଅଧିକାରୀ । ତାଙ୍କର କବିତ୍ୱ, ପାଣ୍ଡିତ୍ୟ ଓ ଗୁରୁଗିରି ଦ୍ୱାରା ପ୍ରଭାବିତ ହୋଇ ଅଗଣିତ ଭକ୍ତ ଶିଷ୍ୟତ୍ୱ ଗ୍ରହଣ କରିଥିଲେ ଓ ଶିଷ୍ୟମାନଙ୍କ ଦ୍ୱାରା ବିଭିନ୍ନ ସ୍ଥାନରେ ମଠ, ଆଶ୍ରମମାନ ସ୍ଥାପିତ ହୋଇଥିଲା । ସେ ସମୟରେ ଅଚ୍ୟୁତାନନ୍ଦଙ୍କର ଯେତେ ସଂଖ୍ୟକ ଶିଷ୍ୟଥିଲେ ବୋଧହୁଏ ଅନ୍ୟ କୌଣସି ସାଧୁସନ୍ଥଙ୍କ ଭାଗ୍ୟରେ ଏହା ଜୁଟି ନଥିଲା । ଏହା କେବଳ ତାଙ୍କର ବ୍ୟକ୍ତିତ୍ୱ ଯୋଗୁଁ ସମ୍ଭବ ହୋଇପାରିଥିଲା ।

ଶିଷ୍ୟମାନଙ୍କୁ ଓ ସର୍ବସାଧାରଣଙ୍କୁ ପ୍ରଦତ୍ତ ଉପଦେଶରୁ ତାଙ୍କ ବ୍ୟକ୍ତିତ୍ୱର ପରିଚୟ ମିଳେ । ସଂସାରରେ ଦୟା, କ୍ଷମା, ଶାନ୍ତି, ଦାନଶୀଳତା, ନିର୍ଲୋଭତା, ସମଦର୍ଶିତା

ଓ ଅହିଂସା ଆଦି ସାମାଜିକ ଧର୍ମମାର୍ଗକୁ ଅନୁସରଣ କରିବା ସର୍ବାଦୌ କର୍ତ୍ତବ୍ୟ । ପ୍ରତ୍ୟେକ ବ୍ୟକ୍ତିଠାରେ ସ୍ୱୟଂ ଭଗବାନ ବିଦ୍ୟମାନ । ତେଣୁ କାହାରିକୁ ଘୃଣା କରିବା ଉଚିତ ନୁହେଁ । ଧର୍ମମାର୍ଗରେ ପରିଚାଳିତ ଏକ ଆଚରଣଶୀଳ ସୁସ୍ଥ ସମାଜ ଗଠନ କରିବା ଥିଲା ଅଚ୍ୟୁତାନନ୍ଦଙ୍କର ମୁଖ୍ୟ ଉଦ୍ଦେଶ୍ୟ । ସେଥିପାଇଁ ସେ ବିଭିନ୍ନ ଗ୍ରନ୍ଥରେ ବହୁଳ ଭାବରେ ନୀତି ଉପଦେଶ ପ୍ରଦାନ କରିଛନ୍ତି ଓ ସେଥିରୁ ସେ ନିଜେ ଏସବୁ ସଦ୍‌ଗୁଣରେ ଅଧିକାରୀ ଥିବା ଜଣାଯାଏ ।

ଅଚ୍ୟୁତାନନ୍ଦ ଗୁରୁଙ୍କୁ ସମାଜରେ ଶ୍ରେଷ୍ଠ ଆସନ ଦେଇଛନ୍ତି । ଗୁରୁ ହେଉଛନ୍ତି ମୁକ୍ତିଦାତା । ତାଙ୍କର ଆଶୀର୍ବାଦ ଲାଭ କଲେ ଜଣେ ସକଳ ଐଶ୍ୱର୍ଯ୍ୟର ଅଧିକାରୀ ହୋଇପାରିବ । ଆଉ ଯେଉଁମାନେ ଗୁରୁନିନ୍ଦା କରନ୍ତି ସେମାନଙ୍କର ଅଶେଷ କ୍ଷତି ହୁଏ । କବିଙ୍କ ମତରେ-

*"ଗୁରୁଟି ଗଚିର ପୁରୁଷ । ଗୁରୁ କଲ୍ୟାଣେ ଧନବଂଶ ।*
*ଗୁରୁ କଲ୍ୟାଣେ ରାଜ୍ୟ ଶିରୀ । ଗୁରୁ ଦର୍ଶନେ ପାପ ହରି ।"*

***(ଗୁ.ଭ.ଗୀ-୨ୟ/୩ ପଟଳ)***

*"ଗୁରୁ ଠାବରେ ପାପକଲେ । ବଜ୍ର ପଡ଼ଇ ତାର ତୁଲେ ।*
*ଗୁରୁ ବୈଷ୍ଣବ ଏକ କହୁଁ । କୃଷ୍ଣ ବୈଷ୍ଣବ ବଡ଼ ଯହୁଁ ।*
*ଗୁରୁ ବୈଷ୍ଣବ ଦୟା କଲେ । ଏ ଜୀବ ତରେ ଭବ ଜଳେ ।"*

***(ଗୁ.ଭ.ଗୀ-୧ମ/୧ ଛାନ୍ଦ)***

ନାରୀ ଜାତି ପ୍ରତି ଅଚ୍ୟୁତାନନ୍ଦଙ୍କର ସ୍ୱତନ୍ତ୍ର ସମ୍ମାନ ଥିଲା । ସମାଜରେ ସେମାନେ କିପରି ଉପଯୁକ୍ତ ମର୍ଯ୍ୟାଦା ଲାଭ କରିପାରିବେ ସେଥିପାଇଁ ସେ ସତତ ଚେଷ୍ଟିତ ଥିଲେ । ସେ ସମୟରେ ନାରୀ ଓ ଶୂଦ୍ରମାନେ ପୁରାଣ ପାଠ ଓ ଶ୍ରବଣରୁ ବଞ୍ଚିତ ଥିଲେ । ଏ କ୍ଷେତ୍ରରେ ପଞ୍ଚସଖା ଅବହେଳିତ ନାରୀ ଜାତିର ଉତ୍‌ଥାନ ପାଇଁ ବିପ୍ଳବ କରିଥିଲେ । ତାଙ୍କର ଶିଷ୍ୟମାନଙ୍କ ମଧ୍ୟରେ ତିନିଶହ ନାରୀ ଥିବା କଥା "ଶୂନ୍ୟସଂହିତା" ଗ୍ରନ୍ଥରେ ଉଲ୍ଲେଖ ଅଛି । ମାଆ ଭାବରେ ନାରୀର ଆସନ ସବୁଠୁ ଉଚ୍ଚରେ । ତେଣୁ ମାଆ ପ୍ରତି ପୁତ୍ରର କର୍ତ୍ତବ୍ୟ ସଂପର୍କରେ ସେ କୁହନ୍ତି-

*"ଏଣୁ ଏ ପୁତ୍ରମାନେ ଶୁଣ । ସେବିବ ମାତାଙ୍କ ଚରଣ ।*
*ତାଙ୍କୁ ଅନ୍ନବସ୍ତ୍ର ଦେବ । ସୁସ୍ଥାନେ ନିଶ୍ଚିନ୍ତେ ରହିବ ।*

*ବଚନ ତାଙ୍କ ପାଳୁଥିବ । ବିମୁଖ କେବେ ନ କରିବ ।*
*ସତ୍ୟରେ ଅନ୍ନଦାନ ଦେବ । ଏହାକୁ ପୁତ୍ରରେ ଲେଖିବ ।*
*ଏ ସେବା ଯେ ପୁତ୍ର ନ କଲା । ସେ ପୁତ୍ର ଜୀଇ ଜୀଇ ମଲା ।''*

*(ଶୂ.ଭ.ଗୀ.- ୩/୯ମ ପଟଳ)*

ସେତେବେଳେ ସମାଜରେ ନାରୀମାନଙ୍କ ଅବସ୍ଥା ସ୍ୱଚ୍ଛଳ ନଥିବା ଏଥିରୁ ସୂଚିତହୁଏ । ଅନେକ ନାରୀ ଅନ୍ନବସ୍ତ୍ର ନପାଇ ଦରିଦ୍ର ଭାବରେ କାଳାତିପାତ କରୁଥିଲେ ଓ ନିଜର ପୁତ୍ରମାନେ ସେମାନଙ୍କୁ ପଚାରୁ ନଥିଲେ । ସେଥିପାଇଁ ଅଚ୍ୟୁତାନନ୍ଦ ସେମାନଙ୍କର ନିର୍ଯ୍ୟାତନା ସ୍ୱଚକ୍ଷୁରେ ଦେଖି ତାର ନିରାକରଣ ପାଇଁ ଉପଦେଶ ଦେଇଛନ୍ତି । ପୁଣି ସେ ଅତି କଠୋର ଭାବରେ ସତର୍କ କରାଇଛନ୍ତି-

*''ପରଦାରାକୁ ନାହିଁ ଚିଉ'' ଓ ''ସଂସାରେ ଯେତେକ ସ୍ତିରୀ ସର୍ବେ ତୁମ୍ଭ ମାତା''*

ଏଥିରୁ ସମାଜରେ ବ୍ୟଭିଚାରର ସ୍ଥାନ ନାହିଁ ଓ ନାରୀକୁ ଉପଯୁକ୍ତ ସମ୍ମାନ ଦେବା କଥା ସେ ସ୍ପଷ୍ଟ ଭାବରେ ପ୍ରକାଶ କରିଛନ୍ତି ।

ଅଚ୍ୟୁତାନନ୍ଦ ହିଂସାର ବିରୋଧୀ ଥିଲେ । ସେଥିପାଇଁ ପ୍ରତ୍ୟେକ ଜୀବ ପ୍ରତି ଦୟା କରିବା ଥିଲା ତାଙ୍କର ମୁଖ୍ୟ ଉଦ୍ଦେଶ୍ୟ । ଧର୍ମ ପଥରେ ପରିଚାଳିତ ହୋଇ ସର୍ବଦା ସତ କହିବା, ଅତିଥି ସେବା କରିବା, କୌଣସି ପ୍ରକାର ନିଶାଦ୍ରବ୍ୟ ସେବନ ନ କରିବା, ଅନ୍ନ-ବସ୍ତ୍ର ଦାନ ଦେବା, କପଟ ଆଚରଣ ନ କରିବା ପ୍ରଭୃତି ପ୍ରସଙ୍ଗ ଶିଷ୍ୟ ଓ ସାଧାରଣ ଲୋକଙ୍କୁ ଉପଦେଶ ଦେଇଛନ୍ତି । ବିଶେଷ କରି ବୈଷ୍ଣବ ଓ ମହାତ୍ମା ଲକ୍ଷଣ ବର୍ଣ୍ଣନା କଲାବେଳେ ମଣିଷ କିପରି ସଦ୍‌ଗୁଣର ଅଧିକାରୀ ହେବା ଉଚିତ ସେ କଥା ବର୍ଣ୍ଣନା କରିଛନ୍ତି । ସମଗ୍ର ମାନବ ସମାଜର ମଙ୍ଗଳ ବିଧାନ କରିବା ଥିଲା ତାଙ୍କର ଉଦ୍ଦେଶ୍ୟ । ସେଥିପାଇଁ ସେ ଶିଷ୍ୟମାନଙ୍କୁ ନିର୍ଦ୍ଦେଶ ଦେଇଥିଲେ ।

*''ବ୍ରହ୍ମକ୍ଷତ୍ରି ବୈଶ୍ୟ ଶୂଦ୍ର ଚାରିଜାତି ମାନ*
*ଛତିଶ କୁଳ ଅଠର ପାଟକ ଯେ ଜନ ।*
*ସବୁଙ୍କରି ସ୍ଥାନେ ତୁମ୍ଭେ ମଙ୍ଗଳ କରିବ*
*ଗୋପାଳ କୁଳକୁ ଚାରି ଆପଣେ ଚରିବ ।''*

(ଶୂ.ଭ.ଗୀ.- ୩ୟ/ ୨୫ ପଟଳ)

ସେ ବୈଷ୍ଣବ ଧର୍ମାବଲମ୍ବୀ ହୋଇ ଶ୍ରୀଜଗନ୍ନାଥ ଓ ଶ୍ରୀକୃଷ୍ଣଙ୍କୁ ନିଜର ଆରାଧ୍ୟ ଦେବତା ଭାବରେ ଗ୍ରହଣ କରିଥିଲେ ମଧ୍ୟ ଅନ୍ୟ କୌଣସି ଧର୍ମ ସଂପ୍ରଦାୟକୁ

ହୀନ ଦୃଷ୍ଟିରେ ଦେଖୁନଥିଲେ । ତାଙ୍କ ଦୃଷ୍ଟିରେ ସବୁଧର୍ମ ସମାନ । ଏପରିକି ବୈଷ୍ଣବ ଧର୍ମର ବିଭିନ୍ନ ସଂପ୍ରଦାୟ ସହିତ ପଞ୍ଚସଖାଙ୍କୁ ଯୋଡ଼ିଦେଇ ସେ ସବୁ ଧର୍ମ ସଂପ୍ରଦାୟ ମଧ୍ୟରେ ସମନ୍ୱୟ ସାଧନ କରିଛନ୍ତି । ଅଚ୍ୟୁତାନନ୍ଦ-ନିତ୍ୟାନନ୍ଦ, ବଳରାମ- ବିଷ୍ଣୁସ୍ୱାମୀ, ଶିଶୁଅନନ୍ତ-ରାମାନନ୍ଦ, ଯଶୋବନ୍ତ-ମଧ୍ୱାଚାର୍ଯ୍ୟ ସଂପ୍ରଦାୟ ଅନ୍ତର୍ଭୁକ୍ତ ହୋଇଥିଲେ ।

*"ଅନନ୍ତ ଶିଶୁ ଯେ ରାମାନନ୍ଦ ବୈଷ୍ଣବ*
*ଯଶୋବନ୍ତ ଦାସ ମଧ୍ୱାଚାର୍ଯ୍ୟ ବୈଷ୍ଣବ ।*
*ବଳରାମ ଦାସ ବିଷ୍ଣୁ ଶ୍ୟାମ ଦାସ ହୋଇ*
*ନିମାନନ୍ଦ ବୈଷ୍ଣବ ଅଚ୍ୟୁତ ଅଟଇ ।"*

*(ଗୁ.ଭ.ଗୀ- ୧/୩୨ ଛାନ୍ଦ)*

ଏଠାରେ ନିତ୍ୟାନନ୍ଦ ଓ ନିମାନନ୍ଦ ଅଭିନ୍ନରୂପେ ଗୃହୀତ । ଜଗନ୍ନାଥ ଦାସ ତାଙ୍କର ନିଜସ୍ୱ ଅତିବଡ଼ୀ ସଂପ୍ରଦାୟର ପ୍ରତିଷ୍ଠାତା ଥିଲେ । ତଥାପି ସେମାନେ ଏକ ମତାବଲମ୍ବୀ ଥିଲେ ।

*"ପଞ୍ଚସଖାଙ୍କର ଏକଇମତ । ହରେ ରାମ ଭଜି ହେଲୁଁ ମୁକତ ।"*

*-ଉଦୟ କାହାଣୀ*

ଅଚ୍ୟୁତାନନ୍ଦ ଶୈବ, ଶାକ୍ତ, ସୌର, ଗାଣପତ୍ୟ, ବୌଦ୍ଧ, ନାଥ ଆଦି ଧର୍ମର ଦେବତାମାନଙ୍କୁ ଆବଶ୍ୟକ ସ୍ଥଳେ ସ୍ତୁତି କରିଛନ୍ତି ଓ ଏସବୁ ଧର୍ମର ମୂଳତତ୍ତ୍ୱକୁ ମଧ୍ୟ ଗ୍ରହଣ କରିଛନ୍ତି ।

କିନ୍ତୁ ସମାଜରେ ଧର୍ମ ନାମରେ ଚାଲିଥିବା ଭ୍ରଷ୍ଟାଚାରକୁ ସେ ତୀବ୍ର ଭାବରେ ସମାଲୋଚନା କରିଛନ୍ତି । ସେ ସମୟରେ କେତେକ ଭଣ୍ଡ ସାଧୁ ବେଶ ଧାରଣ କରି ଅଧର୍ମ କାର୍ଯ୍ୟରେ ଲିପ୍ତ ଥିଲେ ଓ କେତେକ ଧର୍ମ ସଂପ୍ରଦାୟରେ ବାହ୍ୟାଚାରର ପ୍ରାବଲ୍ୟ ଥିଲା । ସମାଜରେ ନାନାପ୍ରକାର କପଟ ବେଶ ଧାରଣକରି ଲୋକମାନଙ୍କୁ ନାନା ଭାବରେ ଠକୁଥିବା ସାଧୁସନ୍ଥ ମାନଙ୍କ ବିରୁଦ୍ଧରେ ଅଚ୍ୟୁତାନନ୍ଦ ଦୃଢ଼ ଭାବରେ ସ୍ୱର ଉତ୍ତୋଳନ କରିଛନ୍ତି । ସେପରି କପଟୀ ସାଧୁସନ୍ଥମାନଙ୍କ ସ୍ୱରୂପ ସଂପର୍କରେ ସେ କୁହନ୍ତି-

*"ପାଷଣ୍ଡ ବିଲୋପନ ଦର୍ଶନ ଧାରୀ*
*ଗୃହ ଉପେକ୍ଷି ହୋନ୍ତି ବନଚାରୀ ।*
*ଥୋକାଏ ଦମ୍ଭେ ଦେଶାନ୍ତର ଯାନ୍ତି*
*ସାଖି ଶବଦରେ ଥୋକାଏ ଥାନ୍ତି ।*
*କନ୍ଥା କଉପୁନୀ ଶଙ୍ଖଚକ୍ର କାଟି*
*କେହୁ ଦିଗାମ୍ବର ପିନ୍ଧେ କର୍ପଟି ।*

*କେବା ସହସ୍ରେନାମ ଉଚ୍ଚାରଇଟି*
*ଅନ୍ନ ଛାଡ଼ି କେବା ଦୁଧ ପିଅଚି ।*
*ଅନେକ ମତେ ଜଳର୍ଥିନ୍ତି କାୟେ*
*ମୃତ୍ୟୁ ବଞ୍ଚିବାକୁ ନାହିଁ ଉପାୟେ ।''*

*(ଚାରିଖାନି- ୧ମ ଖାନି)*

ଅଚ୍ୟୁତାନନ୍ଦ ଜାତିଭେଦ ପ୍ରଥାର ଘୋର ବିରୋଧୀ ଥିଲେ । ବିଭିନ୍ନ ଜାତିର ଭକ୍ତମାନଙ୍କୁ ଶିଷ୍ୟଭାବରେ ଗ୍ରହଣ କରି ସେ ଏହାର ସଫଳ ଦୃଷ୍ଟାନ୍ତ ରଖିଯାଇଛନ୍ତି । ତାଙ୍କର ଶିଷ୍ୟ ମାନଙ୍କ ମଧ୍ୟରେ ଥିଲେ କମାର, କୁମ୍ଭାର, ବଣିକ, ଗୋପାଳ, ବ୍ରାହ୍ମଣ ଆଦି ଜାତିର ଭକ୍ତମାନେ । ସେ ନିଜେ ଶୂଦ୍ର କୂଳରେ ଜାତ ହୋଇଥିବା କଥା ସ୍ୱୀକାର କରିଛନ୍ତି । ଗୋପାଳଙ୍କ ଓଗାଳରେ ସେ ଗୋପାଳ ଓ ଭାବନାବରରେ ସେ କମାର ବୋଲି ବର୍ଣ୍ଣିତ ହୋଇଥିଲେ ହେଁ ବହୁ ଗ୍ରନ୍ଥରେ ସେ ଶୂଦ୍ର କୂଳରେ ଜାତ ହୋଇଥିବା କଥା କୁହାଯାଇଛି । ଜନ୍ମ ଶରଣରେ ତାଙ୍କୁ ପ୍ରଭୁଙ୍କର ଆଜ୍ଞା ଥିଲା ଶୂଦ୍ରକୂଳରେ ଜନ୍ମ ହେବାପାଇଁ ।

*''ଶୂଦ୍ର କୁଳେ ଜାତ ହୋଇଣ*
*ବାଞ୍ଛିଲା ଫଳକୁ ପାଅ ।''*

ସେ ଜାତିଭେଦ ପ୍ରଥାକୁ ସ୍ୱୀକାର ନକରି ସମାଜରେ ଏକ ବୈପ୍ଳବିକ ପରିବର୍ତ୍ତନ ଆଣିବା ପାଇଁ ଉଦ୍ୟମ କରିଥିଲେ । ସେଥିପାଇଁ ହାଡ଼ି ଓ ଶ୍ରୀକୃଷ୍ଣଙ୍କ ମଧ୍ୟରେ କୌଣସି ପାର୍ଥକ୍ୟ ସେ ଦେଖିନାହାନ୍ତି ।

*''ହାଡ଼ି ବୋଲି କରି ଯାହା ପୁଚ୍ଛିଲୁ ଅର୍ଜୁନ*
*ମୋର ବ୍ୟତ୍ରିକେ ସେହୁ ନୋହଇଟି ଆନ ।''*

*(କୈବର୍ତ୍ତ ଗୀତା)*

ସେହିପରି 'ଚାରିଖାନି'ରେ ବ୍ରାହ୍ମଣ ଓ ଛାଗଳ ମଧ୍ୟରେ ତୁଳନା କରିବା ବେଳେ ସେ ବ୍ରାହ୍ମଣ ଜାତିର ନିକୃଷ୍ଟତା ତଥା ବେଦପାଠର ନିଃସାରତା ପ୍ରତିପାଦନ କରିଛନ୍ତି । ଅପରପକ୍ଷରେ ସେ ଛାଗଳକୁ ଉଚ୍ଚସ୍ଥାନ ଦେଇଛନ୍ତି । ତାଙ୍କ ମତରେ-

*''ଛାଗଳ ଛେଦ ଭୋଜନକୁ ନିତ୍ୟ*
*ବ୍ରାହ୍ମଣ ମଡ଼ା ଛୁଇଁଲେ ପତିତ ।*
*ବେଦ ମନ୍ତ୍ର ପଢ଼ି ଏ ମଡ଼ା ଯେତେ*
*ଦୁବ ତୃଣ ଭକ୍ଷି ସେ ମଡ଼ା ତେତେ ।''*

ଏହି ଶରୀର ହେଉଛି ତୀର୍ଥ, ବ୍ରତ, ତପସ୍ୟାର ମୂଳକଥା । ମନର ପବିତ୍ରତା ବା ଚିତ୍ତଶୁଦ୍ଧିକୁ ବୁଦ୍ଧଦେବଙ୍କ ଠାରୁ ପଞ୍ଚସଖାଙ୍କ ପର୍ଯ୍ୟନ୍ତ ସମସ୍ତେ ମୁକ୍ତ କଣ୍ଠରେ ସ୍ୱୀକାର କରିଛନ୍ତି । କୌଣସି ତୀର୍ଥ ପର୍ଯ୍ୟଟନ, ବ୍ରତ ଆଚରଣ ଓ ଉପାସନା ଅପେକ୍ଷା ଶରୀର ସାଧନାକୁ ଅଚ୍ୟୁତାନନ୍ଦ ମଧ୍ୟ ଗୁରୁତ୍ୱ ଦେଇଛନ୍ତି । ତାଙ୍କ ମତରେ-

*''ବ୍ରତ ଉପାସନା ତୀର୍ଥ ଗମନ । ଶରୀର ଜଦର୍ଥ ନାନା ବିଧିମାନ*
*ଦେବ ପୁରାଣ ଏହା ଘେନି ମଣ୍ଡି । ପୁଣ୍ୟ ପର ଯେବେ ମୃତ୍ୟୁ ନ ଖଣ୍ଡି ।''*

*(ଚାରିଖାନି)*

ଅଚ୍ୟୁତାନନ୍ଦ କାୟା ସାଧନା ଉପରେ ଗୁରୁତ୍ୱ ଦେଇ ଶରୀରକୁ ସାଧନାର ଉପଯୋଗୀ କରିବା ପାଇଁ ଉପଦେଶ ଦେଉଥିଲେ । ତେଣୁ ସେ ମୂର୍ତ୍ତି ପୂଜାର ବିରୋଧ କରୁଥିଲେ । ତାଙ୍କ ମତରେ ବାହାରର କୌଣସି ଅଜୀବ ମୂର୍ତ୍ତିକୁ ପୂଜା କରିବା ଅପେକ୍ଷା ଏହି ଦେହ ମଧ୍ୟରେ ଥିବା ସଜୀବ ଦେବତାକୁ ପୂଜା କରିବା ଉଚିତ । ତେଣୁ ସେ କହୁଥିଲେ-

*''ସଜୀବ ଦେବତା ଆପେ ନ ବୁଝଇ*
*ଅଜାଣ ପଣେ ଅଜୀବ ପୂଜଇ ।*
*ଏ ଯେବେ ସଂପ୍ରତେ ଯିବ ଯେହାକୁ*
*ଆପଣେ ଶମ୍ଭୁ ପୂଜିବ କାହାକୁ ।''*

*(ଚାରିଖାନି- ୩ୟ ଖାନି)*

ପୁଣି-

*''ଦୁର୍ଲ୍ଲଭ ଏ ନରଘଟ ଏଥୁ ଶ୍ରେଷ୍ଠ ନାହିଁ*
*ଘଟକୁ ଛାଡ଼ିଲେ ମନ ପାଇବୁ ତୁ କାହିଁ ।*
*ଜଗତେ ପୂରିଛି ସେହି ନ ଦେଖନ୍ତି କେହି*
*ପ୍ରତିମା ପିତୁଳା ପୂଜି ହେଉଥାନ୍ତି ବାଇ ।''*

*-ପରମଜ୍ଞାନ ଗୀତା*

ସଂସାରରେ ମଣିଷ ହେଉଛି ଶ୍ରେଷ୍ଠଜୀବ । ପଶୁଜାତୀୟ ଇତର ପ୍ରାଣୀମାନେ ଭଲ ମନ୍ଦ ଜାଣିପାରୁନଥିବା ବେଳେ ମଣିଷ ଏସବୁ ଜାଣିପାରେ ଜ୍ଞାନ ବଳରେ । ଦୁର୍ଲ୍ଲଭ ମାନବ ଶରୀରକୁ ଯୁଗେଯୁଗେ ସାଧୁସନ୍ଥମାନେ ସ୍ୱୀକାର କରିଛନ୍ତି । କିନ୍ତୁ ମାନବ ଜନ୍ମର ପ୍ରକୃତ ସାର୍ଥକତା ରହିଛି କର୍ମରେ । କର୍ମରୁ ହିଁ ଜ୍ଞାନ ଜାତ ହୁଏ ଓ ଅଜ୍ଞାନତା ବି ଜାତ ହୁଏ । ଯେ ଭଲ କର୍ମ କରେ ସେ ଭଲ ଫଳ ପାଏ ଆଉ ଯେ ମନ୍ଦ କର୍ମ କରେ ସେ ମନ୍ଦଫଳ ପାଇଥାଏ । ସେଥିପାଇଁ ବୁଦ୍ଧଦେବ ମଣିଷର କର୍ମ ବା ଆଚରଣ

ଉପରେ ସର୍ବଦା ଗୁରୁତ୍ୱ ଦେଉଥିଲେ । ସେ ମଣିଷର ଜାତି ବା ଉଚ୍ଚନୀଚ ଭେଦଭାବକୁ ସ୍ୱୀକାର କରୁ ନଥିଲେ । ଅଚ୍ୟୁତାନନ୍ଦ ସେହିପରି କର୍ମ ଉପରେ ଗୁରୁତ୍ୱ ଦେଇ କହିଛନ୍ତି-

*''ଜଳା କରମ ଚିରକାଳ ଥାଇ*
*କାରେଣୀ ଲୋକ କହୁଁ କହୁଁ ଯାଇ ।''*

*(ଚାରିଖାନି- ୨ୟ ଖାନି)*

ସମାଜରେ ପ୍ରତ୍ୟେକ ବ୍ୟକ୍ତିର କର୍ତ୍ତବ୍ୟ ସ୍ଥିର କରାଯାଇଛି । ଜଣେ ଯଦି ନିଜର କର୍ତ୍ତବ୍ୟ ଠିକ୍ ଭାବରେ ସଂପାଦନ ନ କରେ, ତା'ହେଲେ ସମାଜରେ ଅବ୍ୟବସ୍ଥା ଦେଖାଯିବ ଓ ସବୁକିଛି ବିଭ୍ରାଟ ହୋଇଯିବ । ତେଣୁ ପ୍ରତ୍ୟେକ ବ୍ୟକ୍ତି ସୁଚାରୁ ରୂପେ ନିଜର କର୍ତ୍ତବ୍ୟ ସଂପାଦନ କରିବା ପାଇଁ ସେ ପରାମର୍ଶ ଦେଇଛନ୍ତି । କ୍ଷତ୍ରିୟ, ରୋଗୀ, ବ୍ରାହ୍ମଣ,ସ୍ୱାମୀ, ବୈଷ୍ଣବ, କୁଳସ୍ତ୍ରୀ, ରାଜା, ଶିଷ୍ୟ ଆଦିଙ୍କର କର୍ତ୍ତବ୍ୟ ସଂପର୍କରେ ସେ କହିଛନ୍ତି-

*''କ୍ଷତ୍ରୀ ହୋଇଣ ଯଦ୍ୟପି ସଂଗ୍ରାମେ ଡରିବ*
*ବ୍ରାହ୍ମଣ ହୋଇଣ ଯେବେ ବେଦ ନ ପଢ଼ିବ ।*
*ରୋଗୀ ହୋଇଣ ବୈଦ୍ୟକୁ କରେ ଯେବେ ରୋଷ*
*ସେବକ ହୋଇ ସ୍ୱାମୀର ଯେବେ ଅବିଶ୍ୱାସ ।*
*ବୈଷ୍ଣବ ହୋଇଣ ଯେବେ ହେବ କ୍ରୋଧଧାରୀ*
*କୁଳସ୍ତିରୀ ହୋଇ ଯେବେ ହୋଇବ ଦୋଚାରୀ ।*
*ସଭାପଣ୍ଡା ହୋଇ କହେ ସଭା ମଧ୍ୟେ ମିଛ*
*ରାଜା ହୋଇ ଯେବେ କରେ ପ୍ରଜାକୁ ଅରକ୍ଷ ।*
*ଶିଷ୍ୟ ହୋଇ ଯେବେ ଗୁରୁ ନିନ୍ଦେ ମତି ଭୋଳେ*
*ଏମାନେ ନର୍କେ ପଡ଼ନ୍ତି ଜାଣ ଅତକାଳେ ।*

*(ହରିବଂଶ- ୧ମ ଖଣ୍ଡ)*

ଅଚ୍ୟୁତାନନ୍ଦ ଥିଲେ ସତ୍ୟର ପୂଜାରୀ । ସଂସାରର ସବୁକିଛି ନୀତି ନିୟମ ସତ୍ୟ ଉପରେ ପ୍ରତିଷ୍ଠିତ ଓ ସତ୍ୟକୁ ଆଧାର କରି ସବୁକିଛି ଚାଲିଛି । ସତ୍ୟ ଯୋଗୁଁ ଚନ୍ଦ୍ର ସୂର୍ଯ୍ୟ ଆତଯାତ ହେଉଛନ୍ତି । ପୃଥିବୀ ଶସ୍ୟ ଶ୍ୟାମଳା ହେଉଛି । ସମୁଦ୍ର କୂଳ ଲଂଘି ପାରୁନାହିଁ ଓ ମେଘମାନେ ବର୍ଷା କରୁଛନ୍ତି । ଏପରିକି ପାହାଡ଼, ପର୍ବତ, ତିଥି, ନକ୍ଷତ୍ର, ପବନ ସବୁକିଛି ସତ୍ୟ ଦ୍ୱାରା ହିଁ ପରିଚାଳିତ । ସତ୍ୟ ଉପରେ ଥିବା ନିଜର ଦୃଢ଼ ବିଶ୍ୱାସକୁ ଅଚ୍ୟୁତାନନ୍ଦ ଏହିପରି ଭାବରେ ପ୍ରକାଶ କରିଛନ୍ତି ।

*"ସତ୍ୟରେ ସଂସାର ହେଉଅଛି ଆତଯାତ*
*ପନ୍ଦର ତିଥି ସତୈଶ ନକ୍ଷତ୍ର ଯାବତ ।*
*ସତ୍ୟରେ ପୃଥିବୀ ହେଉଅଛି ଶସ୍ୟଫଳ*
*ସତ୍ୟରେ ମେଘମାନେ ଯେ ବର୍ଷନ୍ତି ସଳିଳ ।"*

*(ହରିବଂଶ- ଷଷ୍ଠ ଖଣ୍ଡ)*

ବିଭିନ୍ନ କ୍ଷେତ୍ରରେ କେତେକ ନିର୍ଦ୍ଦିଷ୍ଟ ନୀତି ନିୟମ ରହିଥିବା କଥା ଦର୍ଶାଇ ସେ ସବୁକୁ କଡ଼ାକଡ଼ି ଭାବେ ପାଳନ କରିବା ଉଚିତ ବୋଲି ଅଚ୍ୟୁତାନନ୍ଦ କହିଛନ୍ତି । ହରିବଂଶରେ ସେ ରଣନୀତି ସଂପର୍କରେ ବର୍ଣ୍ଣନା କରିଛନ୍ତି ଯେ ସଂଗ୍ରାମ ସମୟରେ ଯାହାର ଧନୁଭଂଗ, ରଥଭଗ୍ନ, କେଶ ମୁକୁଳା ହୋଇଥିବ ତାକୁ ବଧ କରିବା ଉଚିତ୍ ନୁହେଁ । ରଣଭୂମିରେ ଅଜ୍ଞାନ ବ୍ୟକ୍ତି ପ୍ରତି ଶତ୍ରୁତା ଆଚରଣ କରିବା ଉଚିତ୍ ନୁହେଁ । ସେହିପରି ଅଳ୍ପ ଭିତରେ ଥିବା ମହାନ୍ ବ୍ୟକ୍ତିର ବିଶେଷତ୍ୱ ପ୍ରତିପାଦନ କରି ସେ କହିଛନ୍ତି-

*"ଅଳପ ଚାଖିଲେ ଜାଣି ଅମୃତର ସ୍ୱାଦ*
*ଅଳପ ଘେନନ୍ତି ଲୋକେ ଶିବଙ୍କ ପ୍ରସାଦ ।*

x x x x x

*ଅଳପ ଅନଳ ପାରେ ସୃଷ୍ଟି ଧ୍ୱଂସ କରି*
*ଅଳପ ପ୍ରୀତିରେ ବୋଧ କରିଗଲେ ହରି ।*
*ଅଳପ ମଣିର ମୂଲ୍ୟ ପାଇ ବହୁ ଧନ*
*ଅଳପ ଭକ୍ତିରେ ତୋଷ ହୁନ୍ତି ଭଗବାନ ।"*

*(ହରିବଂଶ- ୫ମ ଖଣ୍ଡ)*

ସେ କେତେକ ପଦାର୍ଥର ଶ୍ରେଷ୍ଠତ୍ୱ ବର୍ଣ୍ଣନା କରିଛନ୍ତି । ସେଥିରୁ ଜଣାଯାଏ ଯେ ପାଠ ମଧ୍ୟରେ ବ୍ୟାକରଣ, ଶାସ୍ତ୍ର ମଧ୍ୟରେ ଗୀତା, ବେଦରେ ଓଁକାର, ପୂଜା ମଧ୍ୟରେ ଗୁରୁ, ଭୋଜନକୁ ମାତା ଓ ସ୍ନେହରେ ପିତା ଏବଂ ଭୋଜନରେ ମହାପ୍ରସାଦ ସାର ଅଟେ ।

(ଗୁ.ଭ.ଗୀ.- ୧ମ ଖଣ୍ଡ)

ଏହିପରି ଦେଖି ବସିଲେ ଅଚ୍ୟୁତାନନ୍ଦ ନାନା ପ୍ରସଙ୍ଗରେ ବହୁ ନୀତି ଉପଦେଶ ପ୍ରଦାନ କରିଛନ୍ତି ଯାହାକି ସମାଜର ଅଶେଷ ମଙ୍ଗଳ ସାଧନ କରୁଛି । ଆଗତ ଭବିଷ୍ୟ କଥନ ତାଙ୍କ ପାଣ୍ଡିତ୍ୟର ଅନ୍ୟ ଏକ ପ୍ରମୁଖ ବିଭାବ । ସେ ତ୍ରିକାଳଦର୍ଶୀ ହୋଇଥିବାରୁ ଭବିଷ୍ୟତର ଘଟଣା ସବୁ ପ୍ରକାଶ କରିପାରୁଥିଲେ ଓ ତାଙ୍କର ଭବିଷ୍ୟତ ମାଳିକାକୁ ଲୋକେ ଏବେ ମଧ୍ୟ ଧ୍ରୁବସତ୍ୟ ବୋଲି ଗ୍ରହଣ କରୁଛନ୍ତି । ସମାଜକୁ ଅନ୍ୟାୟ,

ଅନୀତି, ବ୍ୟଭିଚାର ଦାଉରୁ ରକ୍ଷା କରିବା ପାଇଁ ମାଳିକା ଥିଲା ତାଙ୍କର ସଫଳ ପ୍ରୟାସ । କଳିଯୁଗରେ ବ୍ରାହ୍ମଣମାନେ ମନ୍ତ୍ରଛାଡ଼ି ଗୁଣି ଗାରେଡ଼ିରେ ମାତିବେ । ଲୋକେ ସୁରାପାନ କରି କପଟରେ ଭକ୍ତ ବୋଲାଇବେ । ବୈଷ୍ଣବମାନେ ନାମ ନଜାଣି ମାଳା ପିନ୍ଧିବେ । ଶିଷ୍ୟମାନେ ଗୁରୁଙ୍କୁ ମାନିବେ ନାହିଁ । ବାୟୁ, ଜଳ ଓ ଅନଳ ଦ୍ୱାରା ପୁରସବୁ ନଷ୍ଟଭ୍ରଷ୍ଟ ହେବ । ଛନ୍ଦ, ମାୟା, ଦ୍ୱନ୍ଦ୍ୱ, ବାଦ, ହିଂସା ଆଦି ସଂସାରରେ ବଢ଼ିଯିବ । ପୁଣି

*''ଗୃହସ୍ଥ ଭାରିଯା ଛାଡ଼ିବେ । ପେଟ ନ ପୂରି ବୁଲୁଥିବେ ।*
*ପୁତ୍ରକୁ ବିକିବ ଯେ ବାପ । କଳି କାଳର ବଡ଼ ତାପ ।*
*ପରଜା ଧନ ରାଜା ନେବ । ନିର୍ଦ୍ଦୟା ଦ୍ବନ୍ଦେଣ ମାରିବ ।*
*ଗୁରୁଙ୍କୁ ଶିଷ୍ୟ ଅବିଶ୍ୱାସ । ପିତା ପୁତ୍ରକୁ ଦେବ ବିଷ ।*
*ଭାଇ ଭଉଣୀ ରଚି ରଙ୍ଗ । ମଦିରା ପାନରେ ତରଙ୍ଗ ।''*

*-ଗୁରୁଭକ୍ତିଗୀତା- ୩ୟ/ ୧୧ ପଟଳ*

ଏହିପରି ସାମାଜିକ ସ୍ତରରେ ବହୁ ଅନୀତି ଓ ବ୍ୟଭିଚାରର ଚିତ୍ର ଅତି ସ୍ପଷ୍ଟଭାବରେ ତାଙ୍କ ରଚନାରେ ବର୍ଣ୍ଣିତ ହୋଇଛି । ଏପରିକି କେଉଁଦିନ କେଉଁ ସମୟରେ କେଉଁଠାରେ କ'ଣ କ'ଣ ସବୁ ବିପର୍ଯ୍ୟୟ ଘଟିବ ତାହା ମଧ୍ୟ ସେ ପ୍ରକାଶ କରିଛନ୍ତି । ସାଧାରଣ ଲୋକଙ୍କ ଦୁଃଖଦୁର୍ଦ୍ଦଶା ତଥା ଦୁରାବସ୍ଥା ଦେଖି ସେ କେତେ ବ୍ୟତିବ୍ୟସ୍ତ ହୋଇ ପଡ଼ିଥିଲେ ତାହା ଏଥିରୁ ସହଜରେ ଅନୁମାନ କରାଯାଇପାରେ । ଆଉ ସେ ଲୋକଙ୍କୁ ପାପପୂର୍ଣ୍ଣ-ପଙ୍କିଳ ସଂସାରରୁ ଉଦ୍ଧାର କରିବା ପାଇଁ ଆପ୍ରାଣ ଉଦ୍ୟମ କରିଥିଲେ । ବାସ୍ତବରେ ସେ ଥିଲେ ଜଣେ ମହାପୁରୁଷ । ତାଙ୍କର କଥା କାର୍ଯ୍ୟ ମଧ୍ୟରେ କୌଣସି ପାର୍ଥକ୍ୟ ନଥିଲା । ସେ ଯେପରି ଉପଦେଶମାନ ପ୍ରଦାନ କରୁଥିଲେ ସେହିପରି ସେ ସବୁକୁ ନିଜେ କାର୍ଯ୍ୟରେ କରି ଦେଖାଉଥିଲେ । ସାଧୁ, ସନ୍ଥ, ମହାତ୍ମା ବୈଷ୍ଣବ ପ୍ରଭୃତିଙ୍କର ଯେଉଁସବୁ ଲକ୍ଷଣ ସେ ବର୍ଣ୍ଣନା କରିଛନ୍ତି, ସେସବୁ ଲକ୍ଷଣ ତାଙ୍କଠାରେ ହିଁ ପରିପୂର୍ଣ୍ଣ ଭାବରେ ପରିଲକ୍ଷିତ ହେଉଥିଲା । ଜଣେ ଦିବ୍ୟଦ୍ରଷ୍ଟା ମହାପୁରୁଷ ଭାବରେ ସମାଜ ପ୍ରତି ତାଙ୍କର ଦୃଷ୍ଟିଭଙ୍ଗୀ ଥିଲା ଅନନ୍ୟ ସାଧାରଣ । ସତ୍ୟ, ଅହିଂସା, ଧର୍ମ, ଦୟା, କ୍ଷମା, ଆଦି ସଦ୍‌ଗୁଣରେ ପରିପୂର୍ଣ୍ଣ ଏକ ବଳିଷ୍ଠ ସୁସ୍ଥ ସମାଜଗଠନ ହିଁ ଥିଲା ତାଙ୍କର ଏକମାତ୍ର ଉଦ୍ଦେଶ୍ୟ । ସେଥିପାଇଁ ସେ ସମାଜରେ ଯେଉଁଠି କିଛି ଦୋଷ ଦୁର୍ବଳତା ଦେଖୁଥିଲେ ତାର ନିରାକରଣ ପାଇଁ ଜଣେ ବିପ୍ଳବୀ ଭାବରେ ଆଜୀବନ ସଂଗ୍ରାମ କରିଥିଲେ ।



# ଉପସଂହାର

ମହାପୁରୁଷ ଅଚ୍ୟୁତାନନ୍ଦ ଏକାଧାରରେ କବି, ଭକ୍ତ, ସାଧକ, ଭବିଷ୍ୟତ ଜ୍ଞାତା ଓ ଦାର୍ଶନିକ ଭାବରେ ଷୋଡ଼ଶ ଶତାବ୍ଦୀରେ ପ୍ରସିଦ୍ଧି ଲାଭ କରିଥିଲେ । ଅଜସ୍ର ରଚନା ତାଙ୍କ ଲେଖନୀରୁ ସୃଷ୍ଟି ହୋଇଥିଲେ ମଧ୍ୟ 'ହରିବଂଶ'କୁ ତାଙ୍କର ଶ୍ରେଷ୍ଠ କୃତି ଭାବରେ ଗ୍ରହଣ କରାଯାଏ । ଓଡ଼ିଶାରେ ମାଳିକା ରଚନା ହେଉଛି ତାଙ୍କର ଅନ୍ୟତମ ବିଶେଷତ୍ୱ । ଦିବ୍ୟଦ୍ରଷ୍ଟା ସାଧକ ରୂପେ ସେ ମାଳିକାରେ ଯାହାସବୁ କହି ଯାଇଛନ୍ତି ସେଥିମଧ୍ୟରୁ ଅଧିକାଂଶ ଘଟଣା ଘଟି ଯାଇଛି ଓ ବାକି ସବୁ ଭବିଷ୍ୟରେ ଘଟିବ ବୋଲି ଲୋକଙ୍କର ଦୃଢ଼ ବିଶ୍ୱାସ । ସେଥିପାଇଁ ଅଚ୍ୟୁତାନନ୍ଦଙ୍କ ତାଳପତ୍ର ଖେଦାକୁ ଲୋକେ ଅକ୍ଷରେ ଅକ୍ଷରେ ସତ ବୋଲି ଗ୍ରହଣ କରିଥାନ୍ତି । ସେ ଜ୍ଞାନମାର୍ଗୀୟ ସାଧକ ଥିଲେ ମଧ୍ୟ ପ୍ରଭୁ ଜଗନ୍ନାଥଙ୍କର ପରମ ଭକ୍ତ ଥିଲେ । ସେ ସର୍ବଦା ନିଜକୁ ଜଗନ୍ନାଥଙ୍କର ସେବକ, ଭୃତ୍ୟ, ଦାସ ବୋଲି ପ୍ରକାଶ କରୁଥିଲେ ।

ସେ ଜଗନ୍ନାଥଙ୍କୁ ଆରାଧ୍ୟ ଦେବତା ରୂପେ ଗ୍ରହଣ କରିଥିଲେ ମଧ୍ୟ ଶ୍ରୀକୃଷ୍ଣ ଓ ଜଗନ୍ନାଥଙ୍କ ମଧ୍ୟରେ କୌଣସି ପାର୍ଥକ୍ୟ ପରିକଳ୍ପନା କରୁନଥିଲେ । ତାଙ୍କ ମତରେ ଯିଏ ଜଗନ୍ନାଥ ସିଏ ହିଁ କୃଷ୍ଣ । ସେ ବୈଷ୍ଣବ ଧର୍ମାବଲମ୍ବୀ ଥିଲେ ମଧ୍ୟ ଅନ୍ୟ କୌଣସି ଧର୍ମକୁ ଘୃଣା କରୁନଥିଲେ । ତାଙ୍କ ମତରେ ସବୁ ଧର୍ମ ହେଉଛି ସମାନ । ସେଥିପାଇଁ ସେ ଜାତିଭେଦ ପ୍ରଥାକୁ ଘୃଣା କରୁଥିଲେ ଓ ବିଭିନ୍ନ ଜାତିର ଲୋକଙ୍କୁ ନିଜର ଶିଷ୍ୟଭାବରେ ଗ୍ରହଣ କରିଥିଲେ । ସେ ଥିଲେ ଗୋପାଳ ଜାତିର ଗୁରୁ ଓ ତ୍ରାଣକର୍ତ୍ତା । ଅଧଃପତିତ ମାନବ ସମାଜକୁ ଉଦ୍ଧାର କରିବା ପାଇଁ ସତେ ଯେପରି ସେ ଆବିର୍ଭୂତ ହୋଇଥିଲେ । ସମାଜରେ ଚାଲିଥିବା ବ୍ୟଭିଚାର, ହିଂସା, ଦ୍ୱେଷ, ପରଶ୍ରୀକାତରତା ଆଦି କଳୁଷିତ ବ୍ୟବସ୍ଥାକୁ ଦେଖି ସେ ଧର୍ମ ମାର୍ଗରେ ପରିଚାଳିତ ଏକ ଆଚାରଶୀଳ ସୁସ୍ଥ ସମାଜ ଗଠନ କରିବା ପାଇଁ ଆପ୍ରାଣ ଉଦ୍ୟମ କରିଥିଲେ ।

ସମାଜରେ ଧର୍ମ ନାଆଁରେ ଚାଲିଥିବା ଭ୍ରଷ୍ଟାଚାର, ସାଧୁବେଶଧାରୀ ଭଣ୍ଡମାନଙ୍କର ଅଧର୍ମକାର୍ଯ୍ୟ, ବିଭିନ୍ନ ଧର୍ମ ସଂପ୍ରଦାୟରେ ପ୍ରଚଳିତ ବାହ୍ୟାଚାରର ପ୍ରାବଲ୍ୟ ଆଦିକୁ ସେ ତୀବ୍ର ଭାବରେ ସମାଲୋଚନା କରିଛନ୍ତି ।

ଓଡ଼ିଶାରେ ସେ ଥିଲେ ରାସଲୀଳାର ସ୍ରଷ୍ଟା । ଗୋପାଳବାଳକମାନଙ୍କୁ ନେଇ ସର୍ବତ୍ର ସେ ରାସଲୀଳା ପ୍ରଦର୍ଶନ କରୁଥିଲେ । କେବଳ ଲୋକଙ୍କର ମନୋରଞ୍ଜନ କରିବା ଏହାର ଉଦ୍ଦେଶ୍ୟ ନଥିଲା । ଏହାର ମୁଖ୍ୟ ଉଦ୍ଦେଶ୍ୟ ଥିଲା ଲୋକଙ୍କୁ ଧର୍ମ ମାର୍ଗରେ ପରିଚାଳିତ କରି ନୀତି ଉପଦେଶ-ସଦାଚାର ଶିକ୍ଷା ଦେବା । ନାରୀଜାତିର ଉତ୍‌ଥାନ ପାଇଁ ସେ ସ୍ୱତନ୍ତ୍ର ଭାବରେ ଦୃଷ୍ଟି ଦେଉଥିଲେ । ପୂର୍ବରୁ ନାରୀ ଓ ଶୂଦ୍ରମାନେ ପୁରାଣ ପାଠ ଓ ଶ୍ରବଣରୁ ବଞ୍ଚିତ ଥିଲେ । କିନ୍ତୁ ଏ କ୍ଷେତ୍ରରେ ପଞ୍ଚସଖା ଅବହେଳିତ ନାରୀ ଜାତିର ଉତ୍‌ଥାନ ପାଇଁ ଯେଉଁ ବିପ୍ଳବ କରିଥିଲେ ସେଥିରେ ମହାପୁରୁଷ ଅଚ୍ୟୁତାନନ୍ଦ ପ୍ରମୁଖ ଭୂମିକା ଗ୍ରହଣ କରିଥିଲେ । ନାରୀ ନିର୍ଯ୍ୟାତନା ତଥା ଦାରିଦ୍ର୍ୟ ବିରୁଦ୍ଧରେ ସେ ଯେପରି ଭାବରେ ବିଭିନ୍ନ ଗ୍ରନ୍ଥରେ ଦୃଢ଼ ସ୍ୱର ଉତ୍ତୋଳନ କରିଛନ୍ତି ସେଥିରୁ ସେ ଜଣେ ସମାଜ ସଂସ୍କାରକ ଥିବା କଥା ଜଣାପଡ଼େ ।

କାୟା ସାଧନା ଉପରେ ଅଚ୍ୟୁତାନନ୍ଦ ଅଧିକ ଗୁରୁତ୍ୱାରୋପ କରିଛନ୍ତି । ଏହି ଶରୀର ହେଉଛି ତୀର୍ଥ, ବ୍ରତ, ତପସ୍ୟାର ମୂଳକଥା । ତେଣୁ କୌଣସି ତୀର୍ଥ ପର୍ଯ୍ୟଟନ, ବ୍ରତ ଆଚରଣ ଓ ଉପାସନା ଅପେକ୍ଷା ଶରୀର ସାଧନାକୁ ସେ ଅଧିକ ପ୍ରାଧାନ୍ୟ ଦେଉଥିଲେ । ମୂର୍ତ୍ତିପୂଜା କରିବା ଅପେକ୍ଷା ଦେହ ମଧ୍ୟରେ ଥିବା ସଜୀବ ଦେବତାକୁ ପୂଜା କରିବା ଉଚିତ ବୋଲି ସେ କହୁଥିଲେ । ତେଣୁ ନାନା ପ୍ରକାର ଯୋଗ ସାଧନା ଦ୍ୱାରା ଆତ୍ମଶୁଦ୍ଧି କରିବା ଥିଲା ତାଙ୍କର ପ୍ରଧାନ ଉଦ୍ଦେଶ୍ୟ । ସେଥିପାଇଁ ଶରୀରକୁ ସାଧନାର ଉପଯୋଗୀ କରିବା ପାଇଁ ସର୍ବତ୍ର ସେ ଉପଦେଶ ପ୍ରଦାନ କରି ଯାଇଛନ୍ତି ।

ସେ ସତ୍ୟର ପୂଜାରୀ ଥିବାରୁ ସମାଜରେ ସବୁକିଛି ନୀତି-ନିୟମ ଓ ସତ୍ୟ ଉପରେ ପ୍ରତିଷ୍ଠିତ ବୋଲି କହୁଥିଲେ । ତାଙ୍କ ମତରେ ସମାଜର ପ୍ରତ୍ୟେକ ବ୍ୟକ୍ତି ଯିଏ ଯେଉଁ ସ୍ତରରେ ଥାଆନ୍ତୁନା କାହିଁକି ନିଜର କର୍ତ୍ତବ୍ୟ ଠିକ୍ ଭାବରେ ସଂପାଦନ କରିବା ଉଚିତ । ସେ ଏପରି ନିର୍ଭୀକ ଥିଲେ ଯେ ସମାଜରେ ପ୍ରତିଷ୍ଠା ଲାଭ କରିଥିବା ବ୍ରାହ୍ମଣମାନଙ୍କ ବିରୁଦ୍ଧରେ ମଧ୍ୟ ସ୍ୱର ଉତ୍ତୋଳନ କରିଥିଲେ । ଏପରିକି ଉଚ୍ଚ ପଦ ପଦବୀରେ ଥିବା ବ୍ୟକ୍ତିମାନଙ୍କର ଦୋଷତ୍ରୁଟି ଦେଖିଲେ ସେ ସମାଲୋଚନା ନକରି ଛାଡୁ ନଥିଲେ ।

ମୋଟାମୋଟି ଭାବରେ କହିବାକୁ ଗଲେ ଷୋଡ଼ଶ ଶତାବ୍ଦୀରେ ଓଡ଼ିଶାର ସାମାଜିକ ଅବସ୍ଥା ଥିଲା ପତନମୁଖୀ । ଅନ୍ୟାୟ, ଅତ୍ୟାଚାର, ଜାତିଭେଦ ପ୍ରଥା, ଧର୍ମ ନାଆଁରେ କଳୁଷିତ ଅଧର୍ମ ବ୍ୟବସ୍ଥା, କୁସଂସ୍କାର, ନିର୍ଯ୍ୟାତନା ଆଦି ସମାଜରେ ଘୋର ସଂକଟ ସୃଷ୍ଟି କରିଥିଲା । ଏହିପରି ଏକ ଘଡ଼ିସନ୍ଧି ଅବସ୍ଥାରେ ଓଡ଼ିଶା ମାଟିରେ ପାଦ

ଦେଇଥିଲେ ମହାପୁରୁଷ ଅଚ୍ୟୁତାନନ୍ଦ । ସଂକଟମୟ ପରିସ୍ଥିତିରେ ଓଡ଼ିଶାକୁ ଦାରୁଣ ବିପର୍ଯ୍ୟୟରୁ ରକ୍ଷା କରିଥିଲେ ସେ ତ୍ରାଣକର୍ତ୍ତା ହୋଇ । ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କ ଅପାର କରୁଣାରୁ ଏହା ସମ୍ଭବ ହୋଇ ପାରିଥିଲା । ଶ୍ରୀଜଗନ୍ନାଥଙ୍କୁ ଭକ୍ତିଡ଼ୋରିରେ ବାନ୍ଧି ତାଙ୍କ ଠାରେ ଶରଣାପନ୍ନ ହୋଇ ସେ ଯେଉଁ ମହାନ୍ ତ୍ୟାଗ ଓ ଆଦର୍ଶ ପ୍ରତିଷ୍ଠା କରିଗଲେ ତାହା ହିଁ ତାଙ୍କୁ ପବିତ୍ର ଗଙ୍ଗାଧାରରେ ପରିଣତ କରିଦେଲା । ଆଉ ସେହି ପବିତ୍ର ଗଙ୍ଗାଧାର ସଂସ୍ପର୍ଶରେ ଆସି ଓଡ଼ିଶାର ଦଳିତ, ନିର୍ଯ୍ୟାତିତ ଓ ଅବହେଳିତ ଜନତା ମୁକ୍ତି ଲାଭ କଲେ । ଏହା ହିଁ ହେଉଛି ଓଡ଼ିଶା ପାଇଁ ମହାପୁରୁଷ ଅଚ୍ୟୁତାନନ୍ଦଙ୍କର ମହାର୍ଘ ଅବଦାନ ।



## ନିର୍ବାଚିତ ସହାୟକ ଗ୍ରନ୍ଥସୂଚୀ


୧- ଅଚ୍ୟୁତାନନ୍ଦ ଓ ପଞ୍ଚସଖା ଧର୍ମ-(୧୯୫୧)- ଶ୍ରୀ ଚିତ୍ତରଞ୍ଜନ ଦାସ
୨- ଅଚ୍ୟୁତାନନ୍ଦ ରଚନାବଳୀ- ସଂ. ଡକ୍ଟର ରତ୍ନାକର ଚଇନି
୩- ଆଶ୍ଚର୍ଯ୍ୟ ଚର୍ଯ୍ୟାଚୟ-(୧୯୬୯)- ଡକ୍ଟର କରୁଣାକର କର
୪- ଓଡ଼ିଆ ସାହିତ୍ୟର ଇତିହାସ-(୧୯୯୦)- ଡକ୍ଟର ବଂଶୀଧର ମହାନ୍ତି
୫- ଓଡ଼ିଆ ସାହିତ୍ୟର ଇତିହାସ- ପଣ୍ଡିତ ସୂର୍ଯ୍ୟନାରାୟଣ ଦାସ
୬- ଓଡ଼ିଆ ସାହିତ୍ୟର ମଧ୍ୟପର୍ବ-(୧୯୮୮)- ଶ୍ରୀ ସୁରେନ୍ଦ୍ର ମହାନ୍ତି
୭- ଓଡ଼ିଶାର ନାଥ ସଂପ୍ରଦାୟ ଓ ନାଥ ସାହିତ୍ୟ-(୧୯୬୮)-ଡଃ ବଂଶୀଧର ମହାନ୍ତି
୮- କୋଣାର୍କ- ପଞ୍ଚସଖା ବିଶେଷାଙ୍କ-(୧୯୮୯)- ପ୍ର. ଓଡିଶା ସାହିତ୍ୟ ଏକାଡେମୀ
୯- ଚାରିଖାନି ବା ଶବ୍ଦବ୍ରହ୍ମ ସଂହିତା-(୧୯୭୯)- ଡକ୍ଟର କୃଷ୍ଣଚରଣ ସାହୁ
୧୦- ପଞ୍ଚସଖା ଓଡିଆ ସାହିତ୍ୟ-(୧୯୭୩)- ଅଧ୍ୟାପକ ଦେବେନ୍ଦ୍ର ମହାନ୍ତି
୧୧- ପଞ୍ଚସଖା ଧର୍ମ ଓ ସାହିତ୍ୟ-(୧୯୯୩)- ଡକ୍ଟର ସୁରେନ୍ଦ୍ର କୁମାର ମହାରଣା
୧୨- ପ୍ରାଚୀନ ମଧ୍ୟକାଳ ଦୃଷ୍ଟି ଓ ଦିଗ୍‌ବଳୟ-(୧୯୮୯)- ସଂ. ଡଃ କୃଷ୍ଣ ଚରଣ ସାହୁ
୧୩- ମହାପୁରୁଷ ଅଚ୍ୟୁତାନନ୍ଦ ସାହିତ୍ୟ ସମୀକ୍ଷା-(୨୦୦୧)- ଆଶୁତୋଷ ନାୟକ
୧୪- ଶ୍ରୀ ଜଗନ୍ନାଥ ଚରିତାମୃତ-(୧୯୬୩)-ଦିବାକର ଦାସ
୧୫- ଶ୍ରୀଶ୍ରୀ ଜଗନ୍ନାଥ ଭକ୍ତ ଚରିତ ମାଳା- (୨୦୦୧)- ଡଃ ରାମଚନ୍ଦ୍ର ମିଶ୍ର


